# ବେଦ ମନୁଷ୍ୟକୃତ କି?



ଶ୍ରୀ ପ୍ରିୟବ୍ରତ ଦାସ

ବିକାଶ ପ୍ରତିଷ୍ଠାନ

ପିତୃ ସ୍ମୃତି ଗ୍ରନ୍ଥମାଳା — ପ୍ରଥମ ପୁଷ୍ପ

# ବେଦ ମନୁଷ୍ୟକୃତ କି ?

ପ୍ରଥମ ସଂସ୍କରଣ ୧୯୫୯

ପ୍ରକାଶକ
ବିକାଶ ପ୍ରତିଷ୍ଠାନ, ଜୟପୁର ( କୋରାପୁଟ )

ମୁଖ୍ୟ ପରିବେଷକ
ଶ୍ରୀମତୀ ବସନ୍ତକୁମାରୀ ପଟ୍ଟନାୟକ, ଏମ୍. ଏ.,
ଶାନ୍ତି ନିବାସ ବାଣୀ ମନ୍ଦିର
ପୁରୀଘାଟ ରୋଡ,
କଟକ

**ମୂଲ୍ୟ**
ଅବନ୍ଧା: ତିନି ଟଙ୍କା ଆଠ ଅଣା
ବନ୍ଧାଇ: ଚାରି ଟଙ୍କା

—ମୁଦ୍ରାକର—
ଶ୍ରୀ ମନ୍ମଥ ପାଣିଗ୍ରାହୀ
ବିକାଶ ପ୍ରେସ୍, ଜୟପୁର

# ପ୍ରାକ୍ ସ୍ମରଣ

**ବାବା !**

ତୁମଠୁ ଲୁଚି ଲୁଚି ଏ ବହି ଲେଖିଛି ବୋଲି ଆଜି ଏହାର ଆତ୍ମପ୍ରକାଶ ବେଳେ ତୁମେଇ ବେଶି ମନେ ପଡ଼ୁଛ । 'ମନ'ରେ ଯାହା ଭଲ ବୋଲି ଚିନ୍ତା କରୁ, 'ବଚନ'ରେ ଯାହା ପ୍ରକାଶ କରୁ ତାହାକୁ 'କର୍ମ'ରେ ପ୍ରୟୋଗ ନକଲେ ବୃଥା ବୋଲି ମତେ ବାରମ୍ବାର କହୁଛ । କହୁଛ—'ତୋ ବହି ଲେଖା ବେଳ ହୋଇ ନାହିଁ ।' ତଥାପି ତୁମ ଅଜ୍ଞାତରେ ଏ ବହି ଲେଖି ଦେଇଛି ।

**ବାବା !**

ସେ ଦିନ ମୋର ଉପନୟନ ସଂସ୍କାର ବେଳେ କହିଥିଲ- 'ବଡ଼ ପୁଅକୁ ରାଷ୍ଟ୍ର ଓ ଧର୍ମ ପାଇଁ ଉତ୍ସର୍ଗ କଲି ।' ସେତେବେଳର ମୋର ସ୍ମରଣଶକ୍ତି ଦେଖି ଭାବିଥିଲ ଯେ ଷୋହଳ ବର୍ଷ ବୟସ ବେଳକୁ ମୁଁ ସମସ୍ତ ବୈଦିକ ଶାସ୍ତ୍ରରେ ପ୍ରବେଶ କରିଥିବି । ହରିଦ୍ୱାରର ଗୁରୁକୁଳରେ ମୋର ଅଧ୍ୟୟନର ବ୍ୟବସ୍ଥା ହୋଇ ସାରିଥିବା ପରେ ବି, ହାୟ, ମୋ ଦୁର୍ଭାଗ୍ୟକୁ ତୁମ ଆଶା ପୂର୍ଣ୍ଣ ହେଲି ନାହିଁ ।

**ବାବା !**

ମୋ ଗୁରୁକୁଳ-ପଢ଼ା ହେଲା ନାହିଁ । ମୁଁ ଇଞ୍ଜିନିୟର ହେଲି— ଦେଶର ଯୋଜନାକୁ କାର୍ଯ୍ୟକାରୀ କରିବାକୁ ହେବ । କିନ୍ତୁ, ବାବା, ମନୁଷ୍ୟ ଜାତି ଆଜି ନୀତିଭ୍ରଷ୍ଟ ହେଉଥିବା ବେଳେ ସାରା ସଂସାରରେ ଏ ଯେଉଁ ଦୁର୍ବହ ଭୌତିକ ଯୋଜନାମାନ ପରିକଳ୍ପିତ ହେଉଛି, ଖାଲି ସେଥିରେ କି ମନୁଷ୍ୟତା ଫେରିବ ?

**ବାବା !**

'କ୍ୱ ସର୍ବଜ୍ଞୋଦ୍ଭବୋ ବେଦଃ କ୍ୱାଗ୍ୟସମତିର୍ଜନଃ'— କାହିଁ ପ୍ରଭୂନିଃଶ୍ୱସିତ ଅନନ୍ତ ବେଦ ଓ କାହିଁ ମୁଁ ଅକିଞ୍ଚନ ! ବେଦର କିଞ୍ଚିତ୍ ଅନୁଶୀଳନରେ ଆଜି ମୁଁ ଯେଉଁ ରୂପେ ମୁଗ୍ଧ ହୋଇଛି, ତାହାର ପ୍ରଭାବରେ ବେଦ ସମ୍ବନ୍ଧରେ ଏକ ଭୂମିକା ମାତ୍ର ଅର୍ପଣ କରୁଛି । ଏହି ଭୂମିକା ମୋ ଜୀବନର ଭୂମିକା ହେଉ— ଏତିକି ଆଶୀର୍ବାଦ ଭିକ୍ଷା କରୁଛି ।

ଜନ୍ମାଷ୍ଟମୀ, ବିକ୍ରମାବ୍ଦ ୨୦୧୫
**ମାଲକାନଗିରି**

ତୁମ ଅଧମ ପୁତ୍ର,
**ପ୍ରିୟବ୍ରତ**

# ବିଷୟ-ସୂଚୀ

## ଷଷ୍ଠ ଅଧ୍ୟାୟ



## ସପ୍ତମ ଅଧ୍ୟାୟ

—ପ୍ରଥମ ଅଧ୍ୟାୟ—

## ଉପକ୍ରମ

କାହିଁକି ଆମେ ଆମ ପୂଜାପାଠ, ଜପଯାଗ, ସଂସ୍କାର ବା ସଂକଳ୍ପ ବେଳେ ବେଦମନ୍ତ୍ରର ଉଚ୍ଚାରଣ କରୁଛୁ ? ଯଜ୍ଞ ବେଳେ ସମସ୍ତ ଘୃତକୁ ଏକାଥରେ ଅଗ୍ନି ଉପରେ ଅଜାଡ଼ି ନଦେଇ କାହିଁକି ତାହାକୁ ଧୀରେ ୨ ମନ୍ତ୍ର ଉଚ୍ଚାରଣ କରି ଆହୂତ ଦେଉଛୁ ? ବିବାହ ବେଳେ ବା ସମାଜିକ ଜୀବନର ଯେ କୌଣସି ସଂକଳ୍ପ ସମୟରେ କେଉଁ କାରଣରୁ ଆମେ ଭାବନାକୁ ମନ୍ତ୍ରବଦ୍ଧ କରୁଛୁ ? ବେଦର ନିର୍ଦ୍ଦେଶକୁ 'ବେଦର ସାର' ବୋଲି କାହିଁକି ଆମେ ଗଂଠି କରି ବସିଛୁ ? ଏ ସବୁ କରିବାରେ ସେପରି କୌଣସି ଧରାବନ୍ଧା ବାଧ୍ୟବାଧକତା ନଥିଲେ ସୁଦ୍ଧା ଏହି ସଂସ୍କାରକୁ ଆମେ ଅନ୍ତଃ-ସ୍ଫୁର୍ତ୍ତିରୁ କାହିଁକି ସହଜାତ ପ୍ରବୃତ୍ତି ରୂପେ ଘେନି ଆସିଛୁ ? ଏପରିକି କାଗଜ କାଳି ନଥିବା ଯୁଗରେ ବି ଏହାକୁ ଆମେ ଶୁଣି ୨ ନିର୍ଭୁଲରେ 'ଶ୍ରୁତି' ରୂପରେ ସାଇତି ରଖି ପାରିଛୁ । ତେବେ

ଏହି ପ୍ରବୃତ୍ତି ସଙ୍ଗେ ଆଦି-ସୃଷ୍ଟିର ସମ୍ବନ୍ଧ ନାହିଁକି ? ସେ ଯୁଗ ଓ ଏ ଯୁଗର ବିଜ୍ଞାନୀମାନେ ଏ ଦେଶର ସଭ୍ୟତାକୁ ମନୁଷ୍ୟର ପ୍ରାଚୀନତମ ଓ ଆଦି ସଭ୍ୟତା ବୋଲି ଗ୍ରହଣ କରି ନେଇଥିବା ସ୍ଥଳେ, ଏହି ସଭ୍ୟତାର ଆଦି ଉତ୍ସ ରୂପେ ବେଦ-ପ୍ରକାଶ ପଛରେ ସ୍ରଷ୍ଟାଙ୍କ କର୍ତ୍ତୃତ୍ୱ ନାହିଁ କି ? ଏହି ଅଦ୍ଭୁତ ସରଣୀ ପଛରେ ଏକ ଅପୌରୁଷେୟ ଜ୍ଞାନ ଓ ଇଚ୍ଛା ଶକ୍ତିର ପ୍ରେରଣା ନାହିଁ କି ?

ମନୁଷ୍ୟର ବହୁ ଉପଜାତି ଆଜି ସଂସାରର କୋଣେ ୨ ବିଚ୍ଛୁରିତ । ବହୁ ଧର୍ମ, ବହୁ ଭାଷା ଆଜି ପୃଥିବୀ ପୃଷ୍ଠରେ ପ୍ରଚଳିତ । ସ୍ଥୂଳ ଦୃଷ୍ଟିରେ ଏ ସବୁକୁ ଅବଲୋକନ କଲେ ପରସ୍ପର ମଧ୍ୟରେ ଗଭୀର ପାର୍ଥକ୍ୟ ପରିଲକ୍ଷିତ ହୁଏ । ପରନ୍ତୁ ସୂକ୍ଷ୍ମ ମନରେ ବିଶ୍ଳେଷଣ କଲେ ଦେଖାଯାଏ ଯେ ଏ ସମସ୍ତଙ୍କ ମଧ୍ୟରେ ରକ୍ତଗତ ସଂପର୍କ ରହିଛି । ଏ ସବୁ ସୋତର ପ୍ରତିକୂଳରେ ଗତି କଲେ ଦେଖାଯିବ ଯେ, ପ୍ରତ୍ୟେକେ ଦୂରରୁ ଦୂରତର ହୋଇ ଏକ ସୁଦୂର ନିର୍ଝର ତଳେ ଏକାଠି ହୋଇଛନ୍ତି । ସେହି ନିର୍ଝର ପାଖେ ଏକ ଅନ୍ତିମ ଦୃଷ୍ଟି ନିକ୍ଷେପ କଲେ ମନେ ହୁଏ, ତାହା ସୃଷ୍ଟିର ଆଦି-ବାଣୀ ଓ ଆଦି-ଧର୍ମର ଏକ ମହୀୟସୀ ଉତ୍ସ ! କୁହ ଦେଖି, ଏହି ଉତ୍ସକୁ ପ୍ରଥମ ସ୍ପନ୍ଦନ ଦେଲା କିଏ ? ଏ ଭିତରକୁ ଗତି ଶକ୍ତି ଫୁଙ୍କିଲା କିଏ ? ଏ ଯୁଗର ବୈଜ୍ଞାନିକ ନିଉଟନ୍ ସତ୍ୟକୁ ଆଂଶିକ ଉପଲବ୍ଧି କରିପାରି କହିଛନ୍ତି ଯେ, ଯେକୌଣସି ବସ୍ତୁର ଗତି ସଂଚାଳନ ପାଇଁ ଏକ ବାହ୍ୟ ଶକ୍ତି ଆବଶ୍ୟକ ହୁଏ । ଏହାକୁ ପୋଷଣ କରି ଆଜିର ବୈଜ୍ଞାନିକ କହେ, "ଗତି ପୂର୍ବରୁ ଅଭିପ୍ସା ଜନ୍ମ ଥାଏ † ।"

† *Will precedes motion*

ପରଂତୁ ସୃଷ୍ଟି ଆରମ୍ଭରେ ଯେଉଁ ଇଚ୍ଛା ଶକ୍ତିର କର୍ତ୍ତୃତ୍ୱରେ ମନୁଷ୍ୟ ଠାରେ ବାଣୀ ଓ ଜ୍ଞାନର ଆଦ ଉଦ୍‌ଗୀରଣ ହୁଏ, ତାହା କୌଣସି ବାହ୍ୟ ଶକ୍ତି ନୁହେ । କିମ୍ବା ଗତି ଉତ୍ପନ୍ନ କରିବାବେଳେ ଏହି ଗତିଦାତା ଶକ୍ତି ଠାରେ ଗତିର ପ୍ରଭାବ ପଡେ ନାହିଁ । ଅଧୁନିକ ବୈଜ୍ଞାନିକଙ୍କ ଲକ୍ଷ ୨ ବର୍ଷ ପୂର୍ବରୁ ଉପନିଷଦକାର ଏହି ଶକ୍ତିକୁ ହୃଦୟଂଗମ କରି କହିଛନ୍ତି—

ତଦେଜତି ତନୈଜତି ତଦ୍ଦୂରେ ତଦ୍ୱନ୍ତିକେ ।
ତଦନ୍ତରସ୍ୟ ସର୍ବସ୍ୟ ତଦୁ ସର୍ବାସ୍ୟାସ୍ୟ ବାହ୍ୟତଃ ॥ (ଈଶ)

ଅର୍ଥାତ୍—(ତତ୍) ସେ ପରମାତ୍ମା (ଏଜତି) ଗତି ଉତ୍ପନ୍ନ କରନ୍ତି । (ତତ୍) ସେ ପରଂତୁ (ନ ଏଜତି) ଗତିରେ ଆସନ୍ତି ନାହିଁ । (ତତ୍) ସେ (ଦୂରେ) ଦୂରରେ ରହନ୍ତି । (ତତ୍, ଉ, ଅନ୍ତିକେ) ସେ ସମୀପରେ ଥାଆନ୍ତି । (ତତ୍) ସେ (ଅସ୍ୟ, ସର୍ବସ୍ୟ, ଅନ୍ତଃ, ବାହ୍ୟତଃ) ସମସ୍ତଙ୍କ ଭିତରେ ବାହାରେ ଅଛନ୍ତି ।

ବାସ୍ତବରେ ସ୍ରଷ୍ଟାଙ୍କୁ ସର୍ବବ୍ୟାପୀ ନକହି ବାହ୍ୟ ବା ଏକଦେଶୀ କହିଲେ ସୃଷ୍ଟି ମୀମାଂସିତ ହୋଇ ନପାରେ । ତାହାଙ୍କ ଠାରେ ଗତି ବିକାର ଆରୋପଣ କଲେ, ତାହାଙ୍କୁ ବିଦ୍ରୂପ କରିବା ହିଁ ସାର ହୁଏ । ଗ୍ରୀକ୍ ପଣ୍ଡିତ ଅରିଷ୍ଟୋଟଲ୍ ଠିକ୍ କହିଛନ୍ତି—'ପରମାତ୍ମା ଗତି ସଂଚରର ଉଦ୍‌ଗମ, ସେ ଗତିଦାତା (ଆଦ କାରଣ) । ପରଂତୁ ସେ ନିଜେ ଗତିଗ୍ରସ୍ତ ହୁଅନ୍ତି ନାହିଁ * ।'

---

* *'God is merely the source of movement, the first mover Who himself is never moved' (The Age of Aristotle)*

ପ୍ରଶ୍ନ ହୁଏ, ମହମ୍ମଦ କୌଣସି ନୂତନ ଧର୍ମର ପ୍ରଚ୍ରର କରିଥିଲେ କି ? କଦାପି ନୁହେ । ଆରବ ଜାତି ମଧ୍ୟରେ ବହୁ-ଦେବ ପୂଜା ଯେତେବେଳେ ସଂକମିତ ହେଉଥିଲା, ସେତେବେଳେ ମହମ୍ମଦ ପ୍ରଚଳିତ ମତର ସଂଶୋଧନ କରି ଏକେଶ୍ବରବାଦର ପ୍ରତିଷ୍ଠା ପାଇଁ ପ୍ରଚ୍ରର କରିଥିଲେ । ମହମ୍ମଦଙ୍କ ଇସଲାମ ମତର ସମସ୍ତ ସିଦ୍ଧାନ୍ତ ଇହୁଦୀ ମତରୁ ଗୃହୀତ । ସେହିପରି ଖ୍ରିଷ୍ଟିଆନ୍ ମତର ଜ୍ଞାନକାଣ୍ଡ ସଂବନ୍ଧୀୟ ସକଳ ମଂତବ୍ୟ ଇହୁଦୀ ମତରୁ ଓ ସଦାଚ୍ରରକ ସଂବନ୍ଧୀୟ ସିଦ୍ଧାନ୍ତ ବୌଦ୍ଧମତରୁ ଗୃହୀତ । ଖ୍ରିଷ୍ଟିଅନ୍ ମତ ସମ୍ବନ୍ଧେ ସେଣ୍ଟ୍ ଅଗଷ୍ଟାଇନ୍ କହିଥିଲେ— 'ବର୍ତ୍ତମାନ ଅମ୍ଭେମାନେ ଯାହାକୁ ଖ୍ରିଷ୍ଟିଅନ୍ ଧର୍ମ ବୋଲି କହୁଛୁ, ତାହା ପ୍ରାଚୀନ ଲୋକଙ୍କ ମଧ୍ୟରେ ଥିଲା । ମାନବ ଜାତିର ଆରଂଭ କାଳରୁ ଈସା-ମସୀହଙ୍କ ଶରୀର ଧାରଣ ପର୍ଯ୍ୟନ୍ତ ତାହା ଉପସ୍ଥିତ ଥିଲା । ପରଂତୁ ଈସା-ମସୀହଙ୍କ ଜନ୍ମ ପରଠାରୁ ତାହା ଖ୍ରିଷ୍ଟିଅନ୍ (ଇସାଇ) ଧର୍ମ ନାମରେ କଥିତ ହେଲା' । ସୁତରାଂ ଖ୍ରିଷ୍ଟିଅନ୍ ମତ କୌଣସି ନୂତନ ଆବିଷ୍କାର ନୁହେ । ସେହିପରି ଇହୁଦୀ ମତ ପାରସୀ-ମତ * ରୁ ଗୃହୀତ । ଇହୁଦୀ ମତର ପୁରୋହିତ (ଫରସ୍ତା) ପାରସୀ ସନ୍ତାନ । ଏଣେ ପାରସୀ ଧର୍ମଗ୍ରଂଥ 'ଜଂଦାବସ୍ତା' ପାଠ କଲେ ବୋଧହେବ ସତେ ଯେପରି କେହି ଉପନିଷଦ ବା ଦର୍ଶନଶାସ୍ତ୍ର ପାଠ କରୁଛି । ଜଂଦାବସ୍ତାର ଜଂଦ ଭାଷା ପ୍ରାକୃତ ପରି ସଂସ୍କୃତ ଭାଷାର ଏକ ସରଳୀକରଣ । ଜଂଦାବସ୍ତାର ସିଦ୍ଧାନ୍ତ ଓ କୃତ୍ୟ ବେଦର ଏକ ପରିବର୍ତ୍ତିତ ସଂସ୍କରଣ । ଡାଃ. ହାଗ୍, ସର୍ ଉଇଲିଏମ୍ ଜୋନ୍ସ୍, ଅଧ୍ୟାପକ ମେକ୍ସ୍‌ମୁଲର୍ ପ୍ରଭୃତି ପଣ୍ଡିତଗଣ ଜଂଦାବସ୍ତା ଓ ଜଂଦ ଭାଷାର ପରୀକ୍ଷଣ କରି ମୁକ୍ତ

---

* *Zoroastrism*

କଂଠରେ ଏସବୁ ସ୍ୱୀକାର କରଛନ୍ତି । ବୌଦ୍ଧ ମତ ଓ ବୈଦିକ ଧର୍ମ ମଧ୍ୟରେ ଥିବା ସମ୍ବନ୍ଧକୁ ଭକ୍ତଗଣଙ୍କୁ ବୁଝାଇବା ଅବଶ୍ୟକ ନାହିଁ । ଶେଷ ମୁହୂର୍ତ୍ତ ଯାଏଁ ମହାତ୍ମା ବୁଦ୍ଧ ବିଶ୍ୱାସ ରଖିଥିଲେ ଯେ ପ୍ରାଚୀନ ଶୁଦ୍ଧ ବୈଦିକ ଧର୍ମର ସେ ପୁନରୁଦ୍ଧାର କରୁଛନ୍ତି । ସେ କୌଣସି ନୂତନ ଧର୍ମର ପ୍ରବର୍ତ୍ତକ ନୁହନ୍ତି । ଏହି ରୂପେ ସଂସାରରେ ପ୍ରଚଳିତ ସମସ୍ତ ଧର୍ମର ଅନୁଶୀଳନ କଲେ ଦେଖାଯିବ ଯେ ସୃଷ୍ଟିର ପ୍ରାରମ୍ଭରୁ ଧର୍ମ-ସଂସାରରେ କୌଣସି ନୂତନ ଧର୍ମର ଉଦ୍ଭାବନ ହୋଇନାହିଁ । ଆଦି-ଧର୍ମ ବେଦର ଧର୍ମ ଓ ସେଥିରୁ ଭାବ-ଭାଷା ଭେଦରେ ଅନେକ ବହୁ ଧର୍ମର ଧ୍ୱନି ଉଠିଛି ।

ଭାଷା-ବିଜ୍ଞାନର ଚର୍ଚ୍ଚା କଲେ ବି ଏହି ଅନୁରୂପ ସିଦ୍ଧାନ୍ତରେ ଉପନୀତ ହେବାକୁ ପଡେ । ଆର୍ଯ୍ୟ, ତୁରାଣୀ ଓ ସେମେଟିକ ଭାଷା-ସ୍ରୋତର ସମସ୍ତ ଉପଭାଷାର ନହର କୂଳେ କୂଳେ ଗତି କଲେ ଶେଷରେ ବେଦର ଉତ୍ସ ନିକଟରେ ଗତି ସମାପ୍ତ ହୋଇଯାଏ । ଏଠାରେ ଭାଷା ପରମ ବିଜ୍ଞାନମୟୀ । ଏଠାରେ ଭାଷା ଅବିନାଶୀ ଅକ୍ଷରର ଭିତ୍ତି ଉପରେ ପ୍ରତିଷ୍ଠିତ*। ଉଚ୍ଚାରଣର ପ୍ରୟତ୍ନ ଉପରେ ଏଠାରେ ଅକ୍ଷର ସାର୍ଥକ । ଏହି ଅର୍ଥର ପ୍ରତିବିଂବ ରୂପେ ଲିପିର ଆବିଷ୍କାର । ଉଚ୍ଚାରଣରୁ ଅକ୍ଷର, ଅକ୍ଷରରୁ ଧାତୁ ଓ ଧାତୁରୁ ଶବ୍ଦ ପ୍ରତ୍ୟେକ ଋକ୍ (ମଂତ୍ର)ର ପ୍ରେରଣାକୁ ପରିପୂର୍ଣ୍ଣ କରିଦିଏ । ଏହି ଦେବବାଣୀର ଆଦି ଉତ୍ସରୁ ବହୁ ଭାଷା ବିଶ୍ଳେଷଣାତ୍ମକ ଓ ବ୍ୟାକରଣହୀନ ହୋଇ ଆଜି ବଢି ଚାଲିଛନ୍ତି । ପରଂତୁ ଭାଷା-ବିଜ୍ଞାନରେ କୌଣସି ନୂତନ ଶବ୍ଦ ବା ଧ୍ୱନିର ଆବିଷ୍କାର

---

* 'ଋଚୋ ଅକ୍ଷରେ ପରମେ ବ୍ୟୋମନ୍' (ଋକ୍ ୧, ୧୬୪, ୩୯)

ହୋଇ ନାହିଁ । ଅଧ୍ୟାପକ ମେକ୍ସ୍‌ମୂଲର୍, ପାଠ୍ ଆଦି ପାଶ୍ଚାତ୍ୟ ପଣ୍ଡିତମାନେ ଏହି ଉକ୍ତିକୁ ପ୍ରବଳ ଭାବରେ ପୋଷଣ କରିଛନ୍ତି ।

କଲମ୍ବସଙ୍କ ଆବିଷ୍କାର ପୂର୍ବରୁ ବି ଆମେରିକା ମହାଦେଶ ଥିଲା । ନିଉଟନ୍‌ଙ୍କ ମାଧ୍ୟାକର୍ଷଣ ଶକ୍ତିର ଆବିଷ୍କାର ପୂର୍ବରୁ ମଧ୍ୟ ଏହି ଶକ୍ତି ମାଧ୍ୟମରେ ସମଗ୍ର ସୌର ଜଗତର କାର୍ଯ୍ୟ ନିୟନ୍ତ୍ରିତ ହେଉଥିଲା । ସମଗ୍ର ମାନବ ଜାତି ଏହି ଶକ୍ତିକୁ ବିସ୍ମରଣ କରିଯିବା ପରେ ବି ଏହାର ଅସ୍ତିତ୍ୱ ରହିଥିବ ।

ଏଣୁ ପ୍ରଶ୍ନ ହୁଏ, ବୈଜ୍ଞାନିକ କି କାର୍ଯ୍ୟ କରେ ? ଭାଷା-ଶାସ୍ତ୍ରରେ ହେଉ, ଧର୍ମ-ଶାସ୍ତ୍ରରେ ହେଉ ବା ପରମାଣୁ-ଶାସ୍ତ୍ରରେ ହେଉ ବୈଜ୍ଞାନିକର କାର୍ଯ୍ୟ କଣ ? ଅକ୍ଷର, ଧ୍ୱନି, ସତ୍ୟ, ପାରଲୌକିକ ତତ୍ତ୍ୱ, ଅଣୁ ବା ପରମାଣୁର ନିର୍ମାଣ ବା ଉଦ୍ଭାବନ କରିବା ବୈଜ୍ଞାନିକର କାର୍ଯ୍ୟ ନା ସେ ସବୁର ନିତ୍ୟ ଅସ୍ତିତ୍ୱକୁ ଜଗତ ସମକ୍ଷରେ ପ୍ରତିପାଦନ କରିବା ତାହାର କାର୍ଯ୍ୟ ? ଶ୍ରୀକୃଷ୍ଣ, ଶଙ୍କର ବା ଦୟାନନ୍ଦ ଆଦ୍ୟଜ୍ଞାନର ନିର୍ମାତା ନଥିଲେ । ଖ୍ରୀଷ୍ଟ, ବୁଦ୍ଧ ବା ଗାନ୍ଧୀ ସତ୍ୟ ଓ ପ୍ରେମର ରଚୟିତା ନଥିଲେ । ଗାଲିଲିଓ, ନିଉଟନ୍ ବା ଆଇନ୍‌ଷ୍ଟାଇନ୍ ପରମାଣୁର ଉଦ୍ଭାବକ ନଥିଲେ । ଏ ସମସ୍ତେ ସୃଷ୍ଟିର କେତେକ ସନାତନ ନିୟମର ଉପଲବ୍ଧି କରିଥିଲେ ମାତ୍ର । ଏମାନେ ଜ୍ଞାନର ସ୍ରଷ୍ଟା ନୁହନ୍ତି—ଦ୍ରଷ୍ଟା । ଆଦି-ସୃଷ୍ଟି ବେଳେ ଯେଉଁ ମହାପୁରୁଷଗଣ ଜ୍ଞାନ ଓ ବାଣୀର ପ୍ରେରଣା ପାଇଥିଲେ, ପ୍ରାଚୀନ ଶାସ୍ତ୍ରରେ ସେମାନଙ୍କୁ 'ଋଷି' କୁହାଯାଇଛି । 'ଋଷି ଦର୍ଶନାତ୍'—(ନିରୁକ୍ତ ୨, ୧୧) । ଆଦ୍ୟଜ୍ଞାନର ଅନ୍ତଃ-ଦର୍ଶନ ବା ସାକ୍ଷାତ କରିଥିବାରୁ ଏମାନଙ୍କର ନାମ 'ଋଷି' ।

ମଧ୍ୟଯୁଗୀୟ ନାସ୍ତିକବାଦୀ ବିଜ୍ଞାନକୁ ଜବାବ ଦେଇ ବିଂଶ ଶତାବ୍ଦୀର ସୁପ୍ରସିଦ୍ଧ ବୈଜ୍ଞାନିକ ଡ଼ାଃ. ଫ୍ଲେମିଙ୍ଗ୍ ଠିକ୍ କହିଛନ୍ତି— 'ବିଜ୍ଞାନ ଓ ଧର୍ମ ପରସ୍ପର ବିରୋଧୀ ନୁହନ୍ତି ବା ଏ ଦୁହେଁ ନିରପେକ୍ଷ ନୁହନ୍ତି । ଏମାନେ ଗୋଟିଏ ଅପରର ପରିପୂରକ ବା ସହାୟକ' † । ବାସ୍ତବିକ ସୃଷ୍ଟିର ପ୍ରତ୍ୟେକ କାର୍ଯ୍ୟ ପଛରେ ଦୁଇଟି ପ୍ରଶ୍ନ ଉଠେ— କିପରି (*How*) ଓ କାହିଁକି (*Why*) । ଶିଶୁଟିଏ ମା ଗର୍ଭରେ ମରିଯାଏ । ଏହି ମୃତ୍ୟୁ 'କିପରି' ଘଟେ, ତା' ବିଜ୍ଞାନ ଅନେକାଂଶରେ କହିପାରେ । ପରନ୍ତୁ ଏହି ନିର୍ଦ୍ଦିଷ୍ଟ ବେଳାରେ ନିର୍ଦ୍ଦିଷ୍ଟ ଶିଶୁର ଅକାଳ ମୃତ୍ୟୁ 'କାହିଁକି' ଘଟେ, ତାହାର ଉତ୍ତର ବିଜ୍ଞାନୀ ଦେଇ ନପାରେ । ଏହି ଅଭ୍ରାନ୍ତ ସୃଷ୍ଟିର ନିପୁଣ ବିଜ୍ଞାନୀଙ୍କୁ ହିଁ ଏହାର ଉତ୍ତର ଗୋଚର ।

ଏହି ଶତାବ୍ଦୀର ଅଗ୍ରଣୀ ବୈଜ୍ଞାନିକଗଣ ଜ୍ଞାନ ଓ ବାଣୀର ଆଦ୍ୟ ସୃଷ୍ଟି ପାଇଁ ଏକ ନିମିତ୍ତ (*Absolute Cause*) ର ଅସ୍ତିତ୍ୱକୁ ମାନି ନେଇଛନ୍ତି । ବିଗତ ଦୁଇ ଶତାବ୍ଦୀ ମଧ୍ୟରେ ୟୁରୋପ ଦେଶରେ ଧର୍ମାଧ୍ୟକ୍ଷ ଓ ନବୀନ ବୈଜ୍ଞାନିକଙ୍କ ମଧ୍ୟରେ ଯେଉଁ ମନୋମାଳିନ୍ୟ ଘଟିଥିଲା, ତାହାର ପ୍ରତିକ୍ରିୟା ଏହି ଶତାବ୍ଦୀର ବୈଜ୍ଞାନିକଙ୍କ ମନରୁ ଦୂର ହୋଇଥିଲେ ସୁଦ୍ଧା ବିଜ୍ଞାନର ଅନୁଗାମୀମାନଙ୍କ ଠାରୁ ଅଦ୍ୟାପି ଦୂର ହୋଇନାହିଁ । ବାସ୍ତବରେ ଅନ୍ଧ-ବିଶ୍ୱାସର ମାତ୍ରା ଧର୍ମାନୁଗାମୀଙ୍କ ଅପେକ୍ଷା ବିଜ୍ଞାନର ଉପାସକଙ୍କ ଠାରେ ଅଧିକ ଜର୍ଜରିତ ବୋଲି ଆଜି ଉପଲବ୍ଧ ହେଉଛି । ଯାହାହେଉ ବିଜ୍ଞାନ ଆଜି ତା'ର ଅନ୍ତିମ ସିଦ୍ଧାନ୍ତ ଶୁଣାଇ

---

† *They (Science & Religion) are not opposed, they are not neutrals, they are allies. (Science & Religion by Seven Men of Science.)*

ଦେଇଛନ୍ତି—'ବିଗତ ବିଂଶ ବର୍ଷ ମଧ୍ୟରେ ହୋଇଥିବା ପ୍ରକୃତି ସଂବନ୍ଧୀ ସମସ୍ତ ବସ୍ତୁର ପଦ୍ଧତି ଆଧ୍ୟାତ୍ମିକ ତତ୍ତ୍ୱ ଉପରେ ଅଶ୍ରିତ—ଏହାହିଁ ଅନ୍ତିମ ବିଜ୍ଞାନ' † ।

ପୂର୍ବରୁ ଆଲୋଚିତ ହୋଇଛି ଯେ, ବାଣୀ ଓ ଜ୍ଞାନ-ସଂସାରରେ ଆଦି-ସୃଷ୍ଟିରୁ କୌଣସି ନୂତନ ତଥ୍ୟର ଉଦ୍ଭାବନ ହୋଇନାହିଁ । ସୃଷ୍ଟିର ଗତିରେ ଏହି ଦୁଇଟିର ମୂଳ ସ୍ରୋତ 'ବେଦ'ର ଭାବାନ୍ତର ଓ ଭାଷାନ୍ତର ହୋଇ ବହୁ ଭାଷା, ଦର୍ଶନ, ଧର୍ମ ଓ ବିଜ୍ଞାନ ଆଜି ସୃଷ୍ଟି ହୋଇଛି । ଏଣୁ ବିଭିନ୍ନ ଯୁଗରେ ମହାପୁରୁଷଙ୍କ ରଚିତ ଉପନିଷଦ, ବ୍ରାହ୍ମଣ ଗ୍ରନ୍ଥ, ଦର୍ଶନ ଶାସ୍ତ୍ର, ସ୍ମୃତି ଆଦି ପ୍ରାଚୀନ ଗ୍ରନ୍ଥ ଏହି ଅପୌରୁଷେୟ ବେଦର ମହିମା ଗାନ କରିଛନ୍ତି । ବେଦର ପୂର୍ଣ୍ଣ ଅନୁଶୀଳନ ବର୍ତ୍ତମାନ ସୁଦ୍ଧା ହୋଇନାହିଁ—ପୂର୍ଣ୍ଣ ଜ୍ଞାନର ପୂର୍ଣ୍ଣ ଆହରଣ ସହଜ-ସାଧ୍ୟ ନୁହେଁ । ଯୋଗୀ ଅରବିନ୍ଦ କହନ୍ତି—'ପୁଣି ମୋର ବିଶ୍ୱାସ ଯେ ବେଦରେ ଆହୁରି ଅନେକ ବୈଜ୍ଞାନିକ ତଥ୍ୟ ନିହିତ ରହିଛି, ଯେଉଁଥିରେ ଆଧୁନିକ ସଂସାର ଅନଭିଜ୍ଞ * ।' ଜୀବନ ଓ ବୁଦ୍ଧି ବିକାଶ

---

† *And all the theories of matter advanced during the last twenty years are based on a conception--a postulate of non-material. That is the last science. (Ibid)*

* *I will even add to my own conviction that Veda contains other truths of science the modern world does not at all possess. (Bankim–Tilak--Dayananda by Sri Aurobindo)*

ତଥ୍ୟର ପୃଷ୍ଠପୋଷକ ଡ଼ାରୱିନ୍ ଓ ସ୍ପେନ୍ସରଙ୍କ ପରେ ତାହାଂକ ଅନୁଗାମୀ-ମାନେ ବେଦର ଭାଷାନୁବାଦ ଦେଖି ଚକିତ ହୋଇ ପଡ଼ିଛନ୍ତି ।

ଆଧୁନିକ ବିଂଶ ଶତାବ୍ଦୀର ବିଜ୍ଞାନ ସୃଷ୍ଟି-ରହସ୍ୟ ସମ୍ବନ୍ଧରେ ଯେଉଁ ତଥ୍ୟ ସମୂହ ଉପସ୍ଥାପିତ କରିଛି, ସେ ସମସ୍ତ ଅଦ୍ୟାପି ବିବାଦଗ୍ରସ୍ତ ହୋଇଥିବା ବେଳେ ଋକ୍‌ବେଦର ଦଶମ ମଣ୍ଡଳର ନାସଦୀୟ ସୂକ୍ତରେ ସୃଷ୍ଟି-ବିଜ୍ଞାନର ପରିପୂର୍ଣ୍ଣ ରୂପ ଦେଖି, ଏମାନେ ବୌଦ୍ଧିକ ବିକାଶ ( *Intellectual Evolution* )କୁ ଖଣ୍ଡନ କରିବାକୁ ବାଧ୍ୟ ହୋଇଛନ୍ତି ।

ବିଂଶ ଶତାବ୍ଦୀର କୋଟି ୨ ବର୍ଷ ପୂର୍ବରୁ ବେଦରେ ସୃଷ୍ଟି ବିଷୟର ପରିଶୁଦ୍ଧ ଜ୍ଞାନ ରହିଥିବା କଥା ବୃଦ୍ଧି-ବିକାଶ ବାଦକୁ ସ୍ୱତଃ ଅସ୍ୱୀକାର କରିଦିଏ । ଏହିରୂପେ ବିକାଶବାଦୀ ପଣ୍ଡିତ ବାଲେସ୍ ପରିଶେଷରେ-ଲେଖିଛନ୍ତି—‘ଶାରୀରିକ ଓ ଭୌତିକ ବିକାଶ କଦାଚିତ୍ ସମ୍ଭବହୋଇ ପାରେ, ପରଂତୁ ବୌଦ୍ଧିକ-ବିକାଶ ସର୍ବଥା ଅସଂଭବ’ । ଆଦିଜ୍ଞାନରେ ସୃଷ୍ଟି-ତତ୍ତ୍ୱର ସଂକେତ ଈଶ୍ୱରୀୟ-ଜ୍ଞାନ ଛଡ଼ା ଅନ୍ୟ କଣ ହୋଇପାରେ ?

ଏତେବେଳେ ବେଦାନ୍ତ ଦର୍ଶନର ଗୋଟିଏ ସୂତ୍ର ସ୍ମରଣ ଆସେ । ଈଶ୍ୱର-ସିଦ୍ଧି ପାଇଁ ମହର୍ଷି ବ୍ୟାସ ସୃଷ୍ଟି-କର୍ତ୍ତୃତ୍ୱକୁ ଆଶ୍ରୟ ନେଇ ଲେଖିଛନ୍ତି ‘ଜନ୍ମାଦ୍ୟସ୍ୟ ଯତଃ’-ଅର୍ଥାତ୍ ଯାହାଙ୍କଠାରୁ ଜଗତର ଉତ୍ପତ୍ତି ଆଦି ହୁଏ, ସେ ବ୍ରହ୍ମ । ଏଠାରେ ‘ଆଦି’ ଶବ୍ଦରୁ ଉତ୍ପତ୍ତି ସଙ୍ଗେ ୨ ସ୍ଥିତି ଓ ପ୍ରଳୟର ଭାବ ମଧ୍ୟ ଆସେ । ସୃଷ୍ଟି, ସ୍ଥିତି ଓ ପ୍ରଳୟର ନିମିତ୍ତ ପାଇଁ ଏକ ପୂର୍ଣ୍ଣ, ସର୍ବଜ୍ଞ ଶକ୍ତିରୂପେ ବ୍ରହ୍ମଙ୍କ ଅସ୍ତିତ୍ୱକୁ ମାନିବାକୁ ହେବ । ପରନ୍ତୁ ବେଦାନ୍ତର ରଚୟିତା ଏତିକରେ କି ବିଶ୍ରାମ ନେଇଛନ୍ତି ?

ଏତକରେ କି ସେ ସନ୍ତୁଷ୍ଟ ? ପରବର୍ତ୍ତୀ ଶ୍ଳୋକରେ ଗାଇଛନ୍ତି—'ଶାସ୍ତ୍ର ଯୋନିତ୍ୱାତ୍' । ବେଦ ଯେପରି ଜ୍ଞାନର ଭଣ୍ଡାର, ତାହା ଅଳପ ୨ କି ସୃଷ୍ଟି ହୋଇପାରେ ? ତେଣୁ କର୍ତ୍ତାରୂପେ ବ୍ରହ୍ମଙ୍କ ଅସ୍ତିତ୍ୱକୁ ମାନିବାକୁ ହେବ । ସୁତରାଂ ସୃଷ୍ଟି-କର୍ତ୍ତୃତ୍ୱ *(authorship of creation)* ପରି ବେଦ-କର୍ତ୍ତୃତ୍ୱ *(Authorship of the Vedas)* ପାଇଁ ସ୍ରଷ୍ଟାଙ୍କ ଅସ୍ତିତ୍ୱ ଅନିବାର୍ଯ୍ୟ ।

ବେଦାନ୍ତ ଦର୍ଶନର ଏହି ସୂତ୍ର ପାଇଁ ଶାଂକର-ଭାଷ୍ୟ ଦେଖିଲେ ଆହୁରି ତନ୍ମୟ ହେବାକୁ ପଡ଼େ । ଶଂକର ସଂସାରର ଅଦ୍ୱୈତବାଦୀ ଦାର୍ଶନିକଙ୍କ ସମ୍ରାଟ * । ଦାର୍ଶନିକ-ସଂସାରରେ ତାହାଂକ ସାମାଜ୍ୟ ଅଦ୍ୟାପି ଅଖଣ୍ଡ, ନିର୍ବିବାଦ । ମହାପୁରୁଷ ଶଂକର ସୂତ୍ରର ବ୍ୟାଖ୍ୟା କରିଛନ୍ତି—'ଋକ୍ ବେଦାଦ ବେଦଶାସ୍ତ୍ର ବହୁ ବିଦ୍ୟାଯୁକ୍ତ ।' ଦୀପକ ପରି ସେ ସବୁ ପଦାର୍ଥ-ବୋଧକ, ସର୍ବଜ୍ଞ । ଏହି ସବୁର ନିମିତ୍ତ କାରଣ ବ୍ରହ୍ମ କେବଳ ହୋଇ ପାରନ୍ତି ।

'ସର୍ବଜ୍ଞତା ଲକ୍ଷଣ ଯୁକ୍ତ ବେଦ ଶାସ୍ତ୍ରର ଉତ୍ପତ୍ତି ସର୍ବଜ୍ଞ ପରମାତ୍ମା ଛଡ଼ା ଆଉ କେହି କରି ନ ପାରନ୍ତି । ପାଣିନି ଆଦିଙ୍କ ଗ୍ରନ୍ଥରେ ଯେଉଁ ସବୁ ଜ୍ଞାନ ଭଣ୍ଡାର ରହିଛି, ତତୋଧିକ ଜ୍ଞାନ ସେହି ସବୁ ଗ୍ରନ୍ଥକାରଙ୍କ ମସ୍ତିଷ୍କରେ ବିଦ୍ୟମାନ । ଋକ୍ ବେଦାଦ ଗ୍ରନ୍ଥ ଅତୁଳନୀୟ । ଏଥିରେ ଜ୍ଞାନର ସମୁଦ୍ର ପଡ଼ିଛି । ଏ ସବୁର ଉତ୍ପତ୍ତି କାରଣ ସର୍ବଜ୍ଞ ପରମାତ୍ମା ଛଡ଼ା ଆଉ କେହି ନୁହନ୍ତି । ସର୍ବଜ୍ଞ ବ୍ରହ୍ମହିଁ ଏ ସବୁର କାରଣ ।

* *Meanings of Truth—By William James*

ଶ୍ୱାସ ପ୍ରଶ୍ୱାସ ଭଳି ପରମାତ୍ମା ଅନାୟାସରେ ବେଦୋଦ୍ଧୃତି କରିଛନ୍ତି । †

ଗୋଟିଏ ଜାତିସଂଘ ବା ଗୋଟିଏ ବିଶ୍ୱ ସରକାରର କୃତ୍ରିମ ଓ କୃତଜ୍ଞତାହୀନ ଧ୍ୱଜ ନେଇ ମନୁଷ୍ୟ ଜାତି ବେଳୁବେଳ ବିଚ୍ଛିନ୍ନ ହେଉଥିବା ବେଳେ, ତାହାର ଆଦି ଜ୍ଞାନ ଓ ଆଦି ଭାଷାର ଅକୃତ୍ରିମ ଓ କୃତଜ୍ଞ ଚିନ୍ତାଧାରାର ଆତ୍ମିକ ଧ୍ୱଜା ତଳେ ଏକାଠି ହେବାର କଳ୍ପନା ଆଜି ଆସୁନାହିଁ । ପକ୍ଷପାତିତା ଓ ସଂକୀର୍ଣ୍ଣ ଧର୍ମାନ୍ଧତା ପ୍ରଭାବରୁ ବହୁ ପାଶ୍ଚାତ୍ୟ ପଣ୍ଡିତ ବେଦକୁ ଏକ ପ୍ରାଚୀନ ଭାରତୀୟ ଶାସ୍ତ୍ରରୂପେ ଗ୍ରହଣ କରି ତାହାର ଅପୌରୁଷେୟତା ଉପଲବ୍ଧି କରିପାରୁ ନାହାନ୍ତି ।

ବେଦ-ପ୍ରାଣ ଭାରତବର୍ଷରେ ବି ଆଜି ଠାଏଁ ୨ ବେଦର ଐଶ୍ୱରିକତା ସମ୍ବନ୍ଧେ ପ୍ରଶ୍ନ ହେଉଛି । ବେଦ ମନ୍ତ୍ରର ବହୁ ଅର୍ଥକାରୀ ଗମ୍ଭୀର ଶବ୍ଦମାନଙ୍କ ସଂକୁଚିତ ଅର୍ଥ କରି ସେଥିରୁ ଇତିହାସ ସୃଷ୍ଟି କରା-ଯାଉଛି ।

---

† ମହତ ଋକ୍‌ବେଦାଦେଃ ଶାସ୍ତ୍ରସ୍ୟ ଅନେକ ବିଦ୍ୟାସ୍ଥାନୋ ପବୃଂ-ହିତସ୍ୟ ପ୍ରଦୀପବତ୍ ସର୍ବାର୍ଥାବଦ୍ୟୋତିନଃ ସର୍ବଜ୍ଞ କଳ୍ପସ୍ୟ ଯୋନିଃ କାରଣଂ ବ୍ରହ୍ମ । ନହି ଈଦୃଶସ୍ୟ ଶାସ୍ତ୍ରସ୍ୟ ଋକ୍‌ବେଦାଦି ଲକ୍ଷଣସ୍ୟ ସର୍ବଜ୍ଞ ଗୁଣାନ୍ୱିତସ୍ୟ ସର୍ବଜ୍ଞାଦନ୍ୟତଃ ସଂଭବୋଽସ୍ତି । ଯଦ୍ୟଦ୍ୱିସ୍ତରାର୍ଥଂ ଶାସ୍ତ୍ରଂ ଯସ୍ମାତ୍ ପୁରୁଷ ବିଶେଷାତ୍ ସଂଭବତି, ଯଥା ବ୍ୟାକରଣାଦି ପାଣିନ୍ୟାଦେଃ ଜ୍ଞେୟୈକଦେଶାର୍ଥମପି, ସ ତତୋଽପ୍ୟଧିକତର ବିଜ୍ଞାନ ଇତି । କିମୁ ବକ୍ତବ୍ୟମ୍, ଅନେକ ଶାଖାଭେଦ ଭିନ୍ନସ୍ୟ ଦେବତିର୍ଯ୍ୟଙ୍-ମନୁଷ୍ୟ ବର୍ଣ୍ଣାଶ୍ରମାଦି ପ୍ରବିଭାଗ ହେତୋଃ ଋକ୍ ବେଦାଦ୍ୟାଖ୍ୟସ୍ୟ ସର୍ବଜ୍ଞାନାକରସ୍ୟ ଅପ୍ରଯତ୍ନେନୈବ ଲୀଳାନ୍ୟାୟେନ ପୁରୁଷ ନିଃଶ୍ୱାସବତ୍ ଯସ୍ମାତ୍ ମହତୋ ଭୂତାତ୍ ଯୋନେଃ ସଂଭବଃ ।

ବେଦାର୍ଥ କରିବାରେ ନିରୁକ୍ତ ବେଦାଙ୍ଗାଦିର ସହାୟତା ନିଆଯାଉନାହିଁ । ଫଳରେ ବେଦୋକ୍ତ ରାଧା, କୃଷ୍ଣ, ଦୁଷ୍ୟନ୍ତ, ଶକୁନ୍ତଳା, ଇନ୍ଦ୍ରା, ବୃତ୍ର ଆଦି ନିତ୍ୟାର୍ଥବାଚୀ ଶବ୍ଦମାନଙ୍କୁ ଐତିହାସିକପୁରୁଷ ରୂପେ ନେଇ କାହାଣୀ ଗଢା ଯାଉଛି । ଯେଉଁ ଶ୍ରୀକୃଷ୍ଣାଦି ମହାପୁରୁଷ ଦୈନନ୍ଦନ ବେଦପାରାୟଣ ଓ ବେଦୋକ୍ତ ଧର୍ମର ପ୍ରଚାର କରୁଥିଲେ, ସେମାନଙ୍କ ନାମ ବେଦରେ କିପରି ଆସିପାରେ, ଏହି ପ୍ରଶ୍ନକଲେ ଓଲଟି ଉତ୍ତର ମିଳୁଛି--ବେଦ ଏକ ଭବିଷ୍ୟବାଣୀ । ମହାଭାରତ ସମର ପରେ ୨ ସଂସାରର ବହୁ ମହାପୁରୁଷ ଓ ବେଦଜ୍ଞଙ୍କ ମହାପ୍ରୟାଣ ସଙ୍ଗେ ୨ ବେଦାଲୋଚନାରେ ଏ ଭଳି ବହୁ ସଂଶୟାତ୍ମକ ବୁଦ୍ଧି ଉତ୍ପନ୍ନ ହୋଇଛି ।

ଘଣ୍ଟାରେ ଶହେ ମାଇଲ ଗତି କରୁଥିବା ବିଦ୍ୟୁତ-ପରିଚାଳିତ ରେଲଗାଡିରେ ଭ୍ରମଣ କରିବା ବେଳେ ଯାତ୍ରୀ ଯଦି ଜେମସ୍ ଉଆଟ୍ଙ୍କ ଘଣ୍ଟାରେ ଚାରି ମାଇଲ ଗତି କରୁଥିବା ସଂସାରର ପ୍ରଥମ ଆବିଷ୍କୃତ ବାଷ୍ପୀୟ-ଶକଟକୁ ଭୁଲିଯାଏ, ତେବେ ତାହା କୃତଘ୍ନତାର କାର୍ଯ୍ୟ ହେବ । ପରଂତୁ ବେଦ ଅନୁପମ । ଏହାର ମୂଳ ତତ୍ତ୍ୱରେ ଆଦି ସୃଷ୍ଟିରୁ କୌଣସି ନୂତନ ବାଣୀ ବା ଜ୍ଞାନର ଆବିଷ୍କାର ହୋଇନାହିଁ । ଆମ ବାକ୍ ଓ ଚିନ୍ତାଧାରାରେ ଯେଉଁ ଆଦି ଓ ନିତ୍ୟବାଣୀ ଓତପ୍ରୋତ, ତାହାକୁ ଭୁଲିଯିବା କି ଉଚିତ କାର୍ଯ୍ୟ ହେବ ? ଆସ ପାଠକେ, ସେହି ଆଦି ବାଣୀର ନିମିତ୍ତକୁ ଅନ୍ୱେଷଣ କରିବା ।

## —ଦ୍ୱିତୀୟ ଅଧ୍ୟାୟ—

### ବେଦ ଶବ୍ଦର ବହୁଳ ପ୍ରୟୋଗ

ଆମ ଚିନ୍ତାଧାରା ଓ ରୀତିନୀତି ଭିତରେ ବେଦର ପ୍ରଭାବ ଅତି ନିବିଡ଼ ଭାବେ ନିହିତ ଓ ଦୃଢ଼ୀଭୂତ — ଏକଥାରୁ ଆମେ ଆଲୋଚନା ଆରଂଭ କରିଥିଲେ । ଆଜିକାଲିର ତଥାକଥିତ ପାଶ୍ଚାତ୍ୟ ସଭ୍ୟତାରେ ଧର୍ମ ଗୀର୍ଜା ବା ମଂଦିର ଘରେ ସପ୍ତାହରେ ଦିନେ ଏବଂ ତାହାର ଅଳ୍ପକ୍ଷଣର ଧର୍ମାନୁଷ୍ଠାନ ମଧ୍ୟରେ ସୀମାବଦ୍ଧ । ପରଂତୁ ବୈଦିକ ସଭ୍ୟତାରେ ଦୈନନ୍ଦିନ ଜୀବନର ଖାଇବା, ଶୋଇବା, କହିବା ବା କରିବା ଆଦି ପ୍ରତ୍ୟେକ କର୍ମ-ପ୍ରଣାଳୀ ଭିତରେ ଧର୍ମର ଭାବ ଓତପ୍ରୋତ ଭାବେ ଜଡ଼ିତ । ଯାହା ଧର୍ମ ଦୃଷ୍ଟିରୁ ବିହିତ ତାହାହିଁ ଆମ ଖାଦ୍ୟ; ଅନ୍ୟ ସବୁ ଅଖାଦ୍ୟ । ସେହିପରି ଯାହା ଧର୍ମାନୁମୋଦିତ ତାହାହିଁ କରଣୀୟ ଓ ବରଣୀୟ । ଜୀବନ ଧାରଣର ଏହି ମୁଖ୍ୟ ଅଂଗ ଧର୍ମ ପାଇଁ ଆମେ ଅବହମାନ କାଳରୁ ବେଦର ନିର୍ଦ୍ଦେଶକୁ ଅପେକ୍ଷା କରି ଆସିଛେ । ବହୁ ଭ୍ରାନ୍ତଜ୍ଞାନ ବଶତଃ ଆଜି

ବେଦ ପ୍ରତି ଆମର ଶ୍ରଦ୍ଧା ଯାହା ହ୍ରାସ ପ୍ରାପ୍ତ ହୋଇଅଛି, ତାହା ଅକୃତ୍ରିମ ଓ ସାମୟିକ ମାତ୍ର । ଏବେ ସୁଦ୍ଧା 'ବେଦର ଗାର' ଉକ୍ତିଟି ଏକ ସ୍ୱତଃ-ପ୍ରବୃତ୍ତି ରୂପେ ଆମ ହୃଦୟରେ ରହି ଆସିଛି ।

କୌଣସି ଲୌକିକ ବା ପରଲୌକିକ କ୍ରିୟାକାଣ୍ଡର ପ୍ରାମାଣିକତା ପାଇଁ ଆମେ ସ୍ମୃତି ଶାସ୍ତ୍ରର ମନ୍ତବ୍ୟକୁ ଗ୍ରହଣ କରିଥାଉଁ । ଅର୍ଥାତ୍ ଅନ୍ୟାନ୍ୟ ଲୌକିକସାହିତ୍ୟ ଅପେକ୍ଷା ସ୍ମୃତିର ନିର୍ଦ୍ଦେଶ ଅଧିକ ପ୍ରମାଣିକ ଓ ବିଶ୍ୱାସ ଯୋଗ୍ୟ। ପରନ୍ତୁ କୌଣସି ଠାରେ ସ୍ମୃତି ଓ ଶ୍ରୁତି (ବେଦ) ମଧ୍ୟରେ ପାର୍ଥକ୍ୟ ଘଟିଲେ, ଶ୍ରୁତିର ସିଦ୍ଧାନ୍ତକୁ ଗ୍ରହଣ କରିବାକୁ ହୁଏ । ମନୁଷ୍ୟ ରଚନାରେ ଭ୍ରାନ୍ତି ଥାଇପାରେ, ପରନ୍ତୁ ଈଶ୍ୱର ପ୍ରେରଣାରେ ଭ୍ରାନ୍ତି କାହିଁ ? ମନୁସ୍ମୃତିରେ ଅଛି ଯେଉଁ ସ୍ମୃତି ବେଦ ବିରୁଦ୍ଧ, ତାହା ନିଷ୍ଫଳ † । ବେଦର ପ୍ରମାଣକୁ ପରମ ପ୍ରମାଣ — ସ୍ୱତଃ ପ୍ରମାଣ ବୋଲି ମହର୍ଷି ମନୁ ଗ୍ରହଣ କରିଛନ୍ତି ✱ । ଅର୍ଥାତ୍ ବେଦର ପ୍ରମାଣ ହିଁ ବେଦ ।

ବେଦ ପ୍ରତି ଏହି ଅସୀମ ଶ୍ରଦ୍ଧା ଓ ସମ୍ମାନ ଯୋଗୁଁ ଯେ କୌଣସି ତଥ୍ୟକୁ ପୋଷଣ କରିବାକୁ ହେଲେ ତାହାପାଇଁ ବେଦରୁ ଉଦ୍ଧରଣ ଦିଆ ଯାଉଛି । ବେଦ ବିହିତ ବୋଲି ପ୍ରଚରିତ ହେଲେ, ଲୋକେ ସେ କଥାକୁ ସହଜେ ଗ୍ରହଣ କରି ନେଉଛନ୍ତି । କୌଣସି ଶାସ୍ତ୍ରକୁ ଲୋକପ୍ରିୟ କରାଇବାକୁ ହେଲେ ତାହାକୁ କୌଣସି ଏକ ବେଦ ନାମରେ ଅଭିହିତ କରି ଦିଆଯାଉଛି । ଏହି ରୂପେ ପ୍ରାଚୀନ ଓ ଅର୍ବାଚୀନ କାଳରେ ବହୁ

---

† ଯା ବେଦବାହ୍ୟାଃ ସ୍ମୃତୟୋ ଯାଚ କାଶ୍ଚ କୁଦୃଷ୍ଟୟଃ ।
ସର୍ବାସ୍ତା ନିଷ୍ଫଳାଃ ପ୍ରେତ୍ୟ ତମୋନିଷ୍ଠା ହି ତାଃ ସ୍ମୃତାଃ ॥ (ମନୁ ୧୨,୯୫)

✱ ଧର୍ମ ଜିଜ୍ଞାସ ମାନନାଂ ପ୍ରମାଣଂ ପରମଂ ଶ୍ରୁତିଃ । (ମନୁ ୨, ୧୩)

ଗ୍ରଂଥ ବେଦ ନାମରେ ପରିଚିତ ହୋଇଛି । ଶାସ୍ତ୍ରୀୟ ଇତିହାସ ଆଲୋଚନା କଲେ ଜଣାଯାଏ ଯେ ଯେଉଁ ଯୁଗରେ ସ୍ମୃତିର ପ୍ରଧାନ୍ୟ ଥିଲା, ସେତେବେଳେ ବହୁ ଶାସ୍ତ୍ର ସ୍ମୃତି ନାମରେ ପରିଚିତ ହେଉଥିଲେ । ଯେତେବେଳେ ସୂତ୍ର ଶାସ୍ତ୍ରର ପ୍ରାଧାନ୍ୟ ଥିଲା, ବହୁ ଗ୍ରଂଥ ସୂତ୍ର ନାମରେ କଥିତ ହେଉଥିଲେ । ପୁରାଣ ଯୁଗର ପ୍ରାଧାନ୍ୟ ଏବେ ସୁଦ୍ଧା ଯାଇ ନଥିବାରୁ କେହି କେହି ଆଜ 'ଗାନ୍ଧି ପୁରାଣ' ଆଦି ରଚନା କରୁଛନ୍ତି । ବେଦର ପ୍ରାଧାନ୍ୟ ସବୁକାଳେ । ଏଣୁ ସବୁକାଳେ କୌଣସି ରଚନାକୁ ଲୋକପ୍ରିୟ କରାଇବା ଲାଗି ତାହାକୁ ବେଦ ନାମରେ ପରିଚିତ କରା ଯାଇଥାଏ ।

ବ୍ରାହ୍ମଣ କାଳରେ ବହୁ ଗ୍ରଂଥ ବେଦ ନାମରେ କଥିତ ହେଉଥିଲା । ଗୋପଥ ବ୍ରାହ୍ମଣରେ ସର୍ପବେଦ, ପିଶାଚବେଦ, ଅସୁରବେଦ, ଇତିହାସ ବେଦ ଓ ପୁରାଣ ବେଦର ନାମୋଲ୍ଲେଖ ଅଛି † । ନାଟ୍ୟଶାସ୍ତ୍ରର ଆଦର ଓ ସମ୍ମାନ ପ୍ରତିଷ୍ଠା ପାଇଁ ଭରତାଚାର୍ଯ୍ୟ ଏହାକୁ ନାଟ୍ୟବେଦ ନାମରେ ପରିଚୟ ଦେଇଛନ୍ତି—ଚତୁର୍ବେଦ ପ୍ରକାଶ ପରେ ଭଗବାନ ନାଟ୍ୟବେଦ ସଂକଳନ କଲେ । ଋକ୍ ବେଦରୁ ପାଠ, ସାମବେଦରୁ ଗୀତ, ଯଜୁର୍ବେଦରୁ ଅଭିନୟ ଓ ଅଥର୍ବରୁ ରସ ନେଇ ଏହି ନାଟ୍ୟ-ବେଦ ପ୍ରକାଶିତ ହେଲା ✻ । କହିବା ବାହୁଲ୍ୟ ଯେ ଏଠାରେ ନାଟ୍ୟ ଶାସ୍ତ୍ରର

---

† ତାଭ୍ୟଃ ପଂଚବେଦାନ୍ନିରମିମତ । ସର୍ପ ବେଦଂ ପିଶାଚ ବେଦ-ମସୁର ବେଦମିତହାସ ବେଦଂ ପୁରାଣ ବେଦମିତ । (ଗୋପଥ ୧, ୧୦)

✻ ସଂକଲ୍ୟ ଭଗବାନେବଂ ସର୍ବବେଦାନୁସ୍ମରନ୍ ।
ନାଟ୍ୟବେଦଂ ତତଶ୍ଚକ୍ରେ ଚତୁର୍ବେଦାଙ୍ଗ-ସଂଭବମ୍ ॥
ଜଗ୍ରାହ ପାଠ୍ୟଂ ଋକ୍ ବେଦାତ୍ ସାମେଭ୍ୟୋ ଗୀତମେବ ଚ ।
ଯଜୁର୍ବେଦାଦଭିନୟାନ୍ ରସାନାଥର୍ବଣାଦପି ॥ (ନାଟ୍ୟ ଶାସ୍ତ୍ର)

ପ୍ରାଧାନ୍ୟ ବର୍ଦ୍ଧନ ପାଇଁ ଏହାକୁ ଏକ ବେଦ ନାମରେ ଭୂଷିତ କରି ଯାଇଛି । ସେହିପରି ମହାଭାରତ ଗ୍ରଂଥକୁ ପଂଚମ ବେଦ ନାମରେ ପ୍ରସିଦ୍ଧ କରି ଯାଇଛି । ଚରକ-ସୁଶ୍ରୁତ ଓ ନାରଦ ସଂହିତାକୁ ଯଥାକ୍ରମେ ଆୟୁର୍ବେଦ ଓ ଗାନ୍ଧର୍ବ ବେଦ ବୋଲି କୁହା ଯାଉଛି । ଏହା ଛଡ଼ା ଧନୁର୍ବେଦ ଆଦି ଅନେକ ବେଦ କଥିତଅଛି । ଗ୍ରଂଥର ଲୋକପ୍ରିୟତା ପାଇଁ ଏହିପରି ନାମକରଣ ହୋଇଛି ।

## ପ୍ରୟୋଗରେ ସୀମା ଲଂଘନ

ବେଦ ପ୍ରତି ଏହି ଅସୀମ ଶ୍ରଦ୍ଧା ବଶତଃ ବେଦ ଶବ୍ଦର ବହୁଳ ପ୍ରୟୋଗ ବେଳେ ବେଳେ ସୀମା ଲଂଘନ କରିଛି । ବହୁ ଗ୍ରଂଥକୁ ବେଦନାମରେ ପରିଚିତ କରାଇବାରେ ଶାସ୍ତ୍ରୀୟ କ୍ଷେତ୍ରରେ ଅରାଜକତା ସୃଷ୍ଟି ହୋଇଛି । ବେଳେ ବେଳେ ବହୁ ନିକୃଷ୍ଟ ଗ୍ରଂଥକୁ ପରମ ପବିତ୍ର, ସନାତନ ଓ ଈଶ୍ୱର-ନିଃସୃତ ବେଦ ନାମରେ ନାମିତ କରାଇବାରେ, ବେଦ ସ୍ଥଳେ ବେଳେ ଲୋକ-ବିଶ୍ୱାସ ହରାଉଛି ।

ବାମ ମାର୍ଗୀମାନେ ମଧ୍ୟଯୁଗରେ ମୂଳ ବେଦର ସମାନ୍ତରରେ ବହୁ କଳ୍ପିତ ବେଦ ମାନ ରଚନା କରିଥିଲେ । ପଶୁହିଂସା, ମଦ୍ୟପାନ, ସ୍ତ୍ରୀ ସମର୍ପଣ, ଗୁପ୍ତେନ୍ଦ୍ରିୟ ପୂଜନ, ଯଜ୍ଞରେ ପଶୁ ବଧାଦି ବହୁ ବ୍ୟଭିଚାରକୁ ସମାଜରେ ପ୍ରଚଳନ କରାଇବା ଲାଗି ଏହି ଧୂର୍ତ୍ତମାନେ ବହୁ ଶାସ୍ତ୍ର ରଚନା କରି ସେ ସବୁକୁ ବେଦ ନାମରେ ଭଣିତ କରୁଥିଲେ । ଏହିରୂପେ 'କୃଷ୍ଣ ବା ତୈତ୍ତିରୀୟ ଯଜୁର୍ବେଦ' ନାମରେ ଏକ ବେଦର ପ୍ରଚଳନ ଏବେ ମଧ୍ୟ ରହିଛି । ରାମାୟଣ ଯୁଗର ରାବଣପନ୍ଥୀ ଦୁଷ୍ଟବୁଦ୍ଧି ପଣ୍ଡିତ ମାନଙ୍କଠାରୁ ମଧ୍ୟଯୁଗୀୟ ଦ୍ରାବିଡ଼ ପଣ୍ଡିତମାନଙ୍କ ଜରିଆରେ ଏହି ବେଦର ରଚନା ଓ ପ୍ରଚାର ହୋଇଛି । ଏଥିରେ ବେଦ ନାମରେ ସକଳ

ନାରକୀୟ ପ୍ରବୃତ୍ତିର ପ୍ରସାର କରାଯାଇଛି । ଦେବତାଙ୍କ ଲାଗି କୁମାରୀ ବଧର ନିର୍ଦ୍ଦେଶ ଦିଆ ଯାଇଛି † ! ଯଜ୍ଞରେ ଗୃହପାଳିତ ପଶୁଙ୍କ ବଧପାଇଁ ଯୋଜନା ଖଂଜା ଯାଇଛି ✱ । ମଦ୍ୟପାନର ବହୁ ପ୍ରଣାଳୀ ବତାଇ ଦିଆ ଯାଇଛି—ଯାହାର ପୂର୍ବ ପୁରୁଷ ମଦ୍ୟପାନ କରୁ ନଥିଲେ ସେମାନଙ୍କୁ ବ୍ରାତ୍ୟ ବା ନୀଚ ବୋଲି କୁହାଯାଇଛି + । ଲିଂଗ-ପୂଜନ ପାଇଁ ବହୁ ହୀନ ତଥ୍ୟମାନ ପ୍ରଚୁର କରା ଯାଇଛି ।

ବାସ୍ତବରେ ଶୁଦ୍ଧ ବୈଦିକ ଶାସ୍ତ୍ରରେ ସକଳ ଅଯୁକ୍ତ ସିଦ୍ଧାନ୍ତର ସମ୍ମିଶ୍ରଣ ଦାକ୍ଷିଣାତ୍ୟରେ ହିଁ ହୋଇଛି । ଈଶ୍ୱର-ଜୀବ- ପ୍ରକୃତିର ଅବୈଦିକ ତ୍ରୈତ ସିଦ୍ଧାନ୍ତ ବିକୃତ ହୋଇ ଏହିଠାରେ ହିଁ ଦ୍ୱୈତ, ଅଦ୍ୱୈତ, ଶୁଦ୍ଧାଦ୍ୱୈତ, ବିଶିଷ୍ଟାଦ୍ୱୈତ, ଦ୍ୱୈତାଦ୍ୱୈତ ଆଦି ବହୁ ମିଶ୍ରିତ ଦର୍ଶନର ପ୍ରଚୁର ଆରମ୍ଭ ହୋଇଛି । ବେଦ ନାମରେ ବହୁ କଳଂକିତ ପ୍ରଥାର ପ୍ରଚଳନକୁ ଦେଖି ଯୁଗେ ୨ ବେଦପ୍ରେମୀଗଣ ହତାଶ ହୋଇ ପଡିଛନ୍ତି ।

ଆଜକୁ ତିନି ହଜାର ବର୍ଷ ପୂର୍ବେ ଏପରି ଏକ ବୀଭତ୍ସ ବାତାବରଣରେ ଏ ଦେଶରେ ଚାର୍ବାକ ମତ ମୁଣ୍ଡ ଟେକିଥିଲା । ଏହି ମତର

---

† ପ୍ରତୀକ୍ଷାୟୈ କୁମାରୀମ୍ । (କୃଷ୍ଣ ଯଜୁର୍ବେଦୀୟ ତୈତ୍ତିରୀୟ ବ୍ରାହ୍ମଣ)

✱ ପଶୂନେବାବରୁନ୍ଧେ ସପ୍ତ ଗ୍ରାମ୍ୟାଃ ପଶବଃ ସପ୍ତାରଣ୍ୟାଃ ସପ୍ତଚ୍ଛନ୍ଦାଂସ୍ୟୁଭୟସ୍ୟାବରୁଦ୍ଧ୍ୟୈ ।

+ ଅନସ୍ୟା ବା ଏତସ୍ୟ ମଳଂ ଯତ୍ ସୁରା । ଯସ୍ୟ ପିତା ପିତାମହାଦ ସୁରା ନ ପିବେତ୍ ସ ବ୍ରାତ୍ୟଃ । (ତୈତ୍ତିରୀୟ ସାହିତ୍ୟ)

ପ୍ରଚାରରେ ଏ ଦେଶର ପାରଂପାରିକ ସଂସ୍କୃତି ଉପରେ ଯେଉଁ ମରଣାନ୍ତ ଚୋଟ ବସିଥିଲା, ତାହାର ଦାଉ ଏବେ ବି ଉପଶମ ହୋଇନାହିଁ ! ବେଦ ନାମରେ ବହୁ ବେଦ ବିରୁଦ୍ଧ ମତର ପ୍ରଚାରକୁ ଦେଖି ତାହାକୁ ପ୍ରତିରୋଧ କରିବା ପାଇଁ ଚାର୍ବାକ ଦଳ ମେଣ୍ଟ ବାନ୍ଧିଥିଲେ । କିଂତୁ ଅସଲ ଓ ନକଲ ବେଦର ବିଚ୍ଛେଦ କରି ନପାରି ସବୁ ବେଦକୁ ଚାର୍ବାକ ଦଳ ପୋଡ଼ିଲେ ଓ ପୋତିଲେ ।

ନିରୁକ୍ତ ଓ ବ୍ୟାକରଣ ଶାସ୍ତ୍ରର ପ୍ରାଧାନ୍ୟ ହ୍ରାସ ହୋଇ ଥିବାରୁ, ଦେବବାଣୀ ଓ ସଂସ୍କୃତ ସାହିତ୍ୟ ଶିକ୍ଷାରେ ସରଳ ପନ୍ଥା ବିସ୍ମୃତ ଓ ପରିତ୍ୟକ୍ତ ହୋଇ ଥିବାରୁ ବେଦ ଆଜି ଦୁର୍ବୋଧ ହେଉଛି । ଇଂରାଜୀ, ଲେଟିନ୍ ଆଦି ଯେଉଁ ସାହିତ୍ୟ ମାନଙ୍କରେ ବ୍ୟାକରଣର ଶୃଂଖଳା ଓ ସଂଯମ ପରିପୂର୍ଣ୍ଣ ନୁହେ ଓ ଯେଉଁ ସବୁର ଆଂଶିକ ବୋଧ ପାଇଁ ଜଣେ ବିଦ୍ୟାର୍ଥୀକୁ ଅନ୍ୟୂନ ବାର ବର୍ଷର ସମୟ ନେବାକୁ ହେଉଛି, ସେ ସବୁକୁ ଅଭ୍ୟାସବଶତଃ ସରଳ ଓ ପରିପୂର୍ଣ୍ଣ ସାହିତ୍ୟ ବୋଲି ଗ୍ରହଣ କରି ନିଆଯାଇଛି ।

ସେ ଯାହା ହେଉ, ବୈଦିକ ସାହିତ୍ୟ ଅନୁଶୀଳନର ସରଣୀ ଦାରୁଣ ଭାବେ ହ୍ରାସ ହେବାକୁ ଯାଉଛି । ପରଂତୁ ବେଦ ପ୍ରତି ଆନ୍ତରିକ ଓ ବାଚନିକ ଶ୍ରଦ୍ଧା କ୍ଷୁନ୍ନ ହୋଇନାହିଁ । ଫଳରେ ଆଜିକାଲି ବି ବହୁ ସ୍ୱାର୍ଥପର ଓ ମିଶ୍ରିତ ମତର ପ୍ରଚାର ପାଇଁ ବହୁ ଜାଲ୍ ବେଦମାନ ରଚିତ ହେଉଛି ।

'ଅଲ୍ଲାବେଦ', 'ଖ୍ରୀଷ୍ଟବେଦ' ଆଦି ବେଦମାନଙ୍କର ନାମ ଶୁଣା ଯାଉଛି । ଦାକ୍ଷିଣାତ୍ୟରେ ଖ୍ରୀଷ୍ଟମତର ପ୍ରଚାର ପାଇଁ ୧୭୬୨ ଖ୍ରୀଷ୍ଟାବ୍ଦରେ

ଜଣେ ପାଦ୍ରୀ † ଦ୍ୱାରା ପଣ୍ଡିତମାନଙ୍କୁ ଉତ୍କୋଚ ଦେଇ ପୁରାଣ ଓ ବାଇବେଲ୍‌ର ସମ୍ମିଶ୍ରଣରେ ଏକ ସଂସ୍କୃତ 'ଯଜୁର୍ବେଦ' ରଚନା କରାଇଥିଲେ । ଲେଖିବାର ତାତ୍ପର୍ଯ୍ୟ ଏହି ଯେ ସ୍ୱାର୍ଥାନ୍ୱେଷୀ ଜନ ନିଜ ନିଜ ସିଦ୍ଧାନ୍ତର ପ୍ରଚାର ପାଇଁ ବହୁ ଶାସ୍ତ୍ର ରଚନା କରି ସେସବୁକୁ ବେଦ ନାମରେ ଅଭିହିତ କରାଇ ଥାନ୍ତି । ଫଳତଃ ମୂଳ ବେଦ ଧିରେ ଧିରେ ବିସ୍ମୃତ ହୋଇଯାଏ । ଏ ସବୁର ସାରବତ୍ତା ଉପଲବ୍ଧ ହେବାରେ ବହୁ ଗୌଣ ଶାସ୍ତ୍ର ବେଦ ନାମରେ ପ୍ରଚାରିତ ହୋଇ ପ୍ରତିବନ୍ଧକ ରୂପେ ଠିଆ ହୁଅନ୍ତି । ପ୍ରକୃଷ୍ଟ ମୂଳବେଦ ଭାଷ୍ୟ କରିବାରେ ମହୀଧର ଆଦି ମଧ୍ୟଯୁଗୀୟ ଭାଷ୍ୟକାରମାନେ ଯେଉଁ କଦର୍ଯ୍ୟ ଓ ଅଶ୍ଳୀଳ ଅର୍ଥମାନ କରିଯାଇଛନ୍ତି, ଅସାଧାରଣ ବେଦପାଠୀ ନହେଲେ ଅନ୍ୟ କେହି ସେସବୁର ସଂଶୋଧନ କରି ଉଚିତ ଅର୍ଥ କରି ନପାରନ୍ତି ।

ବେଦାଲୋଚନାରେ ବାମମାର୍ଗୀଙ୍କ ଉଚ୍ଛୃଙ୍ଖଳତା ଦେଖି ଚାର୍ବାକ ସେସବୁର ସଂଶୋଧନ କରି ନପାରି ମୂଳରୁ ବେଦକୁ ଧୂର୍ତ୍ତ ଓ ନିଶାଚରଙ୍କ ମନଗଢ଼ା କଥା ବୋଲି ପ୍ରଚାର କରିଥିଲେ—'ତ୍ରୟୋ ବେଦସ୍ୟ କର୍ତ୍ତାରୋ ଭଣ୍ଡ ଧୂର୍ତ୍ତ ନିଶାଚରାଃ' । ଆଧୁନିକ ଯୁଗରେ ବି ବହୁ ଅର୍ଦ୍ଧ ପଠିତ ପାଶ୍ଚାତ୍ୟ ପଣ୍ଡିତ ଓ ସେମାନଙ୍କ ଅନୁଗାମୀ ଭାରତୀୟ ପଣ୍ଡିତ ବେଦ ମନ୍ତ୍ରର ଉଚିତ ଅର୍ଥ ବୁଝି ନପାରି ସେ ସବୁକୁ ହତାଦର କରିଥାନ୍ତି । ଏହିରୂପେ ମେକ୍ସ୍‌ମୁଲର୍ ଲେଖିଛନ୍ତି— 'ବହୁ ବେଦମନ୍ତ୍ର ଅତ୍ୟନ୍ତ ଅପରିପକ୍ୱ, ଜଟିଳ, ନିକୃଷ୍ଟ ଓ ସାଧାରଣ ଅଟେ ❋ ।'

---

† *Robert De Noble*

❋ *Large number of Vedic hymns are childish in extreme, tedious, low, common place. (chips from a German Workshop by Prof. Maxumuller)*

## ମୂଳ ଚାରି ବେଦ

ଯେଉଁ ବେଦ ସଂବନ୍ଧରେ ଆଲୋଚନା କରିବା ପାଇଁ ଏହି ଗ୍ରନ୍ଥ ଉଦ୍ଦିଷ୍ଟ, ପ୍ରଥମ ଅଧ୍ୟାୟରେ ଯାହାଙ୍କୁ କି ଅଭିବାଣୀ, ଅଭିଭାଷା ଓ ଅଭିଜ୍ଞାନ ବୋଲି ପରିଚୟ ଦିଆ ଯାଇଛି, ସେସବୁ ହେଉଛନ୍ତି ଋକ୍, ଯଜୁ, ସାମ ଓ ଅଥର୍ବ—ଚାରି ମୂଳ ବେଦ । ପରବର୍ତ୍ତୀ କାଳରେ ଯେଉଁ ଗ୍ରନ୍ଥ ସକଳ ବେଦ ନାମରେ ପରିଚିତ ହୋଇଛନ୍ତି ସେ ଗୁଡିକ ଋକ୍ ବେଦାଦି ଚାରି ବେଦର ମହିମା ଗାନ କରିଛନ୍ତି—ଉକ୍ତ ଚାରି ବେଦଙ୍କୁ ଅଭିଜ୍ଞାନ ବୋଲି ସ୍ୱୀକାର କରିଛନ୍ତି ।

ଉପନିଷଦକାର ଲେଖିଛନ୍ତି—

ଅରେ ଅସ୍ୟ ମହତୋ ଭୂତସ୍ୟ ନିଃଶ୍ୱସିତମେତତ୍
ଯଦୃଗ୍ୱେଦୋ ଯଜୁର୍ବେଦଃ ସାମବେଦୋଥର୍ବାଙ୍ଗିରସଃ ॥
(ବୃହଦାରଣ୍ୟକ ଉପନିଷଦ)

ଅର୍ଥାତ୍—ଶ୍ୱାସ ପ୍ରଶ୍ୱାସ ଭଳି ପରମାତ୍ମା ଋକ୍, ଯଜୁ, ସାମ ଓ ଅଥର୍ବ ଅନାୟାସରେ ଉତ୍ପନ୍ନ କରିଛନ୍ତି । ଏହି ଶ୍ଳୋକରେ ମହର୍ଷି ଯାଜ୍ଞବଲ୍‌କ୍ୟ ବେଦ ସମ୍ବନ୍ଧରେ ବହୁ ତଥ୍ୟ ପ୍ରକାଶ କରିଛନ୍ତି । ପ୍ରଥମତଃ ଋକ୍, ଯଜୁ, ସାମ ଓ ଅଥର୍ବ ହିଁ ମୂଳବେଦ । ଦ୍ୱିତୀୟତଃ ସୃଷ୍ଟ୍ୟାଦ୍ୟରେ ଏହି ଚାରି ଈଶ୍ୱର ନିଃଶ୍ୱସିତ । ସୃଷ୍ଟି ଆରମ୍ଭରେ ମନ୍ତ୍ରଦ୍ରଷ୍ଟା ଋଷିଗଣ ପ୍ରଭୁ ପ୍ରେରଣାରେ ଏହି ଅଭିଜ୍ଞାନର ଅନ୍ତଃଦର୍ଶନ କରନ୍ତି ।

ମନୁସ୍ମୃତିରେ ଅଛି—

ଅଗ୍ନି-ବାୟୁ-ରବିଭ୍ୟସ୍ତୁ ତ୍ରୟଂ ବ୍ରହ୍ମ ସନାତନମ୍ ।
ଦୁଦୋହ ଯଜ୍ଞ ସିଦ୍ଧ୍ୟର୍ଥଂ ଋକ୍-ଯଜୁ-ସାମ ଲକ୍ଷଣମ୍ ॥ ମନୁ (୧, ୨୩)

ଅର୍ଥାତ—ଋକ୍ ବେଦାଦି ସନାତନ ବେଦକୁ ପରମାତ୍ମା ସୃଷ୍ଟି ଆରଂଭରେ ଅଗ୍ନି ଆଦି ଋଷିଙ୍କ ପାଖରେ ପ୍ରକାଶ କରାଇଲେ ଯଦ୍ୱାରା ସେମାନେ ଓ ପରବର୍ତ୍ତୀ ବଂଶଧର ଆଦାଜ୍ଞାନ ପ୍ରାପ୍ତ ହୋଇ ସକଳ ଶୁଭ ବ୍ୟବହାର (ଯଜ୍ଞ) ଶିକ୍ଷା କରିବେ ।

ସୃଷ୍ଟି ଉତ୍ପତ୍ତିର ବର୍ଣ୍ଣନା କରିବା ବେଳେ ସ୍ୱୟଂ ବେଦ କହେ—

ତସ୍ମାତ ଯଜ୍ଞାତ ସର୍ବହୁତ ଋଚଃ ସାମାନ ଜଜ୍ଞିରେ ।
ଛନ୍ଦାଂସି ଯଜ୍ଞିରେ ତସ୍ମାଦ୍ୟଜୁସ୍ତସ୍ମାଦଜାୟତ ॥ (ଋକ୍ ୧୦, ୯୦, ୯)

ଅର୍ଥାତ— ସର୍ବପୂଜ୍ୟ, ସର୍ବସ୍ରଷ୍ଟା ଓ ପ୍ରଳୟକର୍ତ୍ତା ପରମାତ୍ମାଙ୍କ ଠାରୁ ସୃଷ୍ଟି ଆରଂଭରେ ଋକ୍‌ବେଦ, ସାମବେଦ, ଛନ୍ଦ ବା ଅଥର୍ବ-ବେଦ ଉତ୍ପନ୍ନ ହେଲା ।

ମନୁସ୍ମୃତି ଆର୍ଯ୍ୟଙ୍କ ଅନ୍ୟତମ ଶାସ୍ତ୍ର ମଧ୍ୟରେ ଏକ ଅନୁପମ ଗ୍ରଂଥ । ଉପନିଷଦ ପାରଲୌକିକ ବିଜ୍ଞାନର ପ୍ରାମାଣିକ ସାହିତ୍ୟ । ସ୍ମୃତି ଓ ଉପ-ନିଷଦରେ ଋକ୍ ବେଦାଦି ଚାରି ବେଦକୁ ସୃଷ୍ଟିର ମୂଳ ବେଦ ବୋଲି ଉଚ୍ଚାରଣ କରିବା ବେଳେ ଏ ସଂବନ୍ଧରେ ଆଉ କିଛି ସଂଦେହ ଥାଇ ନପାରେ । ସ୍ୱୟଂ ବେଦ ସୃଷ୍ଟି ଉତ୍ପତ୍ତିର ବୈଜ୍ଞାନିକ ମୀମାଂସା କରିବା ବେଳେ ବେଦ ଚତୁଷ୍ଟୟର ଆଦି ଉଦ୍‌ଗୀରଣ ସଂବନ୍ଧେ ଯେଉଁ ଆଲୋକ-ପାତ କରେ, ତାହା ସର୍ବାଦୌ ଗ୍ରହଣୀୟ ।

କୁହାଯାଏ ବ୍ୟାସଦେବ ଚାରି ବେଦର ବିଭାଗ କରିଥିଲେ । ମହାଭାରତୀୟ ବ୍ୟାସଙ୍କ ଲକ୍ଷ ୨ ବର୍ଷ ପୂର୍ବରୁ ସ୍ମୃତି, ଉପନିଷଦ ଓ ବ୍ରାହ୍ମଣ ଶାସ୍ତ୍ର ବିଦ୍ୟମାନ ଥିଲା ଓ ଉଲ୍ଲିଖିତ ଗ୍ରନ୍ଥମାନଙ୍କରେ ଋକ୍-ବେଦାଦି ଚାରି ବେଦର ନାମ ବହୁ ସ୍ଥଳରେ ଅଛି । ସ୍ୱୟଂ ବ୍ୟାସ

ଏହି ସବୁ ଶାସ୍ତ୍ର ଓ ଋକ୍ ବେଦାଦିର ପଠନ-ପାଠନ କରୁଥିବା ତାହାଂକ ରଚିତ ଗ୍ରଂଥମାନଙ୍କରୁ ଜଣାଯାଏ । ଏପରି ହେଲେ ପାଂଚ ହଜାର ବର୍ଷ ତଳର ବ୍ୟାସଙ୍କୁ ସୃଷ୍ଟ୍ୟାଦ୍ୟରେ ପ୍ରକାଶିତ ହୋଇଥିବା ବେଦଜ୍ଞାନର ବିଭାଜକ ବୋଲି ଗ୍ରହଣ କରିନେବା ମହାଭ୍ରମ ଅଟେ ।

ମତ୍ସ୍ୟ ପୁରାଣରେ ଅଛି ଯେ ବ୍ରହ୍ମା ସର୍ବପ୍ରଥମେ ପୁରାଣାଦି ଶାସ୍ତ୍ର ରଚନା କଲେ, ତତ୍ପରେ ବେଦ ରଚନା କଲେ † । ଏହି ଉକ୍ତି ଆହୁରି କୁତୁହଳ ମନେ ହୁଏ । ପୁରାଣ ଗ୍ରନ୍ଥମାନଙ୍କୁ ମହର୍ଷି ବ୍ୟାସଙ୍କ ରଚିତ ବୋଲି କୁହା ଯାଉଛି । କେତେକ ପୁରାଣରେ ଯେପରି ବୁଦ୍ଧ ଚରିତାଦି, ଯବନ ଆକ୍ରମଣାଦି ମହାଭାରତୋତ୍ତର ଘଟଣାବଳୀ ବର୍ଣ୍ଣିତ ହୋଇଛି, ସେଥିରୁ ବ୍ୟାସଦେବଙ୍କୁ ଏ ସବୁର ରଚୟିତା କୁହାଯାଇ ନପାରେ । ପୁନଶ୍ଚ ଯୋଗସୂତ୍ରର ମୀମାଂସକ ମହର୍ଷି ବ୍ୟାସ ପୁରାଣ ବର୍ଣ୍ଣିତ ସହସ୍ର ଅବୈଦିକ ଚମତ୍କାରିତାର ପୋଷକ ହୋଇ ନପାରନ୍ତି । ଏହାସବୁ ସତ୍ତ୍ୱେ ବ୍ୟାସଙ୍କୁ ପୁରାଣର ରଚୟିତା ବୋ'ଲି ଗ୍ରହଣ କରିନେଇ, ପୁନଶ୍ଚ ଏକ ଅଦୃଷ୍ଟ ଭୂତକାଳୀନ ବ୍ରହ୍ମାଙ୍କୁ ପୁରାଣର ଉପଦେଷ୍ଟା ବୋଲି କହିବା ଓ ବେଦକୁ ପୁରାଣର ପରବର୍ତ୍ତୀ ଜ୍ଞାନ ବୋଲି କହିବା କେତେଦୂର ସମୀଚୀନ ତାହା ପଣ୍ଡିତମାନେ କହିବେ ।

ଯୁଗେ ଯୁଗେ ସ୍ୱାର୍ଥାନ୍ୱେଷୀ ପଣ୍ଡିତ ଗଣ ଶାସ୍ତ୍ରୀୟ କ୍ଷେତ୍ରରେ ଯେଉଁ ଉତ୍ପାତ ସୃଷ୍ଟି କରିଛନ୍ତି, ତା ଫଳରେ ମୂଳ ବେଦ ସଂବନ୍ଧରେ ବର୍ତ୍ତମାନ

---

† ପୁରାଣଂ ସର୍ବ ଶାସ୍ତ୍ରାଣାଂ ପ୍ରଥମଂ ବ୍ରହ୍ମଣା ସ୍ମୃତମ୍ ।
ଅନନ୍ତରଂ ଚ ବକ୍ତ୍ରେଭ୍ୟୋ ବେଦାସ୍ୟ ବିନିର୍ଗତଃ ॥ (ମତ୍ସ୍ୟପୁରାଣ)

ସଂଦିଗ୍ଧ ଜ୍ଞାନମାନ ପ୍ରକାଶ ପାଉଛି ଓ ବିଭିନ୍ନ କପୋଳ-କଳ୍ପିତ ତଥ୍ୟମାନ ପ୍ରଚ୍ଚରିତ ହେଉଛି ।

## ବ୍ରାହ୍ମଣ ଶାସ୍ତ୍ର ଓ ଶାଖାଦି ବେଦ ନୁହନ୍ତି

ଅନ୍ୟାନ୍ୟ ଲୌକିକ ସାହିତ୍ୟ ଠାରୁ ଅାଦିଜ୍ଞାନ ରୂପୀ ଋକ୍ ବେଦାଦି ବେଦ ଚତୁଷ୍ଟୟର ଭିନ୍ନତା ପ୍ରକାଶ କରିବା ପରେ ବ୍ରାହ୍ମଣ ଗ୍ରନ୍ଥ ଓ ବେଦଶାଖାଦି ସମ୍ବନ୍ଧରେ ସମ୍ୟକ୍ ଆଲୋଚନା କରିବା ଆବଶ୍ୟକ । କେତେକ ପ୍ରସିଦ୍ଧ ପଣ୍ଡିତ ଏହି ସବୁକୁ ବେଦାନ୍ତର୍ଗତ କରୁଥିବାରୁ ସଂଦେହ ଜାତ ହେବା ସ୍ୱାଭାବିକ । ବ୍ରାହ୍ମଣ ଶାସ୍ତ୍ର ସଂସାରର ସର୍ବ ପ୍ରଥମ ମାନୁଷିକ ରଚନା । ଆଦିଜ୍ଞାନ ବେଦ ଈଶ୍ୱରୀୟ ପ୍ରେରଣାରେ ପ୍ରକାଶିତ ହେବାପରେ ଋଷିଗଣ ବେଦର ଯେଉଁ ସବୁ ବ୍ୟାଖ୍ୟାନ କରି ଯାଇଛନ୍ତି, ସେ ସବୁ ବ୍ରାହ୍ମଣ ଶାସ୍ତ୍ର ନାମରେ ପରିଚିତ ।

ସ୍ୱାମୀ ଶଂକରାଚାର୍ଯ୍ୟ ଛାନ୍ଦୋଗ୍ୟ ଉପନିଷଦ ଭାଷ୍ୟରେ ଲେଖିଛନ୍ତି — 'ଋକ୍ ବେଦାଦିର ମଂତ୍ର ପାଠ କରି ଓ ସେ ସବୁର ଅର୍ଥ ଓ ବିଧିକୁ ବ୍ରାହ୍ମଣ ଗ୍ରଂଥରୁ ଗ୍ରହଣ କରି କର୍ମରତ ହେବା ଆବଶ୍ୟକ' * । ବାସ୍ତବରେ ବ୍ୟାଖ୍ୟେୟ ଓ ବ୍ୟାଖ୍ୟା ବା ମୂଳ ଓ ଟୀକାକୁ ଅଭିନ୍ନ ବୋଲି ଧରିନେଲେ ପରିଣାମ ବିଷମ ହେବ । ଏହା ଦ୍ୱାରା ବ୍ୟାଖ୍ୟା ବା ଭାଷ୍ୟରେ କୌଣସି ଭ୍ରମ ହେଲେ ତାହା ମୂଳ ସଂହିତାକୁ ଆଘାତ କରିବ । ସୁତରାଂ ବ୍ରାହ୍ମଣ ସାହିତ୍ୟକୁ ବେଦ ବୋଲି ଗ୍ରହଣ କରିବା କଦାପି ଉଚିତ ନୁହେ ।

---

* ଋଗାଦୀନ୍ମନ୍ତ୍ରାନଧୀତେଽଧୀତ୍ୟ ଚ ତଦର୍ଥଂ
ବ୍ରାହ୍ମଣେଭ୍ୟୋ ବିଧୀଂଶ୍ଚ ଶ୍ରୁତ୍ୱା କର୍ମାଣି କୁରୁତେ ॥

ଉପଲକ୍ଷରୂପେ ବେଦର ଶାଖା ସମୂହ ବେଦ ନୁହନ୍ତି । ବିଭିନ୍ନ ଋଷି ବେଦର ପଠନ ପାଠନ ଉପଯୋଗ ପାଇଁ ବେଦ ମନ୍ତ୍ରର ଦେବତା, ଋଷି, ଛନ୍ଦ ଓ ଅର୍ଥକୁ ଭିନ୍ନ ଭିନ୍ନ ପ୍ରକରଣାନୁଯାୟୀ ସଂଗ୍ରହ କରି ସେ ସବୁର ପ୍ରଚାର କରିଥିଲେ । ଏହିସବୁ ଶାଖା ନାମରେ ଅଭିହିତ ହେଲା ଓ ପରବର୍ତ୍ତୀ କାଳରେ ଏଥିରୁ ଗୋତ୍ରବାଦର ଆରମ୍ଭ ହେଲା । ଶାଖା-ପ୍ରବର୍ତ୍ତକମାନେ ଗୋତ୍ର ପ୍ରବର୍ତ୍ତକ ନାମରେ ଖ୍ୟାତ ହେଲେ । ଏବେ ମଧ୍ୟ ଏହି ବିଧି ପ୍ରଚଳିତ ରହିଛି । ବେଦର ଶାଖା-ତତ୍ତ୍ୱ ସମ୍ବନ୍ଧରେ ପଣ୍ଡିତ ସତ୍ୟବ୍ରତ ସାମଶ୍ରମୀ 'ଏତେରେୟାଲୋଚନା' ଗ୍ରନ୍ଥରେ ଲେଖିଛନ୍ତି 'ବେଦର ଶାଖା ବୃକ୍ଷ ବା ନଦୀର ଶାଖା ସଦୃଶ୍ୟ ନୁହେଁ । ଏ ସବୁ ପଠନ ପାଠନ ଭେଦ ଅଟେ †' ।

ପରବର୍ତ୍ତୀ କାଳରେ ଏହି ଶାଖା-ସଂଘାଦନ ଏକ ଉତ୍କଟ ରୂପ ଧାରଣ କଲା । ପ୍ରଥମେ ୨ ଲୋକେ ଋକ୍‌ବେଦୀ, ଯଜୁର୍ବେଦୀ, ଦ୍ୱିବେଦୀ, ତ୍ରିବେଦୀ, ଚତୁର୍ବେଦୀ ଆଦି ନାମ ଗ୍ରହଣ କରି କୌଣସି ୨ ନିର୍ଦ୍ଦିଷ୍ଟ ଜ୍ଞାନାର୍ଜନରେ ନିବିଷ୍ଟ ରହୁଥିଲେ । ପରନ୍ତୁ ଶାଖା ପ୍ରବର୍ତ୍ତନ ପରେ ୨ ବିଭିନ୍ନ ସଂକୀର୍ଣ୍ଣ ଶାଖାମାନଙ୍କରେ ବିଚ୍ଛିନ୍ନ ହୋଇ ପଡ଼ିଲେ । ଶିବ ପୁରାଣ ଓ ବିଷ୍ଣୁ ପୁରାଣରେ ଶିବ ଓ ବିଷ୍ଣୁଙ୍କ ମଧ୍ୟରେ ଅଶୋଭନୀୟ ପ୍ରତିଦ୍ୱନ୍ଦିତା ହୋଇ ଅଭେଦ ପରମବ୍ରହ୍ମଙ୍କ ଉପାସନା ଉପହାସ୍ୟ ହେବାଭଳି ବିଭିନ୍ନ ଶାଖାବାଦୀମାନେ ପରସ୍ପରରେ ଈର୍ଷା ଆରମ୍ଭ କରିବାକୁ ବସିଲେ । ଫଳରେ ଶାଖା-ଗ୍ରନ୍ଥମାନଙ୍କର ବେଦ ମନ୍ତ୍ରରେ ପ୍ରକ୍ଷେପ ସୃଷ୍ଟି ହେଲା ।

---

† ତତ୍ତ୍ୱତୋ ନହି ବେଦଶାଖା ବୃକ୍ଷ ଶାଖେବ ନାପି ନଦୀ ଶାଖେବ ପ୍ରତ୍ୟେତାଧ୍ୟେତୃଭେଦାତ୍ ସଂପ୍ରଦାୟ ଭେଦଜନ୍ୟାଧ୍ୟୟନ ବିଶେଷରୂପୈବ ।

ନିଜ ୨ ଶାଖାମାନଙ୍କ ମହିମା ଗାନ କରିବା ପାଇଁ ବେଦ ମନ୍ତ୍ରର କିଛି ୨ ଅଂଶ ବାଦ ଦେଇ ସେଥିରେ ଲୌକିକ ବାକ୍ୟମାନ ମିଶ୍ରଣ କରାଗଲା । ଶାଖାର ସଂଖ୍ୟା ବଢ଼ିଲା ଓ ସେଥିରେ ମିଶ୍ରଣ ବି ବଢ଼ିଲା । ବ୍ରାହ୍ମଣ ସାହିତ୍ୟ ଓ ଶାଖା ସଂପାଦନରେ ବିଭିନ୍ନ ଅପୂର୍ବ ସିଦ୍ଧାନ୍ତ ପ୍ରବେଶ କଲା । ଏହି ସବୁର ପରିଣତ ବର୍ତ୍ତମାନ କିରୂପ ଧାରଣ କରିଛି, ତାହାର ବିଶଦ୍ ବିବରଣୀ ପ୍ରଦାନ କରିବା ଏହି ସ୍ଥଳର ଉଦ୍ଦେଶ୍ୟ ନୁହେ । ଏହିଠାରେ ଏତିକି ମାତ୍ର ସୂଚନା ଦେବା କଥା ଯେ ବ୍ରାହ୍ମଣ ଓ ଶାଖା ସାହିତ୍ୟ ବେଦ ନୁହନ୍ତି ।

ଗୋଟିଏ କଥା ଲକ୍ଷ୍ୟ କରିବା ଉଚିତ ଯେ ବେଦର ବ୍ୟାଖ୍ୟାନ ବ୍ରାହ୍ମଣ୍ୟ ସାହିତ୍ୟ ବା ପାଠ୍ୟ-ସୁବୋଧକ ଶାଖା-ଗ୍ରଂଥ ମାନଙ୍କର ବେଦ ମନ୍ତ୍ରରେ ବହୁ ମିଶ୍ରଣ ହୋଇ ପାରିଥିବା ସ୍ଥଳେ ମୂଳ ସଂହିତାମାନଙ୍କରେ ମିଶ୍ରଣ ସଂଭବ ହୋଇନାହିଁ । ଯେଉଁଠାରେ ମୌଳିକ ବା ପ୍ରକ୍ଷିପ୍ତାଂଶ ରହିଛି ସେ ସବୁ ସହଜେ ବୋଧଗମ୍ୟ ହୋଇ ପରିତ୍ୟାଜ୍ୟ ହେଉଛି ! ଏହା ପରମାତ୍ମାଙ୍କ ଅପାର କରୁଣା ଛଡ଼ା ଆଉ କଣ ହୋଇପାରେ ! ବେଦର ଅନୁପମ ଛନ୍ଦ ଓ ବୈଦିକ ଶବ୍ଦର ଅଦ୍ଭୁତ ରଚନା କୌଶଳ ଏପରି ଅଦ୍ୱିତୀୟ ଯେ ଏଥିରେ ମିଶ୍ରଣ କରି ଜୟୀ ହେବା ସଂଭବ ନୁହେ । ତେଣୁ ମୂଳ ସନାତନ ଚାରି ବେଦ ଆଜି ବିଶୁଦ୍ଧ ରହିଛନ୍ତି ଯଦିଓ ବ୍ରାହ୍ମଣ ଓ ଶାଖା ସାହିତ୍ୟରୁ ବହୁ ସଂଖ୍ୟା ଆଜି ବିକୃତ ଓ ଲୁପ୍ତ ।

## ଅଥର୍ବର ବେଦତ୍ୱ

ଦୁଇଟି ସଂଦେହରୁ ଅନେକେ ଅଥର୍ବ ବେଦକୁ ଏକ ନବୀନ ବେଦ ବୋଲି ସଂଦେହ କରିଥାନ୍ତି । ପ୍ରଥମଃ ବ୍ରାହ୍ମଣାଦି ପ୍ରାଚୀନ

ସାହିତ୍ୟରେ 'ଆଙ୍ଗିରସୀବିଦ୍ୟା' ଶବ୍ଦ ଅଛି ଯେପରି ଶତପଥ ବ୍ରାହ୍ମଣରେ ଅଛି—ସେ ପ୍ରଜାପତି ପରମବ୍ରହ୍ମ ଶ୍ରମ ଓ ତପଦ୍ୱାରା ତ୍ରୟୀବିଦ୍ୟାକୁ ପ୍ରଥମେ ଉତ୍ପନ୍ନ କଲେ । ଏଠାରେ ଓ ଅନ୍ୟାନ୍ୟ ସ୍ଥଳରେ ତ୍ରୟୀବିଦ୍ୟା ଶବ୍ଦ ଦେଖି କେତେକ ପଣ୍ଡିତେ ଅନୁମାନ କରନ୍ତି ଯେ ଋକ୍, ଯଜୁ ଓ ସାମ ହିଁ ମୂଳବେଦ ଓ ତ୍ରୟୀବିଦ୍ୟା । ପରନ୍ତୁ ଏ ସବୁ ସ୍ଥଳରେ ତ୍ରୟୀବିଦ୍ୟାର ତାତ୍ପର୍ଯ୍ୟ ଜ୍ଞାନ, କର୍ମ ଓ ଉପାସନା । ଏହି ତିନିର ବର୍ଣ୍ଣନା ଚାରି ବେଦରେ ମିଳେ । ତ୍ରୟୀବିଦ୍ୟା ତ୍ରୈକାଳିକ ସତ୍ୟ-ସନାତନ ବିଦ୍ୟା *(Eternal & Ever Up-to-date)* ।

ମହାଭାରତ ଶାନ୍ତି ପର୍ବରେ ଲେଖାଅଛି—

ତ୍ରୟୀବିଦ୍ୟାମବେକ୍ଷେତେ ବେଦେ ସୂକ୍ତମଥାଙ୍ଗତଃ ।
ଋକ୍‌ସାମବର୍ଣ୍ଣାକ୍ଷରତୋ ଯଜୁଷୋଽଥର୍ବଣସ୍ତଥା ।। (୧୩୫)

ଅର୍ଥାତ୍—ଋକ୍, ଯଜୁ, ସାମ ଓ ଅଥର୍ବ ତ୍ରୟୀବିଦ୍ୟା ଅଟନ୍ତି । ଏଥିରୁ ସ୍ପଷ୍ଟ ସିଦ୍ଧ ହୁଏ ଯେ ଚାରି ବେଦକୁ ଲକ୍ଷ୍ୟକରି ତ୍ରୟୀବିଦ୍ୟା କୁହା ଯାଇଛି ।

ଦ୍ୱିତୀୟତଃ ଅଥର୍ବ ବେଦର ନାମ ବିଭିନ୍ନ ସ୍ଥଳରେ ବିଭିନ୍ନ ହୋଇ ଥିବାରୁ ଏହାର ମୂଳ ତତ୍ତ୍ୱ ସମ୍ବନ୍ଧେ ସଂଦେହ ଆସିଥାଏ । ବିଶେଷ ପ୍ରୟୋଜନ ହେବା ହେତୁ ଏହାର ନାମ ଭିଷଗ୍‌ବେଦ । ଯଜ୍ଞରେ ଅଥର୍ବବେଦର ପ୍ରତିନିଧି ରୂପେ ବ୍ରହ୍ମାଙ୍କୁ ବସାଯାଉଥିବାରୁ ଏହାର ଅନ୍ୟ ନାମ ବ୍ରହ୍ମବେଦ । ସରଳ ଛନ୍ଦର ଯୋଜନା ହେତୁ ଏହାର ଅନ୍ୟ ନାମ ଛନ୍ଦବେଦ । ଏଣୁ ବିଭିନ୍ନ ସ୍ଥଳରେ ଅଥର୍ବକୁ ବିଭିନ୍ନ ନାମରେ ନାମିତ କରା ଯାଇଛି । ବସ୍ତୁତଃ ପାରସୀ ଧର୍ମଶାସ୍ତ୍ର ଯାହାକୁ ଇହୁଦୀ, ଖ୍ରୀଷ୍ଟିଆନ ଓ ମୁସଲମାନ ସିଦ୍ଧାନ୍ତର ଉଦ୍‌ଗମ ସ୍ଥଳ, ତାହା ଅଥର୍ବ

ବେଦର ଅପଭ୍ରଷ୍ଟ ରୂପ ବୋଲି ପାଶ୍ଚାତ୍ୟ ପଣ୍ଡିତ ମାନେ ନିରୂପଣ କରିଛନ୍ତି । ପାରସୀ ଧର୍ମ ଗ୍ରନ୍ଥର ଜନ୍ଦାବସ୍ତା ଓ ତାହାର ଜନ୍ଦ ଭାଷା ଅଥର୍ବର ଛନ୍ଦାବସ୍ଥା ଓ ଛନ୍ଦ ଶବ୍ଦରୁ ଗୃହୀତ * । ପାଶ୍ଚାତ୍ୟ ପଣ୍ଡିତ ମାର୍ଟିନ ହାଙ୍ଗ୍ ଲେଖିଛନ୍ତି — ପାରସୀ ମାନଙ୍କ ପ୍ରାଚୀନ ଶାସ୍ତ୍ର ଗାଥାରେ ମହାତ୍ମା ଜରଥୁସ୍ତ୍ର ଏକ ପ୍ରାଚୀନ ଈଶ୍ୱରୀୟ ଜ୍ଞାନର ସ୍ୱୀକାର କରିଛନ୍ତି, 'ଅଥର୍ବା'ର ପ୍ରଶଂସା କରିଛନ୍ତି—ବେଦ ବର୍ଣ୍ଣିତ ଅଙ୍ଗିରାର ପ୍ରଶଂସା କରିଛନ୍ତି † । ଏହି ଅଙ୍ଗିରା ଅଥର୍ବବେଦବାଦୀ । ଅଥର୍ବ ବେଦରେ ଲେଖାଅଛି-ଅଥର୍ବାଙ୍ଗିରସୋ ମୁଖମ୍ ।

ସୁତରାଂ ଅଥର୍ବ ବ ଋକ୍, ଯଜୁ ଓ ସାମ ସ୍ଥାନୀୟ । ଏହି ଗୁରୁ ହିଁ ମୂଳବେଦ, ସଂସାରର ସକଳ ଜ୍ଞାନର ଉତ୍ସ ।

---

* *I still hold that the name of Zend was originally a corruption of the Sanskrit word* ଛନ୍ଦଃ. *(Chips from a German Workshop By Prof. Maxumuller)*

† *In the Gatha (which are the oldest part of Zend-Avesta) we find Zarthushtra, alluding to old revelation and praising the wisdom of Saoshaynts, Atharvas, fire priests. He exhorts his party to respect and revere the Angra i.e. Angiras of the Vedic hymms—*

*(Hung's Essays)*

—ତୃତୀୟ ଅଧ୍ୟାୟ—

## ବେଦ ଅପୌରୁଷେୟ—ଏହାର ତାତ୍ପର୍ଯ୍ୟ

ବେଦ କହିଲେ ଆମେ କଣ ବୁଝୁଁ ? ବେଦ ପାଇବା ପାଇଁ କୌଣସି ଏକ ପୁସ୍ତକାଳୟକୁ ଯାଇ ଆମେ ସେଠାରୁ ବିରାଟ ୨ ଗ୍ରଂଥ ଆଡ଼କୁ ହାତ ବଢ଼ାଉଁ । ବେଦ ବିରାଟ ଅଟେ—ଏହି ଯେଉଁ ବଦ୍ଧମୂଳ ଧାରଣା ଆମ ମନରେ ରହି ଆସିଛି, ସୃଷ୍ଟି ଆରଂଭରୁ ଏହା ପାରଂପରିକ ଓ ନୈସର୍ଗିକ । ଏ ଯେଉଁ ବିଶାଳ ୨ ଗ୍ରଂଥ, ଏ ସବୁ କଣ ମନୁଷ୍ୟ-କୃତ ନୁହନ୍ତି ? ମନୁଷ୍ୟ ଗଢ଼ା ଛାପାଖାନାରେ ଏସବୁ ପ୍ରକାଶିତ । ମନୁଷ୍ୟଙ୍କ ଦ୍ୱାରା ଅନ୍ୟ ଗ୍ରଂଥ ଭଳି ଏସବୁ ଛାପା ଓ ଗ୍ରଂଥିତ ହୁଏ । ଏଣୁ ନିଶ୍ଚିତରେ ଏହି ସବୁ ଗ୍ରଂଥର ଭୌତିକ ଅଂଶ ମନୁଷ୍ୟକୃତ, ଏଥିରେ ଅଣୁମାତ୍ର ସଂଦେହ ନାହିଁ । ପରଂତୁ ଯେଉଁ ଯୁଗରେ ବେଦର ଏହି ଭୌତିକ ଅଂଶ ନଥିଲା, ସେତେବେଳେ ବି ଏହାର ଅସ୍ତିତ୍ୱ ରହିଥିଲା ଓ ଲୋକେ ଏହାକୁ ଈଶ୍ୱର-ପ୍ରକାଶିତ ବୋଲି ଶୁଣି ୨ ପରଂପରା କ୍ରମେ

ମନେରଖି ଆସୁଥିଲେ । ସୁତରାଂ ଗ୍ରନ୍ଥର ଅକୃତ ନେବାହେତୁ ନିତ୍ୟ ସନାତନ ବେଦରେ କୌଣସି ପରିବର୍ତ୍ତନ ଘଟିନାହିଁ । ଭବିଷ୍ୟତରେ କୌଣସି ଦୁର୍ଘଟଣା ବଶତଃ ମନୁଷ୍ୟର ଯାନ୍ତ୍ରିକ ସଭ୍ୟତା ଲୋପ ପାଇଗଲେ ବି ମନୁଷ୍ୟ ଠାରେ ଥିବା ତାହାର କ୍ଷୀଣ ସ୍ମୃତିରୁ ବେଦ ବଂଶ ରହିବ । ଆଦି ସୃଷ୍ଟିରୁ ଆଜିଯାଏଁ କୋଟି କୋଟି ବର୍ଷ ମଧ୍ୟରେ ମନୁଷ୍ୟ ସଭ୍ୟତାର ବହୁ ଉତ୍ଥାନ-ପତନ ଭିତରେ ବି ବେଦ ଚିରଂଜୀବ ହୋଇ ରହିଛି ଯଦିଓ ମନୁଷ୍ୟକୃତ ବହୁ ନବୀନ ଗ୍ରଂଥ ବି ଆଜି ବିଲୁପ୍ତ ଓ ବିସ୍ମୃତ ।

ବର୍ତ୍ତମାନ ଏହି ବିଶିଷ୍ଟ ଗ୍ରଂଥକୁ ଖୋଲି ଦେଖିଲେ ଏହା କେତେକ ଭାଗରେ ବିଭକ୍ତ ହୋଇଥିବା ଦେଖାଯାଏ । ଏହାସବୁ ସୂକ୍ତ, ଅଧ୍ୟାୟ, ମଣ୍ଡଳ, କାଣ୍ଡ ଆଦି ନାମରେ ପରିଚିତ । ଏ ସବୁର ସଂପାଦନା ମନୁଷ୍ୟ ଶକ୍ତିର ବାହାରେ କି ? ମୁଁ ମୋର ଏହି ବହିକୁ କେତୋଟି ଅଧ୍ୟାୟରେ ଭାଗ କରିଛି । ଏ ଭଳି ବିଭାଗ ସମସ୍ତେ କରିଥାନ୍ତି । ଭିନ୍ନ ୨ ଭାବନାକୁ ଭିନ୍ନ ୨ ଖଣ୍ଡରେ ସଜାଇ ରଖିଲେ ପାଠକର ମନରେ ଭାବନାର କନ୍ଦଳ ସୃଷ୍ଟି ହୁଏନାହିଁ । ଏଣୁ ଅନ୍ୟାନ୍ୟ ଲୌକିକ ସାହିତ୍ୟ ପରି ବେଦକୁ ସୂକ୍ତ, ଅଧ୍ୟାୟରେ ଯେଉଁ ସଂପାଦନା କରି ଯାଇଛି, ତାହା ଅପୌରଷେୟ ନୁହେ । ପରଂତୁ ଯେଉଁମାନେ ଏ ସବୁର ବିଭାଗ କରିଛନ୍ତି ସେମାନେ କିଏ ? ସେମାନେ କଣ ଆମପରି ସାଧାରଣ ମନୁଷ୍ୟ ? ମହାତ୍ମା ଶଂକରାଚାର୍ଯ୍ୟ ବେଦର ଅନନ୍ତ ଜ୍ଞାନ ସମ୍ବନ୍ଧରେ ଯେଉଁ ବ୍ୟାଖ୍ୟା କରିଛନ୍ତି ତାହା ପ୍ରଥମ ଅଧ୍ୟାୟରେ ଉଦ୍ଧାର କରି ଯାଇଛି । ଏପରି ଅନନ୍ତ ଜ୍ଞାନକୁ ମନ୍ଥନ ଓ ଅନଶୀଳନ କରି ସେ ସବୁକୁ ପ୍ରକାରଣ ଅନୁଯାୟୀ ବିଭାଗ କରିବା ସହଜ କଥା କି ? ସତେ ଏସବୁ କାର୍ଯ୍ୟ

କାଏ କରିଛନ୍ତି ? ବେଦର ସୂକ୍ତ ଓ ଅଧ୍ୟାୟର ଶେଷରେ ଯେଉଁ ଦୁଇଟି ନାମ ମିଳିବ ସେଥିରୁ ଏହି ପ୍ରଶ୍ନର ଉତ୍ତର ବୁଝି ହେବ । ଏହି ଦୁଇଟି ନାମରୁ ଗୋଟିଏ ଋଷି ଓ ଅନ୍ୟଟି ଦେବତା ।

ବେଦର ସୂକ୍ତ ଓ ଅଧ୍ୟାୟ ଅଗ୍ର ଭାଗରେ ଥିବା 'ଋଷି' ଓ 'ଦେବତା'ଙ୍କ ନାମ ଦେଖି ଅନେକେ ସହଜରେ ବିଶ୍ୱାସ କରି ନିଅନ୍ତି ଯେ ଏମାନେ ହିଁ ସୂକ୍ତ ଓ ଅଧ୍ୟାୟର ରଚୟିତା । ଏମାନଙ୍କ ନାମ ବୁଝିବାର ସମୁଚିତ ମୀମାଂସା କରିଯାଇ ନପାରିବାରୁ ବର୍ତ୍ତମାନ କାଳରେ ଏକ ଧାରଣା ଜାତ ହୋଇଛି ଯେ ବେଦ ଋଷି-କୃତ । ବେଦରେ ଥିବା ଅନେକ ଶବ୍ଦ ସହ ଲୌକିକ ନଦୀ, ପର୍ବତ, ମନୁଷ୍ୟାଦିଙ୍କ ନାମ ସମାନ ହୋଇ ଥିବାରୁ ଉପରୋକ୍ତ ଧାରଣା ଅଧିକ ବଦ୍ଧମୂଳ ହୋଇ ପଡ଼ିଛି । ସନ୍ଦେହ ଜନ୍ମିଛି ଯେ ସୂକ୍ତ ଓ ଅଧ୍ୟାୟର ଋଷି ମଂତ୍ରରେ ଇତିହାସ ଲେଖି ଏହି ଲୌକିକ ନାମ ଗୁଡ଼ିକୁ ବ୍ୟବହାର କରିଛନ୍ତି ।

ବୈଦିକ ଶବ୍ଦମାନଙ୍କର ଯୌଗିକ ଓ ନିତ୍ୟ ଅର୍ଥକୁ ହୃଦୟଙ୍ଗମ କରିବା ପାଇଁ ଶକ୍ତି ଓ ଆକାଂକ୍ଷା ହ୍ରାସ ହୋଇଥିବା ଯୋଗୁଁ ଏହିରୂପ ବିକୃତ ଧାରଣାମାନ ମନକୁ ଆସୁଛି । ବେଦରେ ଥିବା କେତେକ ଲୌକିକ ନାମମାନଙ୍କର ଉଚିତ ବ୍ୟାଖ୍ୟା ପରବର୍ତ୍ତୀ ଏକ ଅଧ୍ୟାୟରେ ବର୍ଣ୍ଣିତ ହେବ । ଏଠାରେ କେବଳ ଏହି ନିର୍ଦ୍ଦିଷ୍ଟ ଦୃଷ୍ଟି କୋଣରୁ ଆଲୋଚନା ହେବ ଯେ ବେଦର ସୂକ୍ତ ଓ ଅଧ୍ୟାୟ ଆଗରେ ଥିବା ଋଷି ଓ ଦେବତା ବେଦମଂତ୍ରର ସ୍ରଷ୍ଟା ନୁହନ୍ତି । ସେତେବେଳେ ଉପଲବ୍ଧ ହେବ ଯେ ବେଦର ଅନ୍ତରଙ୍ଗ ଈଶ୍ୱର-ପ୍ରକାଶିତ—ଅପୌରୁଷେୟ ।

## ଋଷି ମଂତ୍ର-ସ୍ରଷ୍ଟା ନୁହନ୍ତ—ସେ ମଂତ୍ର-ଦ୍ରଷ୍ଟା

ବେଦ ମଂତ୍ରର ଅଗ୍ର ଭାଗରେ ଲିପିବଦ୍ଧ ଥିବା 'ଋଷି' ପଦ ସେହି ମଂତ୍ରର ରଚୟିତା ନୁହନ୍ତି, ତେବେ ସେ କଏ ? ତାହାଙ୍କ ନାମ ମଂତ୍ର ଅଗରେ ଅସିଲା କିପରି ?

ଯେ କୌଣସି ବୈଦିକ ଶବ୍ଦର ଅର୍ଥ କରିବାକୁ ହେଲେ ଯୌଗିକ ପ୍ରଣାଳୀକୁ ଅବଲମ୍ବନ କରିବାକୁ ହେବ । ଅର୍ଥାତ ଶବ୍ଦର ବ୍ୟାପକ ଅର୍ଥକୁ ଗ୍ରହଣ କରିବାକୁ ହେବ । ବୈଦିକ ଶବ୍ଦର ରଚନା-କୌଶଳ ଦେଖିଲେ ବିସ୍ମୟ ହେବାକୁ ପଡ଼େ । ପ୍ରତି ଶବ୍ଦ କିପରି ତାହାର ଅକ୍ଷରମାନଙ୍କ ସମ୍ମିଳିତ ଅର୍ଥ ଉପରେ ଅଶ୍ରିତ, ପ୍ରତି ଅକ୍ଷରର ଅର୍ଥ ଓ ଲିପି କିପରି ତାହାର ଉଚ୍ଚାରଣର ପ୍ରଯତ୍ନ ଓ ପ୍ରଣାଳୀ ଉପରେ ଅଶ୍ରିତ—ଏ ସବୁକୁ ନିରୀକ୍ଷଣ କଲେ ମୁଗ୍ଧ ହେବାକୁ ପଡ଼େ । ସଂସାରର ସମସ୍ତ ପ୍ରଚଳିତ ଭାଷାର ଆଦି ଜନନୀ ବୈଦିକ ବାଣୀ ଓ ଭାଷାର ସର୍ବାଙ୍ଗ ପରିପୂର୍ଣ୍ଣତାକୁ ଲକ୍ଷ୍ୟକଲେ ଉପଲବ୍ଧ ହୁଏ ଯେ ଏହି ସର୍ଜନା ଅପୂର୍ଣ୍ଣ-ମନୁଷ୍ୟର ସାନ୍ତ ମସ୍ତିଷ୍କରୁ କଦାପି ଉଦ୍‌ବେଳିତ ହୋଇ ନପାରେ । ଏହି ପ୍ରମାଣକୁ ପୋଷଣ କରି ପ୍ରାଚୀନ ଋଷି ମୁନିମାନେ ବେଦକୁ ଈଶ୍ୱର-ପ୍ରକାଶିତ ବୋଲି ଗ୍ରହଣ କରିଛନ୍ତି । ସେ ଯାହାହେଉ 'ଋଷି' ଶବ୍ଦର ପ୍ରକୃତ ଅର୍ଥ ଗ୍ରହଣ କରିବା ପାଇଁ ଉପରୋକ୍ତ ପ୍ରଣାଳୀରେ ତାହାର ଅନ୍ତରଙ୍ଗ ପରୀକ୍ଷା ଆବଶ୍ୟକ । 'ଋଷି' ଶବ୍ଦ ରକ୍ଷଣାର୍ଥକ ଦୃଶ୍ ଧାତୁର 'ଦ'କାର ଲୋପରେ ଗଠିତ । ଋ=ଗତି ବା ପ୍ରାପ୍ତି, ଷ=ଜ୍ଞାନ, ଇ=ଅଧିକାରୀ ଅର୍ଥରେ (ଇଂରାଜୀର '*er*' ପରି କ୍ରିୟାରେ ସଂଯୋଗ ହେଲେ ବ୍ୟକ୍ତିକୁ ବୁଝାଏ, ଯେପରି *Runner, Driver* ଇତ୍ୟାଦି) ।

ସୁତରାଂ ଋଷି—ଜ୍ଞାନର ପ୍ରାପକ । ସେ ଜ୍ଞାନର ସ୍ରଷ୍ଟା ନୁହନ୍ତି । ସେ ଜ୍ଞାନର ପ୍ରାପକ, ଦ୍ରଷ୍ଟା ।

ବୈଦିକ ଶବ୍ଦର ଉଚିତ ଅର୍ଥ ବୁଝିବା ପାଇଁ ବର୍ତ୍ତମାନ ଯେଉଁସବୁ ଗ୍ରନ୍ଥ ଉପଲବ୍ଧ, ସେ ମଧ୍ୟରୁ ଯାସ୍କାଚାର୍ଯ୍ୟଙ୍କ କୃତ 'ନିରୁକ୍ତ' ଅତ୍ୟଧିକ ପ୍ରାମାଣିକ ଓ ଗ୍ରହଣଯୋଗ୍ୟ । ଋଷି ଯାସ୍କ ପ୍ରାଚୀନ ଋଷି ମୁନିମାନଙ୍କର ମନ୍ତବ୍ୟାକୁ ଅନୁସରଣ କରି ବୈଦିକ ଶବ୍ଦମାନଙ୍କର ଯଥାର୍ଥ ଓ ହୃଦୟଗ୍ରାହୀ ବ୍ୟାଖ୍ୟା ବା ନିରୁକ୍ତି କରିଛନ୍ତି । ବାସ୍ତବରେ ବେଦାର୍ଥ କରିବା ପାଇଁ ନିରୁକ୍ତ ହିଁ ଚାବିକାଠି । ନିରୁକ୍ତ ବେଦର ଭାଷାକୋଷ । ବେଦ ରଚନା ସମ୍ବନ୍ଧରେ ଯାସ୍କ ନୀରବ ରହି ନାହାନ୍ତି । ବେଦମନ୍ତ୍ର ଓ ଅଧ୍ୟାୟ ଆଗରେ ଥିବା ଋଷିଙ୍କ ନାମକୁ ସେ ପ୍ରାଞ୍ଜଳ ଭାବେ ବ୍ୟାଖ୍ୟା କରି ଦେଇଛନ୍ତି । ସେ ଲେଖିଛନ୍ତି—'ଯେ ଦର୍ଶନ କରନ୍ତି ସେ ଋଷି । ଔପମନ୍ୟବ ଆଚାର୍ଯ୍ୟ କହିଛନ୍ତି ଯେ ବେଦ ମନ୍ତ୍ରର ଦର୍ଶନ କରିଥିବାରୁ ସେମାନେ ଋଷି ବୋଲି ପରିଚିତ ହେଲେ । ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ ଲେଖା ଅଛିଯେ ତପୋବଳରେ ସ୍ୱୟମ୍ଭୂ ବେଦକୁ ପ୍ରାପ୍ତ କରି ଥିବାରୁ ଏମାନେ ଋଷି ହେଲେ । ଏହାହିଁ ଋଷିଙ୍କ ଋଷିତ୍ୱ †।'

ବେଦ ପ୍ରକାଶ ବେଳେ ଋଷିଙ୍କ କାର୍ଯ୍ୟକୁ ସ୍ପଷ୍ଟୀକରଣ କରି ଯାସ୍କ ଲେଖିଛନ୍ତି—'ସୃଷ୍ଟି ଆରମ୍ଭରେ ଏପରି ଋଷି ଜନ୍ମ ଗ୍ରହଣ କରିଥିଲେ ଯେଉଁମାନେ ସାକ୍ଷାତ-କୃତ-ଧର୍ମୀ ଥିଲେ । ଏହିମାନେ ପରମାତ୍ମାଙ୍କ ପ୍ରେରଣାରୁ ବେଦମନ୍ତ୍ରର ସାକ୍ଷାତ୍କାର ବା ଦର୍ଶନ କରିଥିଲେ । ଏହି

---

† ଋଷି ଦର୍ଶନାତ୍ । ସ୍ତୋମାନ୍ ଦଦର୍ଶେତ୍ୟୌପମନ୍ୟବଃ । ତଦ୍ୟଦେନାଂସ୍ତପସ୍ୟମାନାନ୍ ବ୍ରହ୍ମ ସ୍ୱୟମ୍ଭୂ ଅଭ୍ୟାନର୍ଷତ୍ ଋଷୟୋଽଭବଂସ୍ତଦୃଷୀଣାଂ ଋଷିତ୍ୱମିତି ବିଜ୍ଞାୟତେ । (ନିରୁକ୍ତ ୨, ୧୧)

ସାକ୍ଷାତକୃତଧର୍ମା ଋଷିମାନେ ଅସାକ୍ଷାତଧର୍ମା ଋଷିଙ୍କୁ ଉପଦେଶ ଦ୍ୱାରା ବେଦମନ୍ତ୍ର ଶିକ୍ଷା ଦେଲେ । ପରବର୍ତ୍ତୀକାଳୀନ ଋଷିମାନେ ବେଦଜ୍ଞାନ ପାଇବା ପାଇଁ ବେଦ ତଥା ନିରୁକ୍ତ ବେଦାଙ୍ଗାଦିକୁ ଗ୍ରନ୍ଥ ରୂପ ଦେଇଲେ * ।'

ଏଥିହେତୁ ଋଷି ବେଦମନ୍ତ୍ରର ସ୍ରଷ୍ଟା ନୁହନ୍ତି, ସେ ଦ୍ରଷ୍ଟା । ମନେ ରଖିବା ଉଚିତ ଯେ ଦର୍ଶନ ପୂର୍ବରୁ ଦୃଶ୍ୟ ବସ୍ତୁର ଅସ୍ତିତ୍ୱ ଥାଏ । ସାକ୍ଷାତ ପୂର୍ବରୁ ସାକ୍ଷାତକୃତ ବସ୍ତୁର ଅସ୍ତିତ୍ୱ ଥାଏ । ସୁତରାଂ ଋଷି ବେଦ ମନ୍ତ୍ରର ସାକ୍ଷାତ ବା ଦର୍ଶନ କରିବା ପୂର୍ବରୁ ବେଦମନ୍ତ୍ରମାନଙ୍କ ଅସ୍ତିତ୍ୱ ଥାଏ । ଋଷି ଏ ସବୁର ଆତ୍ମାନୁଭବ କରନ୍ତି ମାତ୍ର । ସୃଷ୍ଟି ଆରମ୍ଭରେ ଅଧିଜ୍ଞାନ ବେଦକୁ ସାକ୍ଷାତକୃତଧର୍ମା ବା ନିଷ୍ପାପ-ପ୍ରାୟ ଋଷିଗଣ ପରମାତ୍ମାଙ୍କ ପ୍ରେରଣାରେ ଅନୁଭବ କରନ୍ତି ଓ ପରବର୍ତ୍ତୀ ବଂଶଧରଙ୍କୁ ତାହାର ଉପଦେଶ ଦିଅନ୍ତି । ଏହି ନିତ୍ୟ ଜ୍ଞାନକୁ ଯୁଗେ ଯୁଗେ ଯେଉଁ ସାତ୍ତ୍ୱିକ ପୁରୁଷଗଣ ମନନ ଓ ଚିନ୍ତନ କରି ସେଥିରୁ କୌଣସି କୌଣସି ଗୂଢ ତତ୍ତ୍ୱର ଆବିଷ୍କାର କରନ୍ତି, ସେମାନେ ଋଷି ନାମରେ ଅଭିହିତ ହୁଅନ୍ତି । 'ଋଷି ଦର୍ଶନାତ୍'—ବେଦର ଅନନ୍ତ ଜ୍ଞାନ ମଧ୍ୟରୁ କୌଣସି କୌଣସି ବିଶିଷ୍ଟ ତଥ୍ୟର ଆତ୍ମ-ଦ୍ରଷ୍ଟା ପୁରୁଷହିଁ ଋଷି ।

'ମନ୍ତ୍ର' ଶବ୍ଦରୁ ଋଷିଙ୍କ କାର୍ଯ୍ୟ ଅବହିତ ହୋଇପାରେ । ନିରୁକ୍ତ-କାର କହନ୍ତି—'ମନ୍ତ୍ରା ମନନାତ୍'—(ନିରୁକ୍ତ ୭, ୧୨) ଅର୍ଥାତ୍ ମନନ

* ସାକ୍ଷାତକୃତଧର୍ମାଣ ଋଷୟୋ ବଭୂବୁଃ । ତେଽବରେଭ୍ୟୋଽସାକ୍ଷାତକୃତ ଧର୍ମଭ୍ୟ ଉପଦେଶେନ ମନ୍ତ୍ରାନ୍ସମ୍ପ୍ରାଦୁଃ । ଉପଦେଶେନ ଗ୍ଲାୟନ୍ତୋଽବରେ ବିଲ୍ମଗ୍ରହଣାୟେମଂ ଗ୍ରନ୍ଥଂ ସମାମ୍ନାସିଷୁର୍ବେଦଂ ଚ ବେଦାଙ୍ଗାନି ଚ । (ନିରୁକ୍ତ ୧, ୧)

ବା ଅନୁଶୀଳନ କରିବାହେତୁ ସେମାନଙ୍କ ନାମ ମନ୍ତ୍ର । ଋଷି ମଂତ୍ରର ମନନ ବା ଚିନ୍ତନ କରନ୍ତି, ସେ ତାହାର ରଚୟିତା ନୁହନ୍ତି । ମନୁଷ୍ୟକୁ ଲୌକିକ ଓ ପାରଲୌକିକ ସୁଖର ପନ୍ଥା ଦେଖାଇବା ଲାଗି ଯେଉଁ ଋଷିଗଣ ବେଦମଂତ୍ରର ମନନ ଓ ବ୍ୟାଖ୍ୟାନ କରି ଯାଇଛନ୍ତି, ସେମାନେ ଅସ୍ମମାନଙ୍କ ପରମ ନମସ୍ୟ । ଯେଉଁ ୨ ମଂତ୍ର, ଅଧ୍ୟାୟାଦିର ଗଭୀର ଚିନ୍ତନକରି ସେମାନେ ବିଭିନ୍ନ ନୂତନ ଆଲୋକର ଆବିଷ୍କାର କରିଯାଇଛନ୍ତି ସେହି ୨ ମଂତ୍ରାଦିର ଅଗ୍ରଭାଗରେ ସେମାନଙ୍କ ନାମକୁ ଐତିହାସିକ ପୁରୁଷ ରୂପେ ସ୍ଥାନ ଦେଇ ସ୍ମରଣ କରିବା ଅସ୍ମମାନଙ୍କ କର୍ତ୍ତବ୍ୟ । ବେଦରେ ତାହାହିଁ ହୋଇଛି । ଅଧ୍ୟାୟ, ମଣ୍ଡଳାଦିର ବିଭାଗ ଯେରୂପେ ଋଷି ବା ମନୁଷ୍ୟକୃତ, ବେଦରେ ଏହି ଋଷିମାନଙ୍କ ନାମୋଲ୍ଲେଖ ବି ସେହିପରି ମନୁଷ୍ୟକୃତ । ପରଂତୁ ସଂହିତା ବା ମଂତ୍ରଭାଗ ଅପୌରୁଷେୟ—ଆଦିସୃଷ୍ଟି ବେଳେ ଈଶ୍ୱର-ପ୍ରକାଶିତ ।

## ଋଷି ମଂତ୍ରସ୍ରଷ୍ଟା ନୁହନ୍ତି—ଏହାର ଅନ୍ୟାନ୍ୟ କାରଣ

ଋଷି ବେଦମଂତ୍ରର ସ୍ରଷ୍ଟା ନୁହନ୍ତି—ଏହାର ପ୍ରବଳ ପୋଷଣ ହେଉଛିଯେ ବେଦରେ ଶହ ୨ ମଂତ୍ର ଓ ଅଧ୍ୟାୟ ରହିଛି ଯେଉଁ ସବୁର ଋଷି ଏକ ନୁହନ୍ତି, ଅନେକ । ଯଜୁର୍ବେଦର ବହୁ ଅଧ୍ୟାୟର ଋଷି ସଂଖ୍ୟା ଏକ ୨ ହେଲେ ବି ସେ ସବୁର ପୃଥକ୍ ୨ ମଂତ୍ରର ଋଷି ସଂଖ୍ୟା ଦୁଇ, ତିନି ଓ ତଦୂର୍ଦ୍ଧ । କେତେକ ଅଧ୍ୟାୟର ଋଷି ସଂଖ୍ୟା ତିନି ହେବାବେଳେ ମଂତ୍ରର ଋଷି ସଂଖ୍ୟା ଦୁଇ । ଋକ୍‌ବେଦରେ ମଧ୍ୟ ଗୋଟିଏ ୨ ମଂତ୍ରର ଦୁଇ ୨ ଋଷିଙ୍କ ନାମ ଦେଖିବାକୁ ମିଳେ । କେତେକ ମଂତ୍ରର ଋଷିଙ୍କ ନାମ 'କୁତ୍ସାଃ', 'ଆତ୍ରେୟାଃ' ଆଦି ଲେଖା ଯାଇଛି ଯାହାର ଅର୍ଥ ଏସବୁ

ମଂତ୍ରର ଋଷି କୁତ୍ସ ଓ ଅତ୍ରେୟଙ୍କ ପୁତ୍ରଗଣ । ଅନେକ ସ୍ଥଳରେ ଋଷିମାନଙ୍କୁ 'ବହବଃ' ବା ଅନେକ ବୋଲି କୁହାଯାଇଛି ।

ଏ ସବୁର ତାତ୍ପର୍ଯ୍ୟ କଣ ? ଗୋଟିଏ ମଂତ୍ର, ସୁକ୍ତ ବା ଅଧ୍ୟାୟର ଋଷି ସଂଖ୍ୟା ଅନେକ ହେବା ହେତୁ କଣ ? ଅଧ୍ୟାୟର ଋଷି ସଂଖ୍ୟା କମ୍ ହେବାବେଳେ ଅଧ୍ୟାୟସ୍ଥ ମଂତ୍ରମାନଙ୍କ ଋଷି ସଂଖ୍ୟା ଅଉ କମ୍ ହେବା ଅର୍ଥ କଣ ? ପୁନଶ୍ଚ ଗୋଟିଏ ମଂତ୍ରର ଅନେକ ଋଷି ଭିନ୍ନ ୨ କାଳରେ ହେବା ମାନେ କଣ ?

ଏ ସବୁର ଅର୍ଥ ଅତି ସ୍ପଷ୍ଟ—ଋଷି ମଂତ୍ରସ୍ରଷ୍ଟା ନୁହନ୍ତି, ସେ ମଂତ୍ର ଦ୍ରଷ୍ଟା । ସେ ମଂତ୍ରର ଦର୍ଶନ ବା ମନନ କରନ୍ତି । ପୂର୍ବରୁ କୁହାଯାଇଛି ଏହା ଅନ୍ତଃ ଦର୍ଶନ । ନହେଲେ ଗୋଟିଏ ମଂତ୍ରକୁ ଚାରି ପାଂଚ ଜଣ ଋଷି ଏକାଠି ବସି ରଚନା କରି ପାରିବା କି ସମ୍ଭବ କଥା ? ଗୋଟିଏ ସାଧାରଣ ଲୌକିକ କାବ୍ୟ ବା କାବ୍ୟାଂଶକୁ ଦୁଇ ଜଣ କବି ଏକାଠି ବସି ଲେଖି ପାରନ୍ତି ନାହିଁ । ଜଣକର ଭାବ, ଭାଷା, ଛନ୍ଦ ଓ ସ୍ୱରର ସହ ଅନ୍ୟର ଏସବୁ ସମାନ ହୁଏନାହିଁ । ଏପରି ସ୍ଥଳେ ବେଦମଂତ୍ର ପରି ଭାଷା ଓ ଭାବର ସମୁଦ୍ରକୁ ଦୁଇ ଚାରି ଋଷି ଏକାଠି ବସି ରଚନା କରି ପାରିବା କଳ୍ପନା କି ବିଶ୍ୱାସ ଯୋଗ୍ୟ ? ପୁନଶ୍ଚ କେଉଁ ୨ ମଂତ୍ରର ବିଭିନ୍ନ ଋଷି ବିଭିନ୍ନ କାଳର ହୋଇ ଥିବାରୁ, ଏପରି ଏକାଠି ମିଶି ମଂତ୍ର ରଚନା କରିବା ସଂଭାବନା ସଂପୂର୍ଣ୍ଣ ରୂପେ ଦୂର ହୋଇଯାଏ ।

ଏପରି କେତେକ ମଂତ୍ର ରହିଛି ଯେଉଁ ସବୁ ଅବିକଳ ଏକ ରୂପରେ ଚାରି ବେଦରୁ ଏକ, ଦୁଇ, ତିନି ବା ଚାରୋଟି ଯାକରେ ମିଳେ । ଭିନ୍ନ ୨ ବେଦରେ ଏହି ସବୁ ମଂତ୍ରର ଋଷିଙ୍କ ନାମ ଭିନ୍ନ ୨

ହୋଇଥାଏ । ଅବଶ୍ୟ ସେହି ମଂତ୍ରକୁ ବିଭିନ୍ନକାଳୀନ ଦୁଇ ବା ତିନି ଋଷି ରଚନା କରି ପାରିବା ସମ୍ଭବ ନୁହେଁ ବା ଜଣେ ଋଷି ଗୋଟିଏ ମଂତ୍ରକୁ ରଚନା କରିବା ପରେ ପରବର୍ତ୍ତୀକାଳୀନ ଅନ୍ୟ ଏକ ଋଷି ସେହି ମଂତ୍ରକୁ ନିଜ ନାମରେ ଭଣିତ କରିବା ସତ୍ୟ ହୋଇ ନପାରେ । ସୁତରାଂ ଋଷି ମଂତ୍ର ସ୍ରଷ୍ଟା ନୁହନ୍ତି, ସେ ମଂତ୍ରର ମନନ କର୍ତ୍ତା ।

ଗୋପଥ ବ୍ରାହ୍ମଣରେ ଲେଖାଅଛି ଯେ 'ସଂପାତ ଋକ୍' ମାନଙ୍କର ଋଷି ପ୍ରଥମେ ଥିଲେ ବିଶ୍ୱାମିତ୍ର, ପରେ ହେଲେ ବାମଦେବ । ଋଷି ଯଦି ମଂତ୍ରସ୍ରଷ୍ଟା, ତାହାହେଲେ ଏହାର ଅର୍ଥ କଣ ?

ପୂର୍ବରୁ କୁହାଯାଇଛି ଯେ ଏସବୁର ତାତ୍ପର୍ଯ୍ୟ ସ୍ପଷ୍ଟ ଓ ସରଳ ହୋଇଯାଏ ଯେବେ ଋଷିଙ୍କୁ ମଂତ୍ରସ୍ରଷ୍ଟା ରୂପେ ନିଆ ନଯାଇ ମଂତ୍ରଦ୍ରଷ୍ଟା ରୂପେ ନିଆଯାଏ । ଜ୍ଞାନର ପ୍ରଥମ ପ୍ରକାଶ ବେଳେ ସାକ୍ଷାତକୃତଧର୍ମା ଋଷି ବେଦବାଣୀର ଐଶ୍ୱରିକ ପ୍ରେରଣା ପାଇବା ପରେ, ତାହାକୁ ଅନ୍ୟ ଋଷିଙ୍କ ଠାରେ ପ୍ରକାଶ କରନ୍ତି । କାଳକ୍ରମେ ଏହା ପାରଂପାରିକ ଓ ଶ୍ରୁତ ହୋଇଗଲେ । ଏହି ପରବର୍ତ୍ତୀ ଋଷିମାନେ ଯେଉଁ ୨ ବେଦମଂତ୍ରମାନଙ୍କ ବିଶିଷ୍ଟ ବ୍ୟାଖ୍ୟା କରନ୍ତି-ସେ ସବୁର ଚିନ୍ତନ କରନ୍ତି, ଅନ୍ତଃ ଦର୍ଶନ ବା ସାକ୍ଷାତ କରନ୍ତି, ସେମାନେ ପରବର୍ତ୍ତୀକାଳରେ ସେହି ୨ ମଂତ୍ରର ଋଷି ବୋଲି ସମ୍ମାନିତ ହୁଅନ୍ତି ।

ଲେଖିବା ବାହୁଲ୍ୟ ଯେ ପ୍ରତ୍ୟେକ ବେଦମଂତ୍ରରେ ଆଧିଦୈବିକ, **ଆଧିଭୌତିକ** ଓ ଆଧ୍ୟାତ୍ମିକ ଭାବନାର ଉତ୍ସ ପୂର୍ଣ୍ଣ ଭାବରେ ରହିଛି । ପରବର୍ତ୍ତୀ କାଳରେ କୌଣସି ଋଷି କୌଣସି ମଂତ୍ରରୁ ଯଦି ନୂତନ ତଥ୍ୟ ବା ରହସ୍ୟର ବ୍ୟାଖ୍ୟା କରନ୍ତି, ସେ ବି ସେହି ମଂତ୍ରର ଏକ ଋଷି

ବୋଲି ସମ୍ମାନିତ ହୁଅନ୍ତି । ଏହିରୂପେ ଗୋଟିଏ ମଂତ୍ରର ଅନେକ ଋଷି ହେବା ସମ୍ଭବ । ଆଲୋଚନାର ଏହି ସନ୍ଦର୍ଭରେ ଅସମାନ-କାଳୀନ ଋଷି ବି ଗୋଟିଏ ମଂତ୍ରର ଦ୍ରଷ୍ଟା ହୋଇ ପାରନ୍ତି । ଏହି ଦୃଷ୍ଟିରେ ବିଭିନ୍ନ ବେଦରେ ଥିବା ଗୋଟିଏ ମଂତ୍ରର ଭିନ୍ନ ୨ ଋଷି ହେବା ବି ସମ୍ଭବ । ମଂତ୍ର ସ୍ଥିର ଓ ନିତ୍ୟ ଅଟେ । ପରଂତୁ ମଂତ୍ରର ଋଷି ଅସ୍ଥିର । ଆବଶ୍ୟକତା ବେଳେ ମଂତ୍ରର ଋଷି ବଦଳି ପାରନ୍ତି । ଜଣେ ଋଷିଙ୍କ ବ୍ୟାଖ୍ୟା ପରବର୍ତ୍ତୀକାଳୀନ ବଂଶ ଗ୍ରହଣ ନକରି ଅନ୍ୟର ଗ୍ରହଣ କଲେ, ପ୍ରଥମୋକ୍ତ ଋଷି ବିସ୍ମୃତ ହୋଇ ପାରନ୍ତି । ସର୍ବାନୁକ୍ରମଣୀରେ ଲେଖାଅଛି— 'ଇଷେତ୍ୱାଦି ଠାରୁ ଖଂ ବ୍ରହ୍ମ' ପର୍ଯ୍ୟନ୍ତ ସମସ୍ତ ଯଜୁର୍ବେଦକୁ ପ୍ରଥମେ ବିବସ୍ୱାନ ଋଷି ଦର୍ଶନ କରିଥିଲେ । ଏହାପରେ ବ୍ରାହ୍ମଣ ଗ୍ରନ୍ଥାନୁସାରେ କର୍ମ ବିଭାଗ କାରଣରୁ ଦର୍ଶ ପୂର୍ଣ୍ଣମାସ ମଂତ୍ରମାନଙ୍କ ପାଇଁ ପରମେଷ୍ଠୀ ପ୍ରଜାପତି ଋଷିଙ୍କୁ ନିଆଗଲା † ।

ଏଥିରୁ ସ୍ପଷ୍ଟ ହୁଏ ଯେ ମଂତ୍ରର ଋଷି ସ୍ଥିର ନୁହନ୍ତି । ତେଣୁ କର୍ମ କାଣ୍ଡର ସୁବିଧା ପାଇଁ ବିବସ୍ୱାନଙ୍କ ସ୍ଥାନରେ ପ୍ରଜାପତିଙ୍କୁ ରଖାଗଲା । ଏହିପରି ମଂତ୍ରମାନଙ୍କ ଋଷି ପରିବର୍ତ୍ତିତ ହୋଇଥାନ୍ତି । ଭବିଷ୍ୟତରେ ଏଭଳି ପରିବର୍ତ୍ତନ ହୋଇପାରେ । ବେଦରେ କୁହା ଯାଇଛି—ଭୂତ, ଭବିଷ୍ୟତ ଓ ବର୍ତ୍ତମାନର ମଂତ୍ରଦ୍ରଷ୍ଟା ଋଷିଙ୍କ ବଚନ ହିଁ ଗ୍ରହଣୀୟ, ଅନ୍ୟଙ୍କ ନୁହେ ।

† ଇଷେତ୍ୱାଦି ଖଂ ବ୍ରହ୍ମାନ୍ତଂ ବିବସ୍ୱାନ ପଶ୍ୟତ୍ ତତଃ ଦ୍ରୁତକର୍ମ ବିଭାଗେନ ବ୍ରାହ୍ମଣାନୁସାରେଣ ଋଷଯୋ ବେଦିତବ୍ୟାଃ । ପରମେଷ୍ଠୀ ପ୍ରାଜାପତ୍ୟୋ ଦର୍ଶପୂର୍ଣ୍ଣମାସ ମନ୍ତ୍ରାଣାଂ ଋଷିର୍ଦେବୋ ବା ପ୍ରାଜାପତ୍ୟାଃ ।

ବେଦର କେତେକ ମଂତ୍ରର ଋଷିଙ୍କ ନାମ ସେହି ୨ ମଂତ୍ରର କୌଣସି ୨ ଶବ୍ଦ ସଙ୍ଗେ ସମାନ ଥାଏ । କେତେକ ଋଷିଙ୍କ ନାମ ମଂତ୍ରର ଦେବତା ନାମ ସହ ସମାନ ଥାଏ । ଆଉ କେତେକ ଋଷିଙ୍କ ନାମ ମଂତ୍ରର ଶବ୍ଦ ବା ଦେବତାଙ୍କ ନାମ ସହ ସମାନ ନଥାଏ । ଏହିପରି ତିନି ଶ୍ରେଣୀର ଋଷିଙ୍କ ନାମ ବେଦରେ ଅଛି ।

ବୈଦିକ ମଂତ୍ରର ଗଂଭୀର ଶବ୍ଦରାଶି ମଧ୍ୟରୁ କୌଣସି ଋଷି କୌଣସି ଗୋଟିଏ ଶବ୍ଦର ବିଶିଷ୍ଟ ରହସ୍ୟ ଉପସ୍ଥାପିତ କଲେ, ମଂତ୍ରର ସେହି ଶବ୍ଦକୁ ଆଗ୍ରହ ବଶତଃ ସେ ନିଜର ଏକ ଉପନାମ ରୂପେ ଗ୍ରହଣ କରି ଥାଇପାରନ୍ତି । ଅଥବା ଋଷିଙ୍କୁ ସମ୍ମାନିତ କରିବା ପାଇଁ ପରବର୍ତ୍ତୀ ମନୁଷ୍ୟଗୋଷ୍ଠୀ ତାହାଙ୍କୁ ସେହି ନାମରେ ନାମିତ କରି ଥାଇପାରନ୍ତି । ଏହି ରୂପେ ପ୍ରଥମ ଶ୍ରେଣୀସ୍ଥ ଋଷିଙ୍କ ନାମ ବ୍ୟାଖ୍ୟା କରି ଯାଇପାରେ । ମଂତ୍ରର 'ଦେବତା' ସମ୍ବନ୍ଧରେ ପରବର୍ତ୍ତୀ ଏକ ପରିଚ୍ଛେଦରେ ଆଲୋଚନା ହେବ । ଦେବତା ମଂତ୍ରର ପ୍ରତିପାଦ୍ୟ ବସ୍ତୁ, ଏହା ମନୁଷ୍ୟ ବା ଋଷି ନୁହେ । ମଂତ୍ରଦ୍ରଷ୍ଟା ଋଷି ମଂତ୍ରର ପ୍ରତିପାଦ୍ୟ ବିଷୟ ସଂବନ୍ଧରେ ହୃଦୟସ୍ପର୍ଶୀ ବ୍ୟାଖ୍ୟା କରିବା ପରେ ସେହି ବିଷୟର ନାମକୁ ଗ୍ରହଣ କରି ଥାଇ-ପାରନ୍ତି । ଏମାନେ ଉତ୍କୃଷ୍ଟ ଋଷି । ତୃତୀୟତଃ ଯେଉଁ ମଂତ୍ରଦ୍ରଷ୍ଟା ଋଷିମାନେ ମଂତ୍ରସ୍ଥ ଶବ୍ଦ ବା ପ୍ରତିପାଦ୍ୟ ବସ୍ତୁର ନାମକୁ ଗ୍ରହଣ କରନ୍ତି ନାହିଁ, ସେମାନେ ସାଧାରଣ ଋଷି ରୂପେ ଗୃହୀତ ହୁଅନ୍ତି ।

## 'ଦେବତା' ମଂତ୍ରର ପ୍ରତିପାଦ୍ୟ ବସ୍ତୁ

'ଋଷି' ସଙ୍ଗେ ୨ ଦେବତାଙ୍କ ନାମ ମଂତ୍ର ଅଗରେ ଦେଖିବାକୁ ମିଳେ । ଋଷିଙ୍କୁ ଯେପରି ମଂତ୍ରର ରଚୟିତା ବୁଝି କେତେକ ପାଠକ

ଭ୍ରାନ୍ତରେ ପଡ଼ନ୍ତି, ସେହିରୂପେ କେତେକ ଏହି ଦେବତାଙ୍କୁ ଭୁଲରେ ମଂତ୍ରର ରଚୟିତା ବୋଲି ବୁଝନ୍ତି । ଯାସ୍କ ମୁନି ନିରୁକ୍ତରେ ଲେଖିଛନ୍ତି-- 'ଋଷିମାନେ ମଂତ୍ରରୁ ଯେଉଁ ଅର୍ଥ ପ୍ରକାଶ କରିବା ପାଇଁ କାମନା ରଖନ୍ତି, ତାହା ସେହି ମଂତ୍ରର ଦେବତା * ।' ଅର୍ଥାତ ଦେବତା ମଂତ୍ରର ପ୍ରତିପାଦ୍ୟ ବସ୍ତୁ । କୌଣସି ମଂତ୍ରରେ ଅଗ୍ନି ବା ଇନ୍ଦ୍ର ସମ୍ବନ୍ଧରେ ବର୍ଣ୍ଣନା କରାଗଲେ ଅଗ୍ନି ବା ଇନ୍ଦ୍ର ସେହି ମଂତ୍ରର ଦେବତା ହୁଅନ୍ତି । ଏଠାରେ ମନେ ରଖିବା ଉଚିତ ଯୌଗିକ ଅର୍ଥରେ ଅଗ୍ନି, ଇନ୍ଦ୍ରାଦିର ଅର୍ଥ ବିଭିନ୍ନ ହୋଇପାରେ । ଯେପରି ଅଗ୍ନିର ଅର୍ଥ ଭୌତିକ ଅଗ୍ନି, ଅଗ୍ରଣୀୟ ନେତା, ଅଗ୍ନିରୂପୀ ପରମାତ୍ମାଦି ହୋଇପାରେ । କୌଣସି ବେଦମଂତ୍ରର ପ୍ରତିପାଦ୍ୟ ବସ୍ତୁ ଏ ମଧ୍ୟରୁ କୌଣସି ଗୋଟିଏ ହେଲେ, 'ଅଗ୍ନି' ସେହି ମଂତ୍ରର 'ଦେବତା' ହୋଇ ପାରନ୍ତି ।

ସର୍ବାନୁକ୍ରମଣୀରେ ଲେଖାଅଛି—'ଯା ତେନୋଚ୍ୟତେ ସା ଦେବତା'—ମଂତ୍ରରେ ଯେଉଁ ବିଷୟ ବର୍ଣ୍ଣିତ ହୁଏ, ସେହି ବିଷୟ ସେହି ମଂତ୍ରର ଦେବତା । ପାଶ୍ଚାତ୍ୟ ପଣ୍ଡିତ ମେକସ୍ ମୁଲେର ଏହାକୁ ସ୍ୱୀକାର କରି ଲେଖିଛନ୍ତି—'ମଂତ୍ରର ଦେବତାରୁ ତାହାର ନିର୍ବାଚିତ ବିଷୟ ଅତିରିକ୍ତ ଅନ୍ୟ କୌଣସି ଅଭିପ୍ରାୟ ପ୍ରକାଶିତ ହୁଏନାହିଁ † ।'

---

* ଅଥାତୋ ଦୈବତଂ ତଦ୍ୟାନି ନାମାନି ପ୍ରାଧାନ୍ୟସ୍ତୁତୀନାଂ ଦେବତାନାଂ ତଦ୍ଦୈବତ ମିତ୍ୟାଚକ୍ଷତେ । ସୈଷା ଦେବତୋପରୀକ୍ଷା ଯତ୍କାମ ଋଷିର୍ଯସ୍ୟାଂ ଦେବତାୟାମାର୍ଥ ପତ୍ୟମିଚ୍ଛନ୍ ସ୍ତୁତିମ୍ ପ୍ରଯୁଙ୍କ୍ତେ ତଦ୍ଦୈବତଃ ସ ମଂତ୍ରୋ ଭବତି । (ନିରୁକ୍ତ ୭, ୧)

† *India: What can it teach us—By Maxmuller.*

ମଂତ୍ରର ପ୍ରତିପାଦ୍ୟ ବସ୍ତୁର ନିର୍ଣ୍ଣୟ ଓ ନିର୍ବାଚନ କରିବା ସାଧାରଣ କଥା ନୁହେଁ । ଏହା ଏକ ଜଟିଳ ସମସ୍ୟା । ମଂତ୍ରମାନଙ୍କର ଅନ୍ତଃଦ୍ରଷ୍ଟା ଋଷିମାନେ ଏହି କାର୍ଯ୍ୟ କରି ପାରନ୍ତି । ପୂର୍ବରୁ କୁହାଯାଇଛି ଯେ କେତେକ ଋଷି କେଉଁ ମଂତ୍ରର ପ୍ରତିପାଦ୍ୟ ବସ୍ତୁ ଉପରେ ଏତେଦୂର ଆକୃଷ୍ଟ ହୋଇ ପଡନ୍ତି ଯେ ତାହାକୁ ନିଜର ଏକ ଉପନାମ ରୂପେ ଗ୍ରହଣ କରନ୍ତି । ଫଳରେ ମଂତ୍ରର ଋଷି ଓ ଦେବତାଙ୍କ ନାମ ଏକ ହୋଇଯାଏ । ମଂତ୍ରର ଋଷି ପରି ଦେବତା ମଧ୍ୟ ଅସ୍ଥିର ଓ ପରିବର୍ତ୍ତନଶୀଳ । ଭବିଷ୍ୟତରେ କୌଣସି ଋଷି କୌଣସି ମଂତ୍ରରୁ ନୂତନ ସଂଧାନ ପାଇଲେ ସେ ମଂତ୍ରର ଋଷି ରୂପେ ବିବେଚିତ ହୋଇ ପାରନ୍ତି ଓ ସେତେବେଳେ ତାହାଙ୍କ ନୂତନ ସଂଧାନର କେନ୍ଦ୍ର ବସ୍ତୁ ମଂତ୍ରର ଦେବତା ରୂପେ ଖ୍ୟାତ ହୋଇପାରେ ।

‘ଦେବତା’ ଶବ୍ଦ ସଂବନ୍ଧରେ ପାଶ୍ଚାତ୍ୟ ପଣ୍ଡିତମାନଙ୍କ ଧାରଣା ଏତେଦୂର କଳୁଷିତ ଓ ସଂକୀର୍ଣ୍ଣ ଯେ ତାହାର କିଂଚିତ୍ ସମୀକ୍ଷା କରିବା ଉଚିତ ମନେହୁଏ । ନିରୁକ୍ତକାର ଦେବତା ସମ୍ବନ୍ଧରେ ବ୍ୟାଖ୍ୟା କରିଛନ୍ତି—‘ଯାହା ଆମ୍ଭମାନଙ୍କ ପାଇଁ କୌଣସି ପ୍ରକାରରେ ଲାଭ-ଦାୟକ, ଆମ ଉପରେ ଯାହା ପ୍ରକାଶ ପକାଇପାରେ ଓ ଯାହା ପ୍ରକାଶର ସ୍ରୋତ, ସେ ଦେବତା † । ପ୍ରକାଶଯୁକ୍ତ ଓ କଲ୍ୟାଣକାରୀ ହେବାରୁ ସୂର୍ଯ୍ୟ, ଚନ୍ଦ୍ର, ଆକାଶ, ଅଗ୍ନି ଆଦି ଦେବତା ଅଟନ୍ତି । ଏମାନେ ଦିବ୍ୟ-ଗୁଣସଂଯୁକ୍ତ ବସ୍ତୁ । ଏ ସମସ୍ତ ପ୍ରକାଶକଙ୍କ ମୂଳ ପ୍ରକାଶକ ପରମାତ୍ମା ବି ଦେବତା । ପୁନଶ୍ଚ ପରମାତ୍ମା ପ୍ରକାଶର ମୂଳ ସ୍ରୋତ ଓ ପରମ

---

† ଦେବୋ ଦାନାଦ୍ୱା ଦୀପନାଦ୍ୱା ଦ୍ୟୋତନାଦ୍ୱା ଦ୍ୟୁସ୍ଥାନୋ ଭବତୀତି ବା । (ନିରୁକ୍ତ ୭, ୧୫)

କଲ୍ୟାଣକାରୀ ହେବାହେତୁ ତାହାଂକୁ ବୈଦିକ ସାହିତ୍ୟରେ ଅଗ୍ନି, ବାୟୁ, ସୂର୍ଯ୍ୟ, ଚନ୍ଦ୍ରାଦି ପ୍ରକାଶମାନ ଦେବତାଙ୍କ ନାମରେ ସଂବୋଧନ କରି-ଯାଇଛନ୍ତି *। ପ୍ରକାଶର ସ୍ରୋତ ଓ କଲ୍ୟାଣପ୍ରଦ ଏହି ଦେବତାମାନେ ଅଗ୍ନି, ବାୟୁ ଆଦିତ୍ୟାଦି ଜଡବସ୍ତୁ ହୋଇ ପାରନ୍ତି, ମାତାପିତା ଆଚାର୍ଯ୍ୟାଦି + ଦେହଧାରୀ ହୋଇ ପାରନ୍ତି ବା ବ୍ୟାପକ ଅର୍ଥରେ ସର୍ବ-ପ୍ରକାଶମାନ ପରମାତ୍ମା ହୋଇ ପାରନ୍ତି ।

ଦୁଃଖର କଥା ବୈଦିକ ଭାଷାର ରଚନା କୌଶଳର ଗଂଭୀରତା ବୁଝି ନପାରି ପାଶ୍ଚାତ୍ୟ ପଣ୍ଡିତମାନେ ଦେବତା ଉପର ବହୁ ଅନର୍ଥ କରି ଯାଇଛନ୍ତି । ବିଭିନ୍ନ ମଂତ୍ର ପାଇଁ ବିଭିନ୍ନ ଦେବତାର ଉଲ୍ଲେଖ ଥିବାରୁ ଓ ପରମାତ୍ମାଙ୍କୁ ବିଭିନ୍ନ ସ୍ଥଳରେ ବିଭିନ୍ନ ଦେବତା ନାମରେ ସମ୍ବୋଧନ କରାଯାଉଥିବାରୁ, ୟୁରୋପୀୟ ସଂସ୍କୃତ ପଣ୍ଡିତମାନେ ପ୍ରଚାର କରିଛନ୍ତିଯେ ପ୍ରାଚୀନ ଆର୍ଯ୍ୟମାନେ ବହୁ ଈଶ୍ୱରଙ୍କ ପୂଜା କରୁଥିଲେ— ସୂର୍ଯ୍ୟ ଅଗ୍ନି ଆଦି ଜଡ଼ ପଦାର୍ଥଙ୍କୁ ଏକ ୨ ଈଶ୍ୱର ବୋଲି ଗ୍ରହଣ କରୁଥିଲେ । ବାସ୍ତବରେ ବୈଦିକ ଯୁଗରେ ଏକେଶ୍ୱରଙ୍କ ପ୍ରାର୍ଥନା ବିହିତ ଥିଲା । ସୂର୍ଯ୍ୟ ଚନ୍ଦ୍ରାଦି ପ୍ରକାଶମାନ ଦେବତାଙ୍କୁ ସେମାନଙ୍କ ଅକ୍ଷୁଣ୍ଣ ବ୍ରତର ଅନୁକରଣ ଲାଗି ଆର୍ଯ୍ୟମାନେ ଆଦର୍ଶସ୍ଥାନୀୟ ଭାବରେ ସେମାନଙ୍କ ଗୁଣଗାନ କରୁଥିଲେ । ଅବଶ୍ୟ ମଧ୍ୟ ଯୁଗରେ ବୈଦିକ ଧର୍ମର ଅଧୋପତନ

---

* ସୁପର୍ଣ୍ଣଂ ବିପ୍ରା କବୟୋ ବଚୋଭିରେକଂ ସନ୍ତଂ ବହୁଧା କଳ୍ପୟନ୍ତି ।
(ଋକ୍ ୧୦, ୧୧୩, ୫)

+ ମାତୃଦେବୋ ଭବ ପିତୃଦେବୋ ଭବ ଆଚାର୍ଯ୍ୟଦେବୋ ଭବ
(ତୈ. ଉ. ଅନୁ. ୧୧)

ଫଳରେ ଏହି ସବୁ ପୂଜାବିଧି ଏକ ଅଂଧ ପରଂପରାର ରୂପ ଗ୍ରହଣ କଲା । ପରଂତୁ ଏଥିଯୋଗୁଁ ଆଦି ବୈଦିକ ଚିନ୍ତାଧାରାକୁ କଦର୍ଥ କରି ପ୍ରଚାର କରିବା ଅଜ୍ଞତା ଛଡ଼ା ଆଉ କିଛି ନୁହେ ।

## ତେବେ ମଂତ୍ରର ସ୍ରଷ୍ଟା କିଏ ?

ବେଦର ଋଷି, ଦେବତା, ମଣ୍ଡଳ, ଅଧ୍ୟାୟ ଆଦି ସମ୍ବନ୍ଧରେ ଯଥାଃଶକ୍ତି ଆଲୋଚନା କରା ଯାଇଛି । ପ୍ରମାଣିତ ହୋଇଛି ଯେ ଏସବୁ ଅସ୍ଥିର । ଋଷି ସୃଷ୍ଟି ଆରଂଭରେ ଜ୍ଞାନର ଉପଲବ୍ଧି କରିଛନ୍ତି—ସେହି ମହତ୍ ଜ୍ଞାନକୁ ମଣ୍ଡଳ, ଅଧ୍ୟାୟାଦିରେ ସଂପାଦନ କରିଛନ୍ତି ଓ ମଂତ୍ରର ପ୍ରତିପାଦ୍ୟ ବସ୍ତୁକୁ ଦେବତା ନାମ ଦେଇଛନ୍ତି । ଏହି ଆଦି ଜ୍ଞାନ ସ୍ଥିର ଓ ସନାତନ । ଏହାହିଁ ବେଦ । ଋଷି ମଂତ୍ରର ସ୍ରଷ୍ଟା ନହେଲେ ତାହାର ସ୍ରଷ୍ଟା କିଏ ? ସୃଷ୍ଟି ଆରଂଭବେଳେ ଯେଉଁ ଜ୍ଞାନ ଋଷିଙ୍କ ଠାରେ ପ୍ରକାଶିତ ହୁଏ, ସେଥିପାଇଁ କୌଣସି ନିମିତ୍ତ ବା ପ୍ରେରଣାକର୍ତ୍ତା ଆବଶ୍ୟକ ନୁହନ୍ତି କି ? ଚତୁର୍ଥ ଅଧ୍ୟାୟରେ ଏହି ପ୍ରଶ୍ନର ଉତ୍ତର ମିଳିବ !

## — ଚତୁର୍ଥ ଅଧ୍ୟାୟ —

### ଆଦ୍ୟ ଜ୍ଞାନ ବେଦ

ସର୍ବେଷାଂ ତୁ ନାମାନି କର୍ମାଣି ଚ ପୃଥକ୍ ପୃଥକ୍ ।
ବେଦ ଶବ୍ଦେଭ୍ୟ ଏବାଦୌ ପୃଥକ୍ ସଂସ୍ଥାଶ୍ଚ ନିର୍ମମେ ॥
( ମନୁ ୧,୨୧ )

ଅର୍ଥାତ୍— ପରମାତ୍ମାଙ୍କ ସୃଷ୍ଟିର ଆରଂଭରେ ବେଦର ଶବ୍ଦରୁ ସମସ୍ତ ବସ୍ତୁ ଓ ପ୍ରାଣୀଙ୍କ ନାମ ଓ କର୍ମ ତଥା ଲୌକିକ ବ୍ୟବସ୍ଥାମାନ ରଚିତ ହେଲା ।

ବୃହସ୍ପତେ ପ୍ରଥମଂ ବାଚୋ ଅଗ୍ରଂ ଯତ୍ପ୍ରୈରତ ନାମଧେୟଂ ଦଧାନାଃ ।
ଯଦେଷାଂ ଶ୍ରେଷ୍ଠଂ ଯଦରିପ୍ରମାସୀତ୍ ପ୍ରେଣା ତଦେଷାଂ ନିହିତଂ ଗୁହାବିଃ ॥
( ଋକ୍ ୧୦, ୭୧, ୧ )

ଅର୍ଥାତ୍— ହେ ସର୍ବଜ୍ଞ, ବେଦବାଣୀର ସ୍ୱାମୀ ପରମାତ୍ମନ୍ ! ସୃଷ୍ଟି ଆରଂଭରେ ମନୁଷ୍ୟଙ୍କ ଉତ୍ପତ୍ତିବେଳେ ଆପଣ ଶ୍ରେଷ୍ଠ ଓ ନିଷ୍ପାପ ଋଷିଙ୍କ ଠାରେ ଅବିଜ୍ଞାନ ବେଦବାଣୀର ପ୍ରକାଶ କରିଥିଲେ ।

ମନୁଷ୍ୟ ସୃଷ୍ଟିର ଆରଂଭବେଳେ ଯେଉଁ ଜ୍ଞାନର ପ୍ରକାଶ ଫଳରେ ବିଭିନ୍ନ ବସ୍ତୁ ଓ ଜୀବଙ୍କ ନାମ ତଥା କର୍ମ ଉପଲବ୍ଧ ହେଲା, ତାହାହିଁ ବେଦ । ଏଥିରେ ମନୁଷ୍ୟର ଲୌକିକ ଓ ପରଲୌକିକ ସୁଖପାଇଁ ନାନାବିଧ ଶିକ୍ଷାର ସଂକେତ ରହିଛି । ମହାଭାଷ୍ୟକାର ଲେଖିଛନ୍ତି— 'ବେଦର ଗୋଟିଏ ୨ ଶବ୍ଦର ଅର୍ଥକୁ ହୃଦୟଂଗମ କରି ପାରିଲେ ଓ ତଦନୁରୂପ ଆଚରଣ କରି ପାରିଲେ ସଂସାର ସ୍ୱର୍ଗରୂପ ଧାରଣ କରନ୍ତା † ।' ଅଧ୍ୟାପକ ମେକ୍ସ୍‌ମୁଲେର୍ ଲେଖିଛନ୍ତି—'ସଂସାରର ଇତିହାସରେ ବେଦ ଯେଉଁ ସ୍ଥାନ ପୂରଣ କରେ, ଅନ୍ୟ କୌଣସି ସାହିତ୍ୟ ତାହା କରି ନପାରେ + ।' ବେଦାଲୋଚନାରେ ମୁଗ୍ଧ ହୋଇ ଜଣେ ଗ୍ରୀକ୍ ପଣ୍ଡିତ ଲେଖିଛନ୍ତି—'ଗ୍ରୀସ୍ ଓ ରୋମ ଦେଶରେ ଋକ୍ ବେଦଠାରୁ ଅଧିକ ମହତ୍ତ୍ୱ କୀର୍ତ୍ତି କିଛି ହୋଇନାହିଁ ✻ ।'

---

† ଏକଃ ଶବ୍ଦଃ ସମ୍ୟକ୍ ଜ୍ଞାତଃ ସୁପ୍ରଯୁକ୍ତଃ ସ୍ୱର୍ଗେ ଲୋକେ କାମଧୁକ୍ ଭବତି—(ବ୍ୟା. ମହାଭାଷ୍ୟ)

+ *In the history of the world, the Vedas fill a gap which no literary work in any other language could fill—Maxmuller.*

✻ *There is no monument of Greece or Rome more precious than the Rigveda – Mons Leon Delbes.*

ପ୍ରାଚ୍ୟ ଓ ପାଶ୍ଚାତ୍ୟ ମନୀଷୀଗଣ ମୁକ୍ତ କଂଠରେ ଘୋଷଣା କରିଛନ୍ତି ଯେ ବେଦ ମନୁଷ୍ୟର ଆଦି ଜ୍ଞାନ । ଏହି ଆଦି ଜ୍ଞାନର ଛାୟାରେ ଅଦ୍ୟାବଧି ସଂସାରର ସମସ୍ତ ପ୍ରଚଳିତ ଭାଷା ବୈଦିକ ଭାଷାରୁ ଗୃହୀତ ଓ ସମସ୍ତ ପ୍ରଚଳିତ ଧର୍ମ ବୈଦିକ ଧର୍ମରୁ ଗୃହୀତ ବୋଲି ପଂଚମ ଓ ଷଷ୍ଠ ଅଧ୍ୟାୟରେ ଆଲୋଚନା କରାଯିବା ପରେ ବେଦର ଆଦିମତା ସମ୍ବନ୍ଧରେ ଧାରଣା ବଦ୍ଧମୂଳ ହେବ ।

## ଆଦିଜ୍ଞାନ ସମ୍ବନ୍ଧେ ବିକାଶବାଦୀଙ୍କ ସନ୍ଦେହ

ତୃତୀୟ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି ଯେ ଋଷି ବେଦମଂତ୍ରର ଦ୍ରଷ୍ଟା । ଆଦିସୃଷ୍ଟି ବେଳେ କେତେକ ସାକ୍ଷାତକୃତଧର୍ମୀ ଋଷିଙ୍କ ଠାରେ ବେଦ ପ୍ରକାଶିତ ହୋଇଥିଲା । ବେଦଧର୍ମର ପ୍ରାଧାନ୍ୟ ଥିବା ଆଦିମ ଯୁଗ ବୈଦିକ ଯୁଗ ନାମରେ ଖ୍ୟାତ । ବେଦର ଅଲୌକିକ ଜ୍ଞାନର ଅନୁଶୀଳନ ଓ ଅନୁକରଣ କରୁଥିବାରୁ ବୈଦିକକାଳୀନ ମନୁଷ୍ୟ ଅତ୍ୟନ୍ତ ଧୀମାନ ଓ ସୁସ୍ଥ ଥିଲେ । ଉଦ୍ଦାମ ଆତ୍ମଶକ୍ତି ବଳରେ ସେମାନେ ଶାନ୍ତିପୂର୍ଣ୍ଣ ଭାବରେ ଦୀର୍ଘଜୀବନ ଯାପନ କରୁଥିଲେ ।

ମନୁଷ୍ୟର ଆଦିମ ଆକାର, ଜ୍ଞାନ ଓ ଭାଷା ସଂବନ୍ଧରେ ଗତ ଦୁଇଶହ ବର୍ଷ ମଧ୍ୟରେ ଏକ ନବୀନ ମତ ପ୍ରଚରିତ ହୋଇଛି । ଏହାର ନାମ ଉତ୍କ୍ରାନ୍ତି ବା ବିକାଶବାଦ । ଏହି ତଥ୍ୟ ହେଉଛି ଯେ ମନୁଷ୍ୟ ପ୍ରଥମେ ମନୁଷ୍ୟ ନଥିଲା । ବିଭିନ୍ନ ପ୍ରକାରର ମାଛ, ବେଙ୍ଗ, ବାନର ଓ ବନମନୁଷ୍ୟର ଆକାର ଧାରଣ କରି କରି ଶେଷରେ ସେ ମନୁଷ୍ୟର ଆକାର ଧାରଣ କଲା । ଏହାର ନାମ ଜୀବନ ବିକାଶ । ପୁନଶ୍ଚ ମନୁଷ୍ୟ ସର୍ବପ୍ରଥମେ ବୁଦ୍ଧିହୀନ ଅବସ୍ଥାରେ ଥିଲା । ଜଂଗଲି ଅବସ୍ଥାରୁ

ସେ ଧୂରେ ୨ ବର୍ତ୍ତମାନର ସଭ୍ୟ ଅବସ୍ଥାକୁ ଆସିଛୁ । ଏହି ତଥ୍ୟର ନାମ ମାନସିକ ବା ବୌଦ୍ଧିକ ବିକାଶ ।

ଆମ୍ଭେମାନେ ବେଦକୁ ଜ୍ଞାନର ଭଣ୍ଡାର ଓ ସୃଷ୍ଟି ଆରଂଭବେଳର ମଂତ୍ରଦ୍ରଷ୍ଟା ଋଷିଙ୍କୁ ସାତ୍ତ୍ୱିକ ଓ ସାକ୍ଷାତକୃତ ମାନବ ବୋଲି ଗ୍ରହଣ କରିନେବାବେଳେ, ଏହି ବିକାଶବାଦ ଏହାର ପ୍ରତିକୂଳ ମତ ପୋଷଣ କରେ । ବିକାଶବାଦର ପ୍ରଚାର ଆଜି ସଂସାରରେ ଏତେଦୂର ପ୍ରବଳ ହୋଇ ପଡ଼ିଛି ଯେ କେତେକ ପ୍ରଧାନ ୨ ଭାରତୀୟ ପଣ୍ଡିତ ବି ଏହାକୁ ଗ୍ରହଣ କରିନେଉଛନ୍ତି । ଆମର ପରମ ଦୁର୍ଭାଗ୍ୟଯେ, କୌଣସି ବୈଜ୍ଞାନିକ ତଥ୍ୟର ଅନ୍ତରଙ୍ଗ ପରୀକ୍ଷା ନକରୁଣୁ ଆମେ ତାହାର ପୋଷଣ କରିବା ପାଇଁ ବିଭିନ୍ନ କୃତ୍ରିମ ଯୁକ୍ତି ଉପସ୍ଥାପିତ କରୁଛୁ । ଧର୍ମରେ ଅନ୍ଧବିଶ୍ୱାସୀଙ୍କ ଠାରୁ ବିଜ୍ଞାନର ଅନ୍ଧବିଶ୍ୱାସୀଙ୍କ କ୍ରିୟାକଲାପ ଆଜି ଉଲଟ ରୂପ ଧାରଣ କରିଛି ।

## ବିକାଶ ବାଦ ଏକ ପ୍ରତିକ୍ରିୟାବାଦ

ଆଜକୁ ପ୍ରାୟ ତିନି ହଜାର ବର୍ଷ ତଳେ ଭାରତ ବର୍ଷରେ ଚାର୍ବାକ ମତ ପ୍ରଚଳିତ ହୋଇଥିଲା । ମହାଭାରତ ସମରରେ ସଂସାରର ବିଶିଷ୍ଟ ୨ ଧାର୍ମିକ ଓ କ୍ଷାତ୍ରୀୟ ନେତାଙ୍କ ବିୟୋଗ ପରେ ଧର୍ମ ଓ ରାଷ୍ଟ୍ର ନୀତିରେ ବହୁ ବିଶୃଂଖଳା ଜାତ ହେଲା । ଧର୍ମ ନାମରେ ସ୍ୱେଚ୍ଛାଚାରିତା ଶୀଘ୍ର ସୃଷ୍ଟି ହେଲା । ସେତେବେଳେ ଏ ଦେଶରେ କର୍ମଗତ ଜାତିବିଭାଗ ଯାଇ ଜନ୍ମଗତ ଜାତିବିଭାଗ ପ୍ରଚଳିତ ହେଲା । ଈଶ୍ୱର-ପୂଜା ନାମରେ ବିଭିନ୍ନ ବାଭତ୍ସ ମୂର୍ତ୍ତିଙ୍କ ପୂଜା, ଈଶ୍ୱର ସଂତୁଷ୍ଟି ନାମରେ ପଶୁବଳି, ମଦ୍ୟପାନାଦି, ବାମମାର୍ଗୀ କ୍ରିୟାକାଣ୍ଡ, ବେଦ ନାମରେ ବିଭିନ୍ନ ଜାଲି ଗ୍ରଂଥ ଆଦିର

ପ୍ରସ୍ତୁତ ହୋଇଥିଲା । ଧର୍ମରେ ଏହି ଅଧୋଗତି ବେଳେ କେତେକ ପଣ୍ଡିତ ଏସବୁର ସଂସ୍କାର ପାଇଁ ବାଟ ନପାଇ ଧର୍ମକୁ ମୂଳରୁ ଧ୍ୱଂସ କରିବା ପାଇଁ ବାହାରିଲେ । ଏମାନଙ୍କ ଠାରେ ଏପରି ତୀକ୍ଷ୍ଣ ବୁଦ୍ଧି ନଥିଲା ଯେ ଏମାନେ ପ୍ରଚଳିତ କଳୁଷିତ ପରଂପରାକୁ ସଂଶୋଧନ କରି ପାରିଥାନ୍ତେ । ଧର୍ମଶାସ୍ତ୍ରମାନଙ୍କରେ ହୋଇଥିବା ମିଶ୍ରଣ ଓ ପ୍ରକ୍ଷେପକୁ ସଂଶୋଧନ କରିନପାରି ଏମାନେ ସେସବୁକୁ ଏକାବେଳେକେ ଧ୍ୱଂସ କରିବା ଆରଂଭ କଲେ । ଈଶ୍ୱରପୂଜା ନାମରେ ହେଉଥିବା ସହସ୍ର ଅନ୍ଧ-ପରଂପରାକୁ ଦୂର କରିନପାରି ମୂଳରୁ ଈଶ୍ୱର-ବିଶ୍ୱାସ ହରାଇଲେ । ଏମାନେ ଚାର୍ବାକ ବା 'ଗୁରୁବାକ୍' ନାମରେ ଖ୍ୟାତ । ମୋଟ ଉପରେ ମହାଭାରତ ଯୁଗ ପରେ ଧାର୍ମିକ କ୍ଷେତ୍ରରେ ଯେଉଁ ବିଭ୍ରାଟିକା ଦେଖା ଦେଇଥିଲା, ଚାର୍ବାକମତ ସେସବୁର ଏକ ପ୍ରତିକ୍ରିୟାବାଦ ।

ପ୍ରାୟ ତିନି ହଜାର ବର୍ଷତଳେ 'ଧର୍ମରେ ଦୁରାଚାର' ବିରୁଦ୍ଧରେ ଭାରତବର୍ଷରେ ଏହି ଯେଉଁ ପ୍ରତିକ୍ରିୟା ଦେଖା ଦେଇଥିଲା, ଠିକ୍ ତାହାର ଏକ ପୁନରାବୃତ୍ତି ପ୍ରାୟ ଦେଢଶ ବର୍ଷ ତଳେ ୟୁରୋପ ଦେଶରେ ଘଟିଥିଲା । ସେହି ସମୟରେ ସେଠାରେ ଖ୍ରୀଷ୍ଟିଆନ୍ ମତର ରାଜୁତି ଚାଲିଥିଲା । ପୋପ ଯାହା କହୁଥିଲେ, ତାହା ରାଜାଙ୍କ ଶିରୋଧାର୍ଯ୍ୟ ହେଉଥିଲା । ଗୀର୍ଜାର ଅଙ୍ଗୁଳି ନିର୍ଦ୍ଦେଶରେ ଦେଶ ଶାସିତ ହେଉଥିଲା । ପୋପ ରାଜତ୍ୱରେ ଜ୍ଞାନ ମାର୍ଗରେ ପୂର୍ଣ୍ଣ ଅବସାନ ଘଟିଥିଲା । ଭକ୍ତିମାର୍ଗ ପ୍ରଚଳନରେ ଧର୍ମରେ ଅନ୍ଧବିଶ୍ୱାସ ଘାରି ରହିଥିଲା ।

ଏତିକିବେଳେ ସେଠାରେ ଆଧୁନିକ ବିଜ୍ଞାନ ଜନ୍ମଲାଭ କଲା । ଯୁକ୍ତି ଓ ନିରୀକ୍ଷଣ ଉପରେ ଦଳେ ଲୋକ ଆଖି ଖୋଲି ସୃଷ୍ଟିକୁ

ଦେଖିବା ଆରମ୍ଭ କଲେ । ବୈଜ୍ଞାନିକ ଗବେଷଣାର ବିଭିନ୍ନ ତଥ୍ୟ ଦେଶରେ ପ୍ରଚାର କରାଗଲା । ଏଥି ମଧ୍ୟରୁ କେତେକ ତଥ୍ୟ ଧାର୍ମିକ ବିଶ୍ୱାସ ଓ ପ୍ରଥାର ପ୍ରତିକୂଳ ହେଲା । ପୋପଙ୍କ ଦାନାପାଣି ବୁଡ଼ିଯିବା ଆଶଂକା ଆରମ୍ଭ ହେଲା । ଧର୍ମ ନାମରେ ପ୍ରଚଳିତ ସହସ୍ର ଅନ୍ଧବିଶ୍ୱାସର ଆବରଣ ଖୋଲିଯିବା ଭୟରେ ଧର୍ମଯାଜକମାନେ ଏସବୁରେ ଆପତ୍ତି ଉଠାଇଲେ । ପୃଥିବୀ ଗୋଲାକାର ଓ ସୂର୍ଯ୍ୟ ଚତୁର୍ଦ୍ଦିଗରେ ଏହା ଘୂର୍ଣ୍ଣନ କରେ ଆଦି ପ୍ରମାଣ ଓ ନିରୀକ୍ଷଣପୁଷ୍ଟ ସିଦ୍ଧାନ୍ତ ଗୁଡ଼ିକୁ ଗାଲିଲିଓ ପ୍ରଚାର କରିବାରୁ ଓ ଏସବୁ ପ୍ରଚଳିତ ଧାର୍ମିକ ବିଶ୍ୱାସର ପ୍ରତିକୂଳ ହେବାରୁ, ତାହାଙ୍କୁ ବନ୍ଦୀ କରାଗଲା । ବୈଜ୍ଞାନିକମାନଙ୍କୁ କଠୋର ନୀତିରେ ଦମନ କରାଗଲା ଓ ସେମାନଙ୍କ ମଧ୍ୟରୁ ଅନେକଙ୍କୁ ହତ୍ୟା ବି କରାଗଲା । ବ୍ରୁନୋ, ହାଇପେଶିଆ ଆଦି ବିଜ୍ଞାନବେତ୍ତାମାନଙ୍କୁ ନିର୍ଦ୍ଦୟ ଭାବରେ ମାରି ଦିଆଗଲା । ଏଥିରେ ବୈଜ୍ଞାନିକମାନେ କ୍ରୁଦ୍ଧ ହୋଇ ପଡ଼ିଲେ । ସେମାନେ ପ୍ରତିଶୋଧ ପାଇଁ ବାଟ ଖୋଜିଲେ ! ଏଣେ ଧର୍ମଯାଜକମାନେ ବୈଜ୍ଞାନିକମାନଙ୍କୁ ସଂତ୍ରାସବାଦୀ ଓ ଧର୍ମଦ୍ରୋହୀ ଆଖ୍ୟା ଦେଲେ ।

ଭାରତବର୍ଷର ଚାର୍ବାକ ଯେପରି ତତ୍କାଳୀନ ପୁରୋହିତଙ୍କ ଅତ୍ୟାଚାର ସହି ନପାରି ମୂଳରୁ ଧର୍ମ ଓ ଈଶ୍ୱରଙ୍କ ଠାରୁ ବିଶ୍ୱାସ ହରାଇଲେ; ପ୍ରଚଳିତ ଧାର୍ମିକ ପରଂପରାକୁ ସଂଶୋଧନ କରି ନପାରି ଧର୍ମକୁ ସଂହାର କରିବା ପାଇଁ ଉଗ୍ରରୂପ ଧାରଣ କଲେ—ଠିକ୍ ସେହିପରି ୟୁରୋପର ବୈଜ୍ଞାନିକମାନେ ସଂଘବଦ୍ଧ ଭାବରେ ପୋପଙ୍କ ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉଠାଇ ୨ ପଥଭ୍ରଷ୍ଟ ହୋଇ ପଡ଼ିଲେ । ସେମାନେ ବିଚାରିଲେ ଯେ ଏପରି ଏକ ବୈଜ୍ଞାନିକ ତଥ୍ୟର ଆବିଷ୍କାର କରିବା ଜରୁରୀ ଆବଶ୍ୟକ ଯାହାର ସହାୟତାରେ ସୃଷ୍ଟିର ସମସ୍ତ ରଚନା ଓ ନିୟମକୁ ଈଶ୍ୱରଙ୍କ

ଇଚ୍ଛା ଓ ବୁଦ୍ଧି ଶକ୍ତି ବିନା ମୀମାଂସା କରାଯାଇପାରେ । ସୁତରାଂ, ସ୍ରଷ୍ଟା ରୂପେ ଏକ ସର୍ବବ୍ୟାପୀ ଓ ସର୍ବୋଚ୍ଚ ଶକ୍ତିର କଳ୍ପନା ଓ ବିଶ୍ୱାସକୁ ଦୂର କରିବା ଆବଶ୍ୟକ । ଏହା ହୋଇପାରିଲେ ଧର୍ମଯାଜକଙ୍କ ଦୌରାତ୍ମ୍ୟ ଲୋପ ପାଇବ ଯେହେତୁ 'ଧର୍ମ ଓ ଈଶ୍ୱର' ନାମରେ ଏମାନେ ସକଳ ଅତ୍ୟାଚାର କରି ଚାଲିଛନ୍ତି ।

ଏହିପରି ଏକ ପ୍ରକୃତି-ସ୍ୱାତନ୍ତ୍ର୍ୟବାଦୀ ତଥ୍ୟର କଳ୍ପନା ବିଜ୍ଞାନ ଯୁଗର ଆରମ୍ଭ ପୂର୍ବରୁ ଜାତ ହୋଇସାରିଥିଲା । ସମ୍ରାଟ ନେପୋଲିଅନଙ୍କ ରାଜତ୍ୱରେ ଗାଣିତିକ ଲାପ୍‌ଲାସ୍ ଏପରି ଏକ ତଥ୍ୟର ପ୍ରକାଶ କରିଥିଲେ । ନେପୋଲିଅନ ପଚାରିଲେ—'ଲାପ୍‌ଲାସ୍, କାହିଁ ଏଥିରେ ଈଶ୍ୱରଙ୍କ ନାମର ବି ଉଚ୍ଚାରଣ ନାହିଁ ?' ଲାପ୍‌ଲାସ୍ ଉତ୍ତର ଦେଲେ— 'ମହାରାଜ, ସୃଷ୍ଟି-ତତ୍ତ୍ୱକୁ ମୀମାଂସା କରିବା ପାଇଁ କାହିଁ କେଉଁଠି ଈଶ୍ୱରଙ୍କର ଆବଶ୍ୟକତା ମୁଁ ଉପଲବ୍ଧି କରିନାହିଁ ।'

ବୈଜ୍ଞାନିକ ଗେଟେ ଓ ଲାମାର୍କ ଆଦି ଭିନ୍ନ ଭିନ୍ନ ଉପାୟରେ ଏହି ଜଡ଼ାଦ୍ୱୈତବାଦୀ ତଥ୍ୟର ଗବେଷଣା କରିଥିଲେ । ପରନ୍ତୁ ସର୍ବ-ପ୍ରଥମେ ଚାର୍ଲସ୍ ଡାରଉଇନ୍ ବିକାଶ ତଥ୍ୟକୁ ଏକ ପୂର୍ଣ୍ଣ ରୂପ ଦେଇ ପ୍ରକାଶ କଲେ । ଡାରଉଇନ୍‌ଙ୍କ ପୂର୍ବରୁ ପ୍ରାକୃତିକ ବିକାଶ (*Cosmic Evolution*) ର ପ୍ରଚାର କିଛି କିଛି ହୋଇଥିଲା । ଏହି ବିକାଶ ଅନୁଯାୟୀ ପ୍ରାକୃତ-ଦ୍ରବ୍ୟ (*Matter*) ରେ ନିରନ୍ତର ଗତି ହୋଇ ହୋଇ ସେଥିରୁ ସମସ୍ତ ସୌରଜଗତ ସୃଷ୍ଟି ହେଲା । ଡାରଉଇନ୍ ଏହା ଉପରେ ଜୀବନ-ବିକାଶ (*Biological Evolution*) ତଥ୍ୟ ଆରମ୍ଭ କଲେ । କୌଣସି ବୁଦ୍ଧି ଓ ଇଚ୍ଛା ଶକ୍ତିର ବିନା ସହାୟତାରେ ଯେପରି ପ୍ରାକୃତ-

ଦ୍ରବ୍ୟରୁ ସମସ୍ତ ସଂସାର ସୃଷ୍ଟି ହେଲା, ସେହିପରି କୌଣସି ଗୋଟିଏ ଯୋନିରେ ବିକାଶ ଘଟି ୨ ବିଭିନ୍ନ ଯୋନି ହୋଇ ମନୁଷ୍ୟର ଜୀବନ-ବିକାଶ ଘଟିଲା । ଜଡ଼ତତ୍ତ୍ୱରୁ ସଂସାର ଓ ମନୁଷ୍ୟ ସର୍ଜନା ହେବାପରେ ମନୁଷ୍ୟ ଠାରେ ବୁଦ୍ଧି ସଂଗ୍ରହ କରାଇବା ଆବଶ୍ୟକ । ଏଥିପାଇଁ ହର୍ବର୍ଟ୍ ସ୍ପେନସର୍ ଆଦି କେତେକ ପଣ୍ଡିତ 'ମାନସିକ ବିକାଶ' ନାମରେ ଏକ ତଥ୍ୟ ଗଢ଼ିଲେଯେ ମନୁଷ୍ୟ, ଅସଭ୍ୟ ଓ ଜ୍ଞାନହୀନ ଅବସ୍ଥାରୁ ବିକାଶ ତଥ୍ୟରେ ବର୍ତ୍ତମାନର ସଭ୍ୟ ଅବସ୍ଥାରେ ପହଂଚିଲା । ଏହି ଶେଷୋକ୍ତ 'ମାନସିକ ବିକାଶ'ର ସମ୍ୟକ ଆଲୋଚନା କରିବାହିଁ ଏହି ଅଧ୍ୟାୟର ଉଦ୍ଦେଶ୍ୟ ଯେହେତୁ ବେଦକୁ ଅନାଦି ଓ ନିତ୍ୟଜ୍ଞାନ ବୋଲି ସ୍ୱୀକାର କରୁଥିବା ବେଳେ ଓ ଆଦିସୃଷ୍ଟି ବେଳେ ଏହି ଜ୍ଞାନ-ଭଣ୍ଡାର ଏକ ଐଶ୍ୱରୀୟ ପ୍ରେରଣା ବଳରେ ସାତ୍ତ୍ୱିକ ଋଷିଙ୍କ ଠାରେ ପ୍ରକାଶିତ ହୋଇଥିଲା ବୋଲି କହୁଥିବା ବେଳେ, 'ମାନସିକ ବିକାଶ' ବୋଲି କୌଣସି ତଥ୍ୟକୁ ସ୍ୱୀକାର କରିବା ସଂଭବ ନୁହେ ।

## ବିକାଶବାଦ ଏକ ବିଳାସୀ କଳ୍ପନା

ପୂର୍ବରୁ କୁହାଯାଇଛି ଯେ ବିକାଶବାଦ ଏକ ପ୍ରତିକ୍ରିୟାବାଦ । ୟୁରୋପରେ ଖ୍ରୀଷ୍ଟିଆନ ଧର୍ମଯାଜକମାନେ ବୁଦ୍ଧିବାଦୀ ବୈଜ୍ଞାନିକଙ୍କ ଉପରେ ଜୁଲୁମ କରିବା ଫଳରେ ଏହାର ପ୍ରତିକ୍ରିୟା ସ୍ୱରୂପ ବୈଜ୍ଞାନିକ ମାନେ ବିକାଶବାଦ ନାମକ ତଥ୍ୟ ଅବତାରି କରିଥିଲେ । ବିକାଶବାଦ ଅଦ୍ୟାପି ଏକ ତଥ୍ୟ ଅବସ୍ଥାରେ ରହିଛି । କୌଣସି ପୂର୍ଣ୍ଣ ସିଦ୍ଧାନ୍ତ ରୂପେ ଏହା ସ୍ୱୀକୃତ ହୋଇ ପାରିନାହିଁ । ଡ଼ାରବିନ୍‌ଙ୍କ ଅର୍ଦ୍ଧିର ଯୋନି-ବାଦ ବା ଆରଂଭରେ ଗୋଟିଏ ଯୋନିରୁ ପରେ ୨ ସମସ୍ତ ଯୋନିର ଉତ୍ପତ୍ତି ହୋଇଥିବା ତଥ୍ୟ ଅଯୌକ୍ତିକ ବୋଲି ପ୍ରମାଣିତ ହୋଇ ସାରିଛି

ସୃଷ୍ଟି ଆରମ୍ଭରୁ ମନୁଷ୍ୟ, ପଶୁ, ପକ୍ଷୀ, କୀଟ ପତଙ୍ଗାଦି ସମସ୍ତ ଯୋନିର ଜୀବ ଜନ୍ମ ହୋଇଥିଲେ। ସେ ସମସ୍ତେ ନିଜ ନିଜ କର୍ମଫଳ ଅନୁଯାୟୀ ପରବର୍ତ୍ତୀ ଜନ୍ମରେ ଅନ୍ୟ ଅନ୍ୟ ଯୋନି ଭୋଗ କରି ଆସୁଛନ୍ତି। ଏହାର ନାମ ବୈଦିକ କର୍ମଫଳ-ସିଦ୍ଧାନ୍ତ। ଏହି ଧାରଣା ସୃଷ୍ଟି ଆରମ୍ଭରୁ ଚାଲି ଆସିଛି। ଏହାକୁ ନ ମାନି ବିକାଶବାଦକୁ ମାନିଗଲେ ବା ଜୀବର କର୍ମଫଳ ନିର୍ବିଶେଷରେ ଯୋନିରେ ବିକାଶ ଘଟେ ବୋଲି ବିଶ୍ୱାସ ରଖିଲେ, କୌଣସି ଦାର୍ଶନିକ ବା ପରଲୌକିକ ତତ୍ତ୍ୱ ମୀମାଂସିତ ହୋଇ ନପାରେ। ଡାରୱିନ୍‌ଙ୍କ ମୁଖ୍ୟ ଯୁକ୍ତି ହେଉଛି ଯେ ବିଭିନ୍ନ ଯୋନିରେ କ୍ରମ ପୂର୍ବକ ସାମଂଜସ୍ୟ ଥିବାରୁ ଗୋଟିଏ ଯୋନିରେ ଉନ୍ନତି ଘଟି ଅନ୍ୟ ଅନ୍ୟ ସମସ୍ତ ଯୋନି ଉତ୍ପତ୍ତି ହେବା ସମ୍ଭବ। ଗୋଟିଏ ଯୋନିରେ ଯେଉଁ ସବୁ ଅବୟବର ଆବଶ୍ୟକତା ଅନୁଭୂତ ହୁଏ ସେସବୁ ଉତ୍ପନ୍ନ ହୁଏ ଓ ଅନ୍ୟ ସମସ୍ତ ନଷ୍ଟ ହୋଇଯାନ୍ତି। ଏହିରୂପେ ଉନ୍ନତ ଜୀବ ସୃଷ୍ଟି ହୁଅନ୍ତି। ଏହା ହେଉଛି ଉନ୍ନତି ବା ବିକାଶର ପ୍ରଣାଳୀ। ଜୀବମାନଙ୍କ ମଧ୍ୟରେ କ୍ରମ ପୂର୍ବକ ସାମଂଜସ୍ୟ ଥିବା କଳ୍ପନା ବହୁ ସଂଭାବନା ଓ ସଂଦେହ ଉପରେ ପ୍ରତିଷ୍ଠିତ *। ଏପରିକି ଜଡ଼ବାଦୀ ତତ୍ତ୍ୱର ପ୍ରଧାନ ପୃଷ୍ଠପୋଷକ ଅର୍ନେଷ୍ଟ୍ ହକେଲ୍ ମଧ୍ୟ ଏହି କ୍ରମବଦ୍ଧତାରେ ସଂଦେହ ପ୍ରକାଶ କରିଛନ୍ତି। ଏହି କ୍ରମ ପରିପୂର୍ଣ୍ଣ ନୁହେ ଓ ଏହାର ମଧ୍ୟବର୍ତ୍ତୀ ବହୁ ଅଙ୍କୁଡ଼ି ଏବେ ସୁଦ୍ଧା ଜ୍ଞାତ ନୁହେ।

---

* *The factors of evolution of man partake largely of the nature of 'may be's which have no permanent position in Science - Ideals of Science & Faith by Prof. Thomson & Patrick.*

ବିଭିନ୍ନ ଜୀବ ମଧ୍ୟରେ ଯଦିବା କୌଣସି ସାମଂଜସ୍ୟ ରହିଛି ସେଥିରୁ ଏତିକି ମାତ୍ର ଅନୁମିତ ହୁଏ ଯେ ଗୋଟିଏ କୁମ୍ଭାର ଦ୍ୱାରା ଗଢ଼ା ବିଭିନ୍ନ ଘଡ଼ି ମଧ୍ୟରେ ଯେପରି କେତେକାଂଶ ସମାନତା ଦେଖାଯାଏ ସେହିପରି ଏକମାତ୍ର ସ୍ରଷ୍ଟାଙ୍କ ସୃଷ୍ଟି ହେବାହେତୁ ଏସବୁ ଜୀବଙ୍କ ମଧ୍ୟରେ ସାମଂଜସ୍ୟ ଦେଖିବାକୁ ମିଳେ । ଗୋଟିଏ ଯୋନିରେ କେତେକ ଅବୟବ ଅନାବଶ୍ୟକ ମନେହେଲେ ସେସବୁ ନଷ୍ଟ ହୋଇ ନୂଆ ଅବୟବ ସୃଷ୍ଟି ହେବାରୁ ଉନ୍ନତ ଯୋନି ଉତ୍ପନ୍ନ ହୁଏ ବୋଲି ଯେଉଁ ଯୁକ୍ତି ଦିଆ ଯାଇଛି, ତାହା ବି ଏକ କଳ୍ପନା ମାତ୍ର । ଏପରି ହେଲେ ଅନୁନ୍ନତ ଜୀବମାନଙ୍କର ସତ୍ତା ଆଉ ରହନ୍ତା ନାହିଁ, ସମସ୍ତେ ଉନ୍ନତ ଅବସ୍ଥାରେ ପହଂଚିଯାନ୍ତେ । ଆଜି କାଲି ବି ସମୁଦ୍ରରେ ଅମିବା ପରି ଇନ୍ଦ୍ରିୟହୀନ ଛୋଟ ୨ ଜୀବ ରହିଛନ୍ତି କାହିଁକି ? ଏମାନଙ୍କ ବିକାଶ ଏତିକିରେ ମାତ୍ର ଶେଷ ହୋଇଛି କାହିଁକି ?

ନିଜ ୨ ଠାରେ ଆବଶ୍ୟକତା ଉତ୍ପନ୍ନ ହେବା ସଙ୍ଗେ ୨ ଯଦି ନୂତନ ଅବୟବ ସୃଷ୍ଟି ହୋଇ ଯୋନିରେ ବିକାଶ ଘଟିଯାଏ, ତାହାହେଲେ ମନୁଷ୍ୟ ଆଜି ଉଡ଼ିବା ଲାଗି ପକ୍ଷ ଚାହିଁଲେ ତାହାକୁ ପକ୍ଷ ମିଳିଯାନ୍ତା । କେଉଁଠି ଆଉ ନ୍ୟାୟ ରହନ୍ତା ନାହିଁ, ଯେ ଯାହା ଚାହାନ୍ତା ତା ପାଆନ୍ତା । ମତ୍ସ୍ୟ ଜାତୀୟ ଜୀବରୁ ଭେକ ଜାତୀୟ ଓ ସେଥିରୁ ବାନର ଓ ବନମନୁଷ୍ୟ ଜାତୀୟ ଜୀବ ଆଜିକାଲି କିହେତୁ ବିକାଶ ତଥ୍ୟରେ ଜାତ ହେଉ-ନାହାନ୍ତି ? ମା ପେଟରୁ ଆଜି ସମସ୍ତ ଅବୟବ ପୂର୍ଣ୍ଣ ମନୁଷ୍ୟ-ଶିଶୁ ଜନ୍ମ ହେଉଛି । ମନୁଷ୍ୟର ଠିକ୍ ପୂର୍ବର ଯୋନି ବନମନୁଷ୍ୟ ଆଜି ଦୁର୍ଲଭ ହୋଇ ପଡ଼ୁଛି । ଆଜିପାଇଁ ବୋଲି ବିକାଶ ତଥ୍ୟ ଅକାମୀ ହୋଇ ପଡ଼ିଲା କାହିଁକି ? ଅଧ୍ୟାପକ ଓ୍ୱେନ୍ ଠିକ୍ ଲେଖିଛନ୍ତି—'ମନୁଷ୍ୟ ନିଜ ପ୍ରକାରର ଏକମାତ୍ର ଜାତି ଓ ନିଜ ଜାତିର ଏକମାତ୍ର

ପ୍ରତିନିଧି × । 'ସାର୍ ଡାସନ୍ ଲେଖିଅଛନ୍ତି—'ପ୍ରାଚୀନତମ ଅସ୍ଥି ଅବଶେଷରୁ ମନୁଷ୍ୟର ଧାରଣା ମିଳେ ଓ ଏଥିରେ କୌଣସି ବିକାଶ ଘଟିନାହିଁ ବୋଲି ଏସବୁ ପ୍ରମାଣ କରନ୍ତି † ।'

ଜୀବନ ବିକାଶ ଠାରୁ ମାନସିକ ବିକାଶର କଳ୍ପନା ଅଧିକ କୁତୂହଳ ମନେହୁଏ । ବିକାଶପନ୍ଥୀମାନେ ବିଶ୍ୱାସ କରନ୍ତିଯେ ଗୋଟିଏ ନିକୃଷ୍ଟ ଯୋନିରୁ ବିକାଶ ତଥ୍ୟରେ ଯେପରି ମନୁଷ୍ୟ ଜାତ ହୋଇଯାଏ, ସେହିପରି ଆଦିମ ଜୀବର ବୁଦ୍ଧିରେ ବିକାଶ ଘଟି୍ ୨ ଆଜି ମନୁଷ୍ୟ ବୁଦ୍ଧି-ପୂର୍ଣ୍ଣ ଜୀବ ହୋଇ ଉଠିଛି । ସେମାନଙ୍କ ମତରେ ମନୁଷ୍ୟର ଆଦିମ ଅବସ୍ଥା ଅସଭ୍ୟ ଓ ପଶୁ ତୁଲ୍ୟ ଥିଲା । ଧିରେ ୨ ତାହାର ମାନସିକ ଅବସ୍ଥା ବିକାଶୋନ୍ମୁଖୀ ହୋଇ ଉଠିଛି । ଜୀବନ ବିକାଶ ତଥ୍ୟ ପରି ମାନସିକ ବିକାଶ ବି ଏକ ଯୁକ୍ତି ଓ ପରୀକ୍ଷଣହୀନ ତଥ୍ୟ ଅଟେ । କର୍ମ-ଫଳ ସିଦ୍ଧାନ୍ତର ବିରୋଧୀ ହେବାହେତୁ ଏହା ଯୁକ୍ତିଯୁକ୍ତ ନୁହେ । ଜୀବଠାରେ ଜବରଦସ୍ତ ମାନସିକ ଅଭିବୃଦ୍ଧି ହେଉଥିଲେ ଲକ୍ଷ ୨ ବର୍ଷ ହେଲା ଗୋଟିଏ ନିର୍ଦ୍ଦିଷ୍ଟ ଜାତିର ଲୋକେ ଅସଭ୍ୟ ହୋଇ ପଡିଥାନ୍ତେ କାହିଁକି ? ଭାରତବର୍ଷର ଯେଉଁ ଜନଗୋଷ୍ଠୀକୁ ଆଦିବାସୀ ବା ଆଦିମ-ବାସୀ ବୋଲି କୁହାଯାଉଛି, ବିକାଶ ତଥ୍ୟରେ ସେମାନେ ସଭ୍ୟ, ଶିଷ୍ଟ

---

× *Man is the sole species of his genus and the sole representative of his species—Prof. Owen.*

† *The earliest known remains of man are still human and tell us nothing as to the previous stage of development—Sir J. W. Dawson.*

ନହୋଇ ଆଦିମ ଯୁଗରୁ ଏଭଳି ଅସଭ୍ୟ ଅବସ୍ଥାରେ ରହିଛନ୍ତି କାହିଁକି ? କୋଟି ୨ ବର୍ଷର ମନୁଷ୍ୟଙ୍କ ବଂଶଧର ଭାରତୀୟ ଜାତି ଆଜି ଦୁଇ ତିନି ହଜାର ବର୍ଷର ସଭ୍ୟତା-ସଂଭୂତ ୟୁରୋପୀୟଙ୍କ ଠାରୁ ଅନୁନ୍ନତ ବୋଲି କାହିଁକି ପରିଗଣିତ ହେଉଛନ୍ତି ?

ଜଣେ ପାଶ୍ଚାତ୍ୟ ପଣ୍ଡିତ * ଲେଖିଛନ୍ତି—'ଯଦି ମନୁଷ୍ୟ ଜାତିର ଇତିହାସ ଉତ୍ତରୋତ୍ତର ବିକାଶ ଅଡ଼କୁ ଯାଉଛି, ତାହାହେଲେ ଚୀନ ଦେଶର ଲୋକେ ପୂର୍ବେ ବାରୁଦ ଓ ସାମୁଦ୍ରିକ ଧ୍ରୁବ-ଦର୍ଶନ ସୂଚୀର ବ୍ୟବହାର କରୁଥିଲେ, କିନ୍ତୁ ବର୍ତ୍ତମାନ ସେସବୁ ଭୁଲିଗଲେ କିପରି ? ପିରାମିଡ଼ର ନିର୍ମାତା ମିଶର ଅଧିବାସୀ ଦିନେ ରେଖାଗଣିତ ବିଦ୍ୟାରେ ପଣ୍ଡିତ ଥିବାବେଳେ ବର୍ତ୍ତମାନ ସେଥିରେ ଅନଭିଜ୍ଞ ରହିଛନ୍ତି କିପରି ? ଜାଭା ଦ୍ୱୀପର ମନ୍ଦିରମାନଙ୍କୁ ଉଠା ଯାଇଥିବା ବିଶାଳ ୨ ପ୍ରସ୍ତର ଏବେ କିପରି ସେ ଉପରକୁ ଉଠାଯାଇ ପାରୁନାହିଁ ? ଏ ସବୁରୁ ସ୍ପଷ୍ଟ ହୁଏଯେ ବିକାଶ ଘଟୁନାହିଁ ବାସ୍ତବରେ ହ୍ରାସ ଘଟୁଛି ।'

ଏହିରୂପେ କେତେକ ବୈଜ୍ଞାନିକ ଓଲଟି ମତପ୍ରକାଶ କଲେଣି ଯେ ମନୁଷ୍ୟର ଆଦିମ ଅବସ୍ଥା ଅତ୍ୟନ୍ତ ଉନ୍ନତ ଥିଲା ଓ କ୍ରମଶଃ ଅବନତ ଅଡ଼କୁ ଗତି କରୁଛି । ସିଡ୍ନି କୋଲେଟ୍ ଲେଖିଛନ୍ତି—'ବିଜ୍ଞାନର ସ୍ପଷ୍ଟ ସାକ୍ଷ୍ୟ ଅଛିଯେ ମନୁଷ୍ୟ ଅବନତ ଅବସ୍ଥାରୁ ଉନ୍ନତକୁ ଆସିବା ପରିବର୍ତ୍ତେ ଉନ୍ନତରୁ ଅବନତ ଦିଗକୁ ଆସୁଛି † ।'

---

* *James Bowson.*

† *Science is equally explicit in its testimony that instead of man having slowly improved from the lower to the higher, the tendency is exactly in the opposite direction— The scripture of Truth By Sidney Collett.*

ଡ଼ାଃ ଵାଲେସ୍ ଯାହାଂକୁ ଡ଼ାରଵିନ୍‌ଙ୍କ ତଥ୍ୟର ଜଣେ ପ୍ରବଳ ସମର୍ଥକ ବୋଲି କୁହା ଯାଉଛି, ସେ ବି ଜ୍ଞାନ-ବିକାଶ ତଥ୍ୟକୁ ସ୍ୱୀକାର କରି ନାହାନ୍ତି । ବେଦର କିଂଚିତ ଅନୁଶୀଳନ ତାହାଂକୁ ଏଭଳି ମଂତବ୍ୟ ପ୍ରକାଶ କରିବାକୁ ବାଧ୍ୟ କରିଛି । ସେ ଲେଖିଛନ୍ତି—'ଅମ୍ଭମାନଙ୍କୁ ସ୍ୱୀକାର କରିବାକୁ ହେବଯେ ଯେଉଁ ଧର୍ମଗ୍ରନ୍ଥମାନେ ବେଦ-ମଂତ୍ରର ଉଚ୍ଚତମ ଆଦର୍ଶ ଓ ବିଚାରଧାରାକୁ ଗ୍ରହଣ ଓ ପ୍ରଚାର କରିଥିଲେ ସେମାନେ ଅମ୍ଭମାନଙ୍କର ଉଚ୍ଚରୁ ଉଚ୍ଚତର ଦାର୍ଶନିକ, କବି—ଅମ୍ଭମାନଙ୍କର ମିଲ୍‌ଟନ୍ ଓ ଟେନିସନ୍‌ଙ୍କ ଠାରୁ କୌଣସି ରୂପରେ ନ୍ୟୂନ ନଥିଲେ ✻ ।' ଡ଼ାଃ ଵାଲେସ୍ ସ୍ୱୀକାର କରିଛନ୍ତିଯେ କ୍ରମ ପୂର୍ବକ ଜ୍ଞାନ-ବୃଦ୍ଧିର କୌଣସି ପ୍ରମାଣ ଉପଲବ୍ଧ ନୁହେ † ।

ବିକାଶବାଦ ବା ବୈଦିକ କର୍ମଫଳ ସିଦ୍ଧାନ୍ତ, ଏ ଦୁଇ ମଧ୍ୟରୁ କୌଣସି ଗୋଟିକୁ ସ୍ୱୀକାର କରି ଅପରଟିକୁ ତ୍ୟାଗ କରିବାକୁ ହେବ । ଏକେତ ଜୀବର କର୍ମରେ ଭଲ ହେଉକି ଭୁଲ ହେଉ ସେ ଉନ୍ନତ ଯୋନି ପାଇ ଯାଉଥିବ ବୋଲି ବିଶ୍ୱାସ ରଖିବାକୁ ହେବ ବା ତାହାର କର୍ମଫଳ ଅନୁସାରେ ସେ ଉନ୍ନତ ବା ଅନୁନ୍ନତ ହୋଇ ଚାଲୁଥିବ ବୋଲି ମାନିବାକୁ ହେବ ।

ପ୍ରଥମଟିକୁ ମାନିବା ଅଯୌକ୍ତିକ ଓ ଅନ୍ୟାଯ୍ୟ ହେବ । କର୍ମଫଳ ତତ୍ତ୍ୱ ଏକ ଯୁକ୍ତିସଂଗତ ସିଦ୍ଧାନ୍ତ । ଏହି ସୃଷ୍ଟି ଏକ ଅଭ୍ରାନ୍ତ ନିୟମ

---

✻ *Vide Social Environment & Moral Progress By Dr. Wallace.*

† *There is therefore no proof of continuously increasing intellectual power—Do Do By Dr. Wallace.*

(*order*) । ସୁତରାଂ ଯେପର କର୍ମ ସେପର ଫଳ । କର୍ମାନୁଯାୟୀ ଜୀବର ଫଳପ୍ରାପ୍ତି ନହେଲେ ସୃଷ୍ଟିକୁ ଅନିୟମିତ ଓ ବିଶୃଂଖଳ ବୋଲି ମାନିବାକୁ ହେବ । ସୌର ଜଗତରେ, ଉଦ୍ଭିଦ ଓ ପ୍ରାଣୀ ଜଗତରେ, ପ୍ରତ୍ୟେକ ଅଣୁ ପରମାଣୁରେ ନିୟମ ଓ ଶୃଂଖଳା ଯେପରି ଅଭ୍ରାନ୍ତ ଭାବରେ କାମ କରୁଛି, ସେ ସବୁକୁ ଦେଖି କିଏ ବା କହିବଯେ ଏ ସୃଷ୍ଟି ଅନିୟମିତ ! ସୁତରାଂ କର୍ମଫଳ ସିଦ୍ଧାନ୍ତ ନିର୍ଭୁଲ । ଜୀବ କର୍ମ କରିବାରେ ସ୍ୱତନ୍ତ୍ର— ଟଙ୍କାଟିଏ ନେଇ ମୁଁ ସେଥିରେ ମଦ୍ୟପାନ କରିପାରେ ବା ଚାହିଁଲେ ସତ୍ପାତ୍ରରେ ଦାନ କରିପାରେ । ମୁଁ ମୋ ହାତକୁ ବଂକା ରଖିପାରେ, ଚାହିଁଲେ ସିଧା ରଖିପାରେ ବା ଉପରକୁ ଟେକି ରଖିପାରେ । ଅର୍ଥାତ୍ ଜୀବର କର୍ମ କରିବାରେ ପ୍ରତିବଂଧକ ନାହିଁ । ସେ ସ୍ୱେଚ୍ଛାରେ ତାହା କରିପାରେ । ଜୀବ ଯେତେବେଳେ କର୍ମ କରିବାରେ ସ୍ୱତନ୍ତ୍ର ଓ କର୍ମଫଳ ସିଦ୍ଧାନ୍ତ ଅନୁସାରେ କର୍ମର ଉଚିତ ଫଳ ପ୍ରାପ୍ତ ହୁଏ, ତାହାହେଲେ ଉତ୍ତମ କର୍ମ କରି ଜୀବ ଉତ୍ତମ ଫଳ ପାଇପାରେ ବା ମନ୍ଦକର୍ମ କରି ମଂଦ ଫଳ ପାଇପାରେ । ଏହି ନିୟମରେ ପଶୁ ପରଜନ୍ମରେ ମନୁଷ୍ୟ ହୋଇପାରେ ବା ମନୁଷ୍ୟ ପଶୁ ହୋଇପାରେ । ଏହି ନିୟମରେ କାଳ-ଗତରେ ବହୁ ସାମ୍ରାଜ୍ୟ ଗଢ଼ି ଉଠିଛି ଓ ବିଲୟ ହଉଛି । ବହୁ ସଂସ୍କୃତି ମୁଣ୍ଡ ଟେକିଛି ଓ ନଇଁଛି । କର୍ମ ଅନୁସାରେ ଉନ୍ନତ ବା ଅବନତ ହେଉଛି, ବିକାଶ ବା ହ୍ରାସ ହେଉଛି । କର୍ମ ଯାହା ହେଉନା କାହିଁକି ଜୀଇଁ ବିକାଶ ଯେ ଚାଲିଥିବ, ଏଥିରେ ଯୁକ୍ତି ନାହିଁ ।

## ପ୍ରତ୍ନତତ୍ତ୍ୱ କଳ୍ପିତ ନୁହେ

ବିକାଶବାଦର ଦୁର୍ବଳ ଭିତ୍ତି ଉପରେ ଆଶ୍ରୟ ନେଇ ନବୀନ ଐତିହାସିକମାନେ ପ୍ରସ୍ତରଯୁଗ, କାଂସ୍ୟଯୁଗ, ତାମ୍ରଯୁଗ ଆଦି ଯେଉଁ

ଯୁଗମାନଙ୍କର ଭ୍ରାନ୍ତ ପରିକଳ୍ପନା କରୁଛନ୍ତି, ସେ ସବୁକୁ ନିଜ ୨ ଭିତ୍ତିର ଦୁର୍ବଳତା ଯୋଗୁଁ ଧରାଶାୟୀ ହେବାକୁ ପଡୁଛି । ଯେଉଁ ଯୁଗକୁ ଐତିହାସିକ ମାନେ ନୂତନ ପ୍ରସ୍ତର ଯୁଗ ବୋଲି ଆଖ୍ୟା ଦେଇଛନ୍ତି, ତାହାର କାଳମାନ ସମ୍ବନ୍ଧରେ ବିଭିନ୍ନ ଐତିହାସିକ ବିଭିନ୍ନ ମତ ପୋଷଣ କରୁଥିଲେ ବି କେହିହେଲେ ସେହି ଯୁଗକୁ ପାଂଚ ହଜାର ବର୍ଷରୁ ଅଧିକ ପୁରୁଣା ବୋଲି ମତ ଦେଉନାହାନ୍ତି । ପରଂତୁ ପାଂଚ ହଜାର ବର୍ଷ ତଳେ ଭାରତ, ମିଶର, ଗ୍ରୀସ୍ ଆଦି ଦେଶମାନଙ୍କର ସଭ୍ୟତା ଉନ୍ନତିର ଚରମ ସୀମାରେ ପହଂଚି ଥିଲା । ସେହି ଯୁଗକୁ ଏମାନଙ୍କ ଭାଷାରେ ହୀରକ ଯୁଗ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ରାମାୟଣର ପୁଷ୍ପକ-ବିମାନ ଯୁଗକୁ ବା ଭୋଜରାଜାଙ୍କ ବିଦ୍ୟୁତ ଯନ୍ତ୍ର ପ୍ରଚଳନ ଯୁଗକୁ କେଉଁ ଯୁଗ ବୋଲି ଏହି ଐତିହାସିକମାନେ ନାମିତ କରୁଛନ୍ତି ? ପାଣିନିଙ୍କ ବ୍ୟାକରଣିକ କାଳକୁ ବା ଚରକଙ୍କ ଭେଷଜ ଯୁଗକୁ କେଉଁ ଯୁଗ ବୋଲି ଏମାନେ ଅଭିହିତ କରାଉଛନ୍ତି ? ଭାରତୀୟ ପ୍ରାଚୀନ ସଂସ୍କୃତକୁ ପୂର୍ବ ଓ ପଶ୍ଚିମର ସବୁ ପଣ୍ଡିତ ଆଜି ଏକ କଂଠରେ 'ପୃଥିବୀ ସଂସ୍କୃତିର ଜନନୀ' ବୋଲି ସଂବୋଧନ କରୁଛନ୍ତି । ପ୍ରାଚୀନ ସଭ୍ୟତାର ବହୁ ତଥ୍ୟ ଆଜି ବିସ୍ମୃତ ବୋଲି ମତ ଦେଉଛନ୍ତି † । ଋକ୍‌ବେଦ ମନୁଷ୍ୟ ଚିନ୍ତାଧାରାର ସର୍ବଶ୍ରେଷ୍ଠ ଅବଦାନ ବୋଲି ମାନୁଛନ୍ତି । ଯଦି ଏହି ଐତିହାସିକମାନେ କଳ୍ପିତ ପ୍ରସ୍ତର ଯୁଗ ପରେ ଭାରତୀୟ

---

†। *The ancient civilisation did possess secrets of science some of which modern world has recovered, extended and made rich and precise, but others are even not recovered-- Aurovindo.*

ବୈଦିକ ଯୁଗର ଆରଂଭ ବୋଲି ମାନି ନେଉଛନ୍ତି; ତାହାହେଲେ ସେମାନେ ଦୁଇଟି ପ୍ରଶ୍ନର ଉତ୍ତର ଦିଅନ୍ତୁ । ପ୍ରଥମତଃ, ପ୍ରସ୍ତରର ଜଂଗଲି ଯୁଗରୁ ସଭ୍ୟତାର ଏକ ଉଜ୍ଜ୍ୱଳତମ ବୈଦିକ ଯୁଗ ବିନା 'କ୍ରମ ବିକାଶ'ରେ ପହଂଚିଗଲା କିପରି ? ଦ୍ୱିତୀୟତଃ, ସେ ଉଜ୍ଜ୍ୱଳତମ ଯୁଗର ସିଦ୍ଧାନ୍ତ-ଭାସ୍କର ପୁନଶ୍ଚ ଅନ୍ଧକାରରେ ଆଜି ମିଳେଇ ଗଲା କିପରି ? ବିକାଶର ପଶ୍ଚାତରେ ଆଜି ଅର୍ଦ୍ଧ ସନ୍ତାନ କାହିଁକି ଧାର୍ଯ୍ୟ ଓ ନାସ୍ତିକତାରେ ଧସି ହେଉଛନ୍ତି ? ପାଂଚ ହଜାର ବର୍ଷତଳେ ଆମ୍ଭ ଆଦି ପିତୃ-ପୁରୁଷମାନେ ଏ ଦେଶରେ ଯେଉଁ ଦୀର୍ଘଜୀବନ ଯାପନ କରୁଥିଲେ, ଆମ ହାଡ଼ହାର ଜୀବନ କାଳ ତାହାର ପଂଚମାଂଶ ବି ହେଉନାହିଁ କାହିଁକି ? ଏହାର ସ୍ପଷ୍ଟ କାରଣ ଏହିଯେ କର୍ମ ଅନୁସାରେ ଜୀବକୁ କେତେବେଳେ ବିକାଶ ଓ କେତେବେଳେ ହ୍ରାସର ଫଳ ମିଳୁଛି । ଏହା ଛଡ଼ା ଆଉ ଯୁକ୍ତିବାଦୀ କାରଣ କିଛି ନାହିଁ ।

ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ଭୂ-ଖୋଦିତ ସାମଗ୍ରୀ ବିକାଶବାଦୀ ଯୁଗ-ମାନଙ୍କର ସଭ୍ୟତା ସମ୍ବନ୍ଧେ ଆଲୋକପାତ କରୁଛି ବୋଲି ଯୁକ୍ତି କରି ଯାଉଛନ୍ତି । ଅସ୍ତୁ, କୋରାପୁଟ ଜିଲ୍ଲାର କୋୟା ଅଂଚଳରେ ବୈଜ୍ଞାନିକ ଅନୁସଂଧାନ କଲାବେଳେ ଯଦି ମୁଁ ଗୋଟିଏ ଇଞ୍ଜିନ ଏବଂ ଯନ୍ତ୍ରପାତି କୌଣସି ସ୍ଥଳରେ ଭୁଲବଶତଃ ଛାଡ଼ିଦିଏ ଓ ମୋର ଜଣେ କୋୟା ଜାତୀୟ ଶ୍ରମିକ ବି ପାଖରେ ତାହାର ଗୋଟିଏ ଅନୁନ୍ନତ ହତିଆର ଛାଡ଼ି ଚାଲିଯାଏ, ବର୍ଷ ୨ ପରେ ଯନ୍ତ୍ର ଓ ହତିଆର ଉଭୟେ ପୋତି ହୋଇଯିବେ । ହଜାର ୨ ବର୍ଷ ପରେ ଜଣେ ପ୍ରତ୍ନତତ୍ତ୍ୱବିତ୍ ଭୂ-ଖୋଦନ କରୁ ୨ ଏହି ଦୁଇଟିକୁ ଦେଖିବେ । ପ୍ରଶ୍ନ ହୁଏ, ସେ ସେତେବେଳେ ମୋ ଯନ୍ତ୍ରପାତିକୁ ଦେଖି ଏହି ଯୁଗକୁ ଯାନ୍ତ୍ରିକ ଯୁଗ

ବୋଲି କହିବେ ନା ମୋ ଶ୍ରମିକର ହାତଆରକୁ ଦେଖି ପ୍ରସ୍ତର ଯୁଗ ବୋଲି କହିବେ ? ପ୍ରତି ଯୁଗରେ ଭିନ୍ନ ୨ ଦେଶରେ ସଭ୍ୟତାର ମାନ ଭିନ୍ନ ୨ ଥାଏ ; ଗୋଟିଏ ଦେଶ ମଧ୍ୟରେ ବି ଭିନ୍ନ ୨ ଗୋଷ୍ଠୀ ମଧ୍ୟରେ ସଭ୍ୟତାର ତାରତମ୍ୟ ଦେଖାଯାଏ । ଓଡ଼ିଶା ରାଜ୍ୟର ଅଦିବାସୀ ଓ ଅଣଆଦିବାସୀଙ୍କର ସଂଖ୍ୟାର ଅନୁପାତ ଦେଖିଲେ ଏହା ସ୍ପଷ୍ଟ ହୋଇଯିବ ।

## ଆଦ୍ୟ ଜ୍ଞାନ ପାଇଁ ପ୍ରେରଣା ଆବଶ୍ୟକ

ଜଡ ପଦାର୍ଥ ଏବଂ ଜଡ଼ ପଦାର୍ଥର ସାଧାରଣ ବା ରାସାୟନିକ ମିଶ୍ରଣରେ ଭିନ୍ନ ୨ ଜଡ଼ ପଦାର୍ଥମାନ ସୃଷ୍ଟି ହୋଇପାରେ ; କିନ୍ତୁ ସେଥିରୁ ଜୀବନ ଶକ୍ତି ଉତ୍ପନ୍ନ ହେବା କଳ୍ପନା କେବଳ କଳ୍ପନା ମାତ୍ର । ଜଡ଼ ଶକ୍ତି (*Energy*) ଜଡ଼ ପଦାର୍ଥମାନଙ୍କର ଧର୍ମ ବା ଗୁଣ (*Property*) ମାତ୍ର ; ଏହା ଜୀବନ-ଶକ୍ତି (*Life Power*) ନୁହେ । ଫୁଟବଲ୍ ଭିତରକୁ ପବନ ଫୁଙ୍କି ତାର ଅନ୍ତରସ୍ଥ ବାୟୁର ଜଡ଼ ଶକ୍ତିରେ କେତେ ଧନ ୨ ପରିବର୍ତ୍ତନ ଅଣି ପାରିଲେ ବି ତାହା ଏକ ଜୀବନ୍ତ ଶିଶୁ ହୋଇନପାରେ । ସୃଷ୍ଟି ରଚନାକୁ କେବଳ କେତେକ ଜଡ଼ ପଦାର୍ଥର ଆକସ୍ମିକ ମିଶ୍ରଣ କୁହାଯାଇ ନପାରେ । ବିଂଶ ଶତାବ୍ଦୀର ବୈଜ୍ଞାନିକମାନେ ବିଗତ ଦୁଇ ଶତାବ୍ଦୀର ଜଡବାଦ ତଥ୍ୟକୁ ପୂର୍ଣ୍ଣ ରୂପେ ଅସ୍ୱୀକାର କରି କହୁଛନ୍ତି-'ଏହି ସଂସାର ଏକ ଜଡ଼ ବସ୍ତୁ ନୁହେ । ଏହା ଏକ ସୂକ୍ଷ୍ମ ବିଚାର ଓ ଏଥିପାଇଁ ଏକ ବିଚାରବାନ୍ ବା ଭାବୁକ ଆବଶ୍ୟକ । ସୁତରାଂ ସଂସାରରେ ଏକ ସର୍ବୋଚ୍ଚ ଭାବୁକ ଓ ସର୍ବଜ୍ଞ ରହିଛନ୍ତି,

ଅସ୍ମମାନଙ୍କର ଜ୍ଞାନ ଯାହାଙ୍କର ଜ୍ଞାନର ଏକ କ୍ଷୀଣ ରୂପରେଖା ମାତ୍ର * ।'

୧୯୧୪ ଖ୍ରୀଷ୍ଟାବ୍ଦରେ ଲଣ୍ଡନର ପ୍ରସିଦ୍ଧ ବ୍ରାଉନ୍‌ସ ହଲ୍‌ରେ ସାର୍ ଅଲିଭର୍ ଲଜ୍, ଡ଼ାଃ ଫ୍ଲିମିଙ୍ଗ୍, ଅଧ୍ୟାପକ ବାରମଲ୍, ଅଧ୍ୟାପକ ଏଡ୍‌ୱାର୍ଡ୍, ଅଧ୍ୟାପକ ଜାନ୍ ଏଲେନ୍ ହାକର୍, ଅଧ୍ୟାପକ ହ୍ୱାଇଟହେଡ୍ ଓ ଫିଲିପ୍‌ସ ଥମ୍‌ସନ୍—ବିଂଶ ଶତାବ୍ଦୀର ଏହି ସାତଜଣ ପ୍ରଖ୍ୟାତ ବୈଜ୍ଞାନିକଙ୍କ ନେତୃତ୍ୱରେ ଯେଉଁ ବିଜ୍ଞାନ-ସପ୍ତାହ ଅନୁଷ୍ଠିତ ହୋଇଥିଲା, ସେଥିରେ ଉପରୋକ୍ତ ମନ୍ତବ୍ୟ ପ୍ରକାଶ କରି ଯାଇଛି । ଏହି ବୈଜ୍ଞାନିକଗଣ ଧର୍ମ ଓ ବିଜ୍ଞାନ କ୍ଷେତ୍ରରେ 'ବାବା ବାକ୍ୟଂ କ୍ୱଂ ପ୍ରମାଣଂ' ବିଶ୍ୱସୁଥିବା ଅନ୍ଧ-ବିଶ୍ୱାସୀମାନଙ୍କୁ ତିରସ୍କାର କରିବା ସଙ୍ଗେ ସଙ୍ଗେ ଧର୍ମ ଓ ବିଜ୍ଞାନର ସମନ୍ୱୟ କରିଛନ୍ତି । ସେମାନେ କହୁଛନ୍ତି ଧର୍ମ ଓ ବିଜ୍ଞାନ ଦୁଇଟିର କ୍ଷେତ୍ର ଭିନ୍ନ ; ପରନ୍ତୁ ଗୋଟିଏ ଅନ୍ୟଟିର ପରିପୂରକ । ଗୋଟିଏ ଈଶ୍ୱରସୃଷ୍ଟ ନିୟମମାନଙ୍କର ଅନୁଶୀଳନ କରେ ଓ ଅନ୍ୟଟି ଏହି ନିୟମରେ ଶୃଙ୍ଖଳିତ ହେବା ପାଇଁ ମନୁଷ୍ୟକୁ ଆହ୍ୱାନ କରେ । ଏହି ବୈଜ୍ଞାନିକମାନେ ହକେଲ୍ ଆଦି ମଧ୍ୟଯୁଗୀୟ ନାସ୍ତିକବାଦୀ ବୈଜ୍ଞାନିକମାନଙ୍କୁ ପୁରାତନ ଓ ଯୁକ୍ତିଶୂନ୍ୟ ବୋଲି ଘୋଷଣା କରିଛନ୍ତି † ।

---

* *This universe is not merely a thing, it is a thought and thought implies and necessitates a thinker. Hence there is, in this Universe, a Supreme thinker or Intelligence of which our own intelligence is but the faint copy or image — Science & Religion by Seven Men of Science.*

† *That is the old materialistic school, Hackel's school if you like, which, let me tell you, is hopelessly out-of-date & antiquated—Do Do by Seven Men of Science.*

ସୃଷ୍ଟି ରଚନାକୁ ମୀମାଂସା କରିବାକୁ ହେଲେ ଈଶ୍ୱର, ଜୀବ ଓ ପ୍ରକୃତି ଏହି ତିନିଙ୍କୁ ସ୍ୱତନ୍ତ୍ର ସତ୍ତା ରୂପେ ଗ୍ରହଣ କରିବାକୁ ହେବ। ଜଡ଼ ପ୍ରକୃତିରେ ଆକସ୍ମିକ ପରିବର୍ତ୍ତନ ଘଟି ସୃଷ୍ଟି ସୃଷ୍ଟ ହୋଇ ନପାରେ। ଜଣେ ବୈଜ୍ଞାନିକ ଠିକ୍ କହିଛନ୍ତି—'ବିନା ଚୈତନ୍ୟରେ ଜଡ଼ ପଦାର୍ଥମାନଙ୍କରେ ଚେତନା ଆସି ନପାରେ। ବିଜ୍ଞାନର ଏହି ନିୟମକୁ ପୃଥିବୀର ଆକର୍ଷଣ-ଶକ୍ତି ପରି ଅଟଳ ବୋଲି ମୁଁ ବିଶ୍ୱାସ କରେ †।' ବିଂଶ ଶତାବ୍ଦୀର ବୈଜ୍ଞାନିକମାନେ ଯାହାଙ୍କୁ ପ୍ରାକୃତିକ ନିୟମମାନଙ୍କର ନିୟନ୍ତ୍ରଣ ଓ ଧାରଣକର୍ତ୍ତା *(Controller & Sustainer of the Laws of Nature)* ବୋଲି ସମ୍ବୋଧନ କରିଛନ୍ତି, ବେଦରେ ତାହାଙ୍କୁ 'ଋତମ୍ଭର' *(Upholder of the Cosmic Laws)* ବୋଲି କୁହାଯାଇଛି। ଋକ୍‌ବେଦରେ 'ଋତସ୍ୟ ଗୋପା' (୧,୧,୮) ର ଅନୁବାଦ ଅଧ୍ୟାପକ ଗ୍ରିଫିଥ୍ ଲେଖିଛନ୍ତି—ପ୍ରାକୃତିକ ନିୟମର ରକ୍ଷକ *(Guard of the Laws Eternal)*।

ଜୀବନ ବିକାଶ ତଥ୍ୟର ପୁରୋଧା ଡାରୱିନ 'ବର୍ଗମାନଙ୍କ ଆଦି କାରଣ' ନାମକ ଗ୍ରନ୍ଥରେ ଲେଖିଛନ୍ତି—'ଏହି ପକ୍ଷର ଉତ୍କର୍ଷତା ଏହି ଯେ ଆରମ୍ଭ ବେଳେ ସ୍ରଷ୍ଟା ଏକ ବା ଅନେକ ଶରୀର ଭିତରକୁ ଜୀବନ ଫୁଙ୍କିଥିଲେ *।'

---

† *Dead matter cannot become living without coming under the influence of matter previously living. This seems to me as sure a teaching of Science as the Law of Gravitation—Vide The Nature & Origin of Life.*

* *There is a grandeur of this view of life having been originally breathed by the Creator into a few forms or into one—Origin of Species by Charles Darwin.*

ଏଠାରେ ଡ଼ାରୱିନ୍ ପରମାତ୍ମାଙ୍କୁ ଜୀବନର ଆଦିସ୍ରୋତ ବୋଲି ଗ୍ରହଣ କରିଛନ୍ତି । 'ଶରୀର ଭିତରକୁ ଜୀବନକୁ ଫୁଙ୍କିବା' କଥା ଲେଖିବାବେଳେ ସେ ଯେପରି ଏହି ଅନୁଭବ କରିଛନ୍ତି ତିନି ଦ୍ବୈତ ସତ୍ତାର ଅସ୍ତିତ୍ବ: ଶରୀର—ପ୍ରକୃତି, ଜୀବନ—ଆତ୍ମା, ସ୍ରଷ୍ଟା—ପରମାତ୍ମା । ଏଣୁ କୌଣସି ଏକ ନିକୃଷ୍ଟ ଜୀବଠାରୁ ଧୀରେ ଧୀରେ ମନୁଷ୍ୟ ଉତ୍ପନ୍ନ ହୋଇଛି ବୋଲି ଏକ ଯୁକ୍ତିହୀନ ତଥ୍ୟକୁ ମାନିଗଲେ ବି ଏହି ତଥ୍ୟର ଗବେଷକଙ୍କ ମତ ଅନୁସାରେ ଜୀବନ-ଦାନ ପାଇଁ ସ୍ରଷ୍ଟାଙ୍କ ବିଧାନକୁ ମାନିବାକୁ ହେବ ।

ଏହିପରି ଜ୍ଞାନ-ବିକାଶ ତଥ୍ୟକୁ ମାନିନେଲେ ବି ଅନ୍ତର୍ଜ୍ଞାନର ପ୍ରେରଣା ଦାତା ରୂପେ ସ୍ରଷ୍ଟାଙ୍କୁ ମାନିବାକୁ ହେବ । ତାହା ନହେଲେ ପଶୁ ଯୋନିରୁ ମନୁଷ୍ୟ ଯୋନିର ବିକାଶ ହେବା ବେଳେ ପଶୁ ଭିତରକୁ ଜ୍ଞାନ ଓ ବିବେକର ଉତ୍ସ ସ୍ପନ୍ଦିତ କଲା କିଏ ? ପଶୁ ଓ ମନୁଷ୍ୟ ଭିତର ସୀମାରେଖା (*line of demarcation*) କୌଣସି ଏକ ଚେତନ ଶକ୍ତିର ବିନା ସାହାଯ୍ୟରେ ଅତିକ୍ରମ ହେଲା କିପରି ? କୌଣସି ପ୍ରେରଣା ବା ନିମିତ୍ତ ବିନା ଯଦି ବୁଦ୍ଧିର ବିକାଶ ସଂଭବ, ତାହାହେଲେ ସଂସାରରେ ଶିକ୍ଷା ଦାନ ପାଇଁ ଏ ବିପୁଳ ବ୍ୟବସ୍ଥା କାହିଁକି ? ରାଜା ଦ୍ବିତୀୟ ଫ୍ରେଡ଼େରିକ୍ ଓ ଅକବରଙ୍କ ସମୟରେ କେତେକ ପରୀକ୍ଷଣ କରି ଯାଇଥିଲା । ଜନ୍ମପରେ କେତେକ ଶିଶୁଙ୍କୁ ପୂର୍ଣ୍ଣ ରୂପେ ମନୁଷ୍ୟ ସମାଜର ବାହାରେ ରଖାଗଲା, ଯେପରି ମନୁଷ୍ୟଙ୍କ ଚାଲିଚଳନ, ରୀତି ରିବାଜର ପ୍ରଭାବ ସେମାନଙ୍କ ଉପରେ ପଡ଼ିବ ନାହିଁ । କେବଳ ନିୟମିତ ସମୟରେ କେତେକ ସ୍ତ୍ରୀ ଯାଇ ସେମାନଙ୍କୁ ଦୁଗ୍ଧ ପାନାଦି କରାଇ ଚାଲି ଆସୁଥାନ୍ତି । ବହୁ ବର୍ଷ ପରେ ଦେଖାଗଲାଯେ ଶିଶୁ ଗୁଡ଼ିକ ପୂର୍ଣ୍ଣ ଭାବରେ ମୂକ, ବଧିର ହୋଇ

ଛେଇନ୍ତି । ଏଥିରୁ ସ୍ପଷ୍ଟ ଜ୍ଞାତ ହୁଏଯେ ବିକାଶ-କ୍ରମରେ ବିନା ନିମିତ୍ତରେ ମନୁଷ୍ୟର ଜ୍ଞାନ ଉଦୟ ହେବା ସମ୍ଭବ ନୁହେଁ । ·

## ବେଦ-ଜ୍ଞାନର ପ୍ରକାଶକ 'ପୂର୍ବେଷାମପି ଗୁରୁଃ'

ବର୍ତ୍ତମାନ ପ୍ରମାଣିତ ହୋଇଛିଯେ ନିମିତ୍ତ ବା ପ୍ରେରଣା ନଥାଇ ଜ୍ଞାନ ଉପଲବ୍ଧ ହୋଇନପାରେ । ଅମ୍ଭେମାନେ ଗୁରୁଙ୍କ ଠାରୁ ଜ୍ଞାନ ଆହରଣ କରୁ । ଏହିଠାରେ ଗୁରୁ ଜ୍ଞାନର ନିମିତ୍ତ କାରଣ । ଗୁରୁ ବିନା କେହି ୨ ଗ୍ରନ୍ଥ ପଢ଼ି ଜ୍ଞାନାର୍ଜନ କରନ୍ତି । ଏଠାରେ ସେହି ୨ ଗ୍ରନ୍ଥର କର୍ତ୍ତା ଜ୍ଞାନର ନିମିତ୍ତ କାରଣ । କେହି ୨ ମହାପୁରୁଷ ଗୁରୁ କିଂବା ଗ୍ରନ୍ଥର ବିନା ସାହାଯ୍ୟରେ କୌଣସି ୨ ଗୂଢ଼ ଜ୍ଞାନ ଲାଭ କରନ୍ତି । ବୁଦ୍ଧ ଏହି ରୂପେ ବୁଦ୍ଧି ପାଇଥିଲେ । ଋଷିଗଣ ଏହିରୂପେ ମନ୍ତ୍ରର ଦର୍ଶନ କରନ୍ତି । ଏସବୁ ସ୍ଥଳରେ ଏକ ଅମାନୁଷିକ, ଅପୌରଷେୟ ସତ୍ତା ଜ୍ଞାନର ନିମିତ୍ତ କାରଣ ।

ସୃଷ୍ଟି ଆରମ୍ଭବେଳେ କୌଣସି ପାର୍ଥିବ ଗୁରୁ ବା ଗ୍ରନ୍ଥର ଅନୁପସ୍ଥିତିରେ ମନୁଷ୍ୟ ଜ୍ଞାନ ପ୍ରାପ୍ତ କରିଥିବାରୁ, ସମସ୍ତ ସୃଷ୍ଟିର ସ୍ରଷ୍ଟା ପରମାତ୍ମା ହିଁ ଏହି ଜ୍ଞାନର ନିମିତ୍ତ ବା ପ୍ରେରଣା-ଦାତା । ଯୋଗ ଦର୍ଶନରେ ଏଥିପାଇଁ ପରମାତ୍ମାଙ୍କୁ ସମ୍ବୋଧନ କରି ଯାଇଛି—'ପୂର୍ବେଷାମପି ଗୁରୁଃ *—ପ୍ରାଚୀନ ଗୁରୁମାନଙ୍କ ଗୁରୁ ଅର୍ଥାତ୍ ଆଦିସୃଷ୍ଟିର ଋଷିଙ୍କ ଠାରେ ଜ୍ଞାନର ପ୍ରକାଶକ । ଆଦିଜ୍ଞାନ ବେଦ ସମ୍ବନ୍ଧରେ ମହର୍ଷି ମନୁଙ୍କ

---

* ସ ଏଷ ପୂର୍ବେଷାମପି ଗୁରୁଃ କାଳେନାନବଚ୍ଛେଦାତ୍
(ଯୋଗ ଦର୍ଶନ ୨, ୩୧)

ବାକ୍ୟ ଏହି ଅଧ୍ୟାୟର ପ୍ରଥମରେ ଉଦ୍ଧାର କରାଯାଇଛି । ସୃଷ୍ଟି ଆରମ୍ଭରେ ସର୍ବଶ୍ରେଷ୍ଠ ଓ ସର୍ବପ୍ରଥମ ଗୁରୁ ମନୁଷ୍ୟଙ୍କ ମଧ୍ୟରେ ଜ୍ଞାନର ପ୍ରଥମ ପ୍ରକାଶ କରାଇଥିଲେ । ଏହି ଜ୍ଞାନହିଁ ବେଦ । ଯେଉଁମାନଙ୍କ ଠାରେ ଏହା ସର୍ବପ୍ରଥମେ ପ୍ରକାଶିତ ହୋଇଥିଲା ସେମାନଙ୍କୁ 'ସାକ୍ଷାତକୃତଧର୍ମୀ' ବୋଲି ତୃତୀୟ ଅଧ୍ୟାୟରେ ବର୍ଣ୍ଣନା କରାଯାଇଛି ।

ଏହି ସମୟରେ ଏହି ଯୁଗର ଜଣେ ପ୍ରସିଦ୍ଧ ବିଜ୍ଞାନବେତ୍ତା ଡ଼ାଃ ଫ୍ଲିମିଙ୍ଗଙ୍କ ବାଣୀ ମନକୁ ଆସେ । ସେ ଲେଖିଛନ୍ତି—'ନିଷ୍ଚୟାତ୍ମକ ଜ୍ଞାନ ପ୍ରାପ୍ତ କରିବାକୁ ହେଲେ ମନୁଷ୍ୟର ଦୁର୍ବଳ ମସ୍ତିଷ୍କର କ୍ଷୀଣ ପ୍ରକାଶରୁ ତାହା ପ୍ରାପ୍ତ ହୋଇ ନପାରେ ; ଏହା କେବଳ ସର୍ବଜ୍ଞ ଈଶ୍ବରଙ୍କ ସାକ୍ଷାତ୍ ପ୍ରଦତ୍ତ ଜ୍ଞାନରୁ ମନୁଷ୍ୟର ପରିମିତ ମସ୍ତିଷ୍କକୁ ଆସିପାରେ †।'

ବେଦର ନିଷ୍ଚୟାତ୍ମକ ଜ୍ଞାନର କିଂଚିତ୍ ମାତ୍ର ଉପଲବ୍ଧି କରି ପାଶ୍ଚାତ୍ୟ ପଣ୍ଡିତ ଫିଲିପ୍ସ ଲେଖିଛନ୍ତି—'ବେଦାନୁଯାୟୀ ଆର୍ଯ୍ୟଙ୍କ ଉଚ୍ଚ ଓ ଶୁଦ୍ଧ ବିଚାରର କେନ୍ଦ୍ର ପ୍ରାରମ୍ଭିକ ଈଶ୍ବରୀୟ ଜ୍ଞାନ ଅଟେ ❋।'

ମନୁଷ୍ୟର ଆଦି ଜ୍ଞାନ ବେଦର ପ୍ରକାଶ ପାଇଁ ପରମାତ୍ମାଙ୍କୁ ନିମିତ୍ତ ରୂପେ ଗ୍ରହଣ କରିବା ଛଡ଼ା ଅନ୍ୟ କୌଣସି ଉପାୟ ନାହିଁ । ଏହି

---

† *If we are to obtain more solid assurances, it connot come to the mind of man groping feebly in the dim light of an assisted reason but only by a communication made directly from the supreme mind to the finite mind of man—Science & Religion By Seven Men of Science.*

❋ *Philip's Teachings of the Vedas.*

ଅଭିଜ୍ଞାନର ବାହକ ରୂପେ ଆଦି ବୈଦିକ ଭାଷାର ଅପୂର୍ବ ରଚନା କୌଶଳ ଦେଖିଲେ, ବେଦର ଅପୌରୁଷେୟତା ସଂବନ୍ଧେ ମନ ଅତ୍ୟନ୍ତ ଶ୍ରଦ୍ଧାଳୁ ଓ ନିବଷ୍ଟ ହୋଇ ପଡ଼େ ।

— ପଂଚମ ଅଧ୍ୟାୟ —

## ଜ୍ଞାନ ଓ ଭାଷା

ଜ୍ଞାନ ଓ ଭାଷା ମଧ୍ୟରେ ଅଚ୍ଛେଦ୍ୟ ସଂପର୍କ ରହିଛି । ଭାଷା ଦ୍ୱାରା ଜ୍ଞାନ ପ୍ରକାଶିତ ହୁଏ । ଭାଷା ଜ୍ଞାନର ବାହକ । ଆମ୍ଭେମାନେ ବିଚାର ବା ଚିନ୍ତା କରିବାବେଳେ ଭାଷାର ଅଭ୍ୟନ୍ତରୀଣ ଅଭିବ୍ୟକ୍ତି ହୋଇଥାଏ । ଶବ୍ଦମାନଙ୍କର ସମଷ୍ଟି ଏକ ପୂର୍ଣ୍ଣ ଅର୍ଥକୁ ପ୍ରକାଶ କଲେ ବାକ୍ୟ ଗଠିତ ହୁଏ । ଆମେ ବିଚାର କଲାବେଳେ ପୂର୍ଣ୍ଣ ଅର୍ଥ ଉପଲବ୍ଧି କରୁଥିବା ହେତୁ ବାକ୍ୟ ଜରିଆରେ ବିଚାର କରୁଁ । ସ୍ୱପ୍ନରେ ବି ସେହି ବାକ୍ୟ ଦ୍ୱାରା ଆମେ ସ୍ୱପ୍ନର ଅନୁଭବ କରୁଁ । ଜ୍ଞାନ ସହ ବାକ୍ୟ ବା ଭାଷାର ସଂବନ୍ଧ ଅବିଚ୍ଛେଦ୍ୟ । ତେଣୁ ଆଦି-ଭାଷାର ମାଧ୍ୟମରେ ମନୁଷ୍ୟର ଆଦି-ଜ୍ଞାନ ପ୍ରକାଶ ପାଇଥିଲା ।

ପୂର୍ବ ଅଧ୍ୟାୟରେ ଆଲୋଚିତ ହୋଇଛିଯେ ମନୁଷ୍ୟର ଆଦି-ଜ୍ଞାନ କୌଣସି ଆକସ୍ମିକ ସ୍ୱଭାବ କିଂବା ବିକାଶର ପରିଣାମ ନୁହେ ।

ଏଥିପାଇଁ ଏକ ନିମିତ୍ତ (ଆଦି କାରଣ) ଆବଶ୍ୟକ । ବିଭିନ୍ନ ଐତିହାସିକ ମାନେ ମନୁଷ୍ୟର ଆଦିମ ଜନ୍ମସ୍ଥଳୀ ସମ୍ବନ୍ଧରେ ବିଭିନ୍ନ ମତ ପୋଷଣ କରୁଥିଲେ ମଧ୍ୟ, ଏହା ସର୍ବବାଦୀ ସମ୍ମତଯେ ମନୁଷ୍ୟର ଆଦିସୃଷ୍ଟି ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥଳରେ ହୋଇଥିଲା । ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥଳରେ ବସତି କରିଥିବା ମନୁଷ୍ୟଙ୍କ ଭାଷା ଏକ ଓ ନିର୍ଦ୍ଦିଷ୍ଟ ହୋଇଥିବା ସୁନିଶ୍ଚିତ । ଜ୍ଞାନ ଓ ଭାଷାର ଅଭେଦ୍ୟ ସଂପର୍କ ହେତୁ ଆଦି-ଜ୍ଞାନର ନିମିତ୍ତ ହିଁ ଆଦି-ଭାଷାର ନିମିତ୍ତ—ସେ ସେହି 'ପୂର୍ବେଷାମପି ଗୁରୁଃ' ।

## ଭାଷା ଜଗତ ଓ ଆଦ୍ୟ ଭାଷା

ଆଜି ସଂସାରରେ ଭାଷା ଅନେକ ଓ ଅସଂଖ୍ୟ । ବହୁ ଭାଷା ଲିଖିତ ଓ ଉଦାହରଣ ବହୁ କେବଳ କଥିତ । ଦେଖୁ ଦେଖୁ ଆଜି ଗୋଟିଏ ଜମିର ଗୋଟିଏ ଭାଷା ଉଚ୍ଚାରଣ ଦୃଷ୍ଟିରୁ କାଲି ଅନେକ ହୋଇ ଯାଉଛି । ଉଚ୍ଚାରଣ, ବ୍ୟାକରଣ ଓ ଭାବର ବ୍ୟାପକ ଭିନ୍ନତା ଦୃଷ୍ଟିରୁ ସଂସାରର ବିଭିନ୍ନ କୋଣରେ ପ୍ରଚଳିତ ଥିବା ବିଭିନ୍ନ ଭାଷାକୁ ଦେଖି ଆଜି ସହଜେ କି ଅନୁମାନ କରିହେବଯେ, ଏସବୁ ଗୋଟିଏ ମୂଳସ୍ରୋତରୁ ବିଚ୍ଛୁରିତ ! ଉଚ୍ଚାରଣ-ଭିନ୍ନତାର ସୂକ୍ଷ୍ମ ଜ୍ଞାନ ନଥିଲେ, କୌଣସି ଭାଷାର 'ସେଣ୍ଡ୍ରୋକୋଟସ୍' ଓ 'ସରକ' ଶବ୍ଦ ଦେଖି କିଏ ବିଚାର କରିବଯେ ଏହି ଦୁଇ ଶବ୍ଦ ଭାରତର 'ଚନ୍ଦ୍ରଗୁପ୍ତ' ଓ 'ଚରକ' ନାମର ଅପଭ୍ରଂଶ ? ସଂସ୍କୃତ ଭାଷାର 'ନନ୍ଦାନ' ଓ 'ତକ୍ଷଶୀଳା' ଶବ୍ଦରୁ ଚୀନ ଭାଷାର 'ଡୋମ' ଓ 'ଚଚଶିଥିଲୋ' ଶବ୍ଦ ଗୃହୀତ ବୋଲି ସହଜେ କି ବୁଝିହେବ ? ସେହି ଉଚ୍ଚାରଣ ଭେଦରୁ 'ଅଦିତ୍ୟାଳୟ' ଶବ୍ଦରୁ 'ଇଟାଲି', 'ଶର୍ମନ୍' ଶବ୍ଦରୁ 'ଜର୍ମାନୀ', 'ତ୍ରିକୋଣମିତି'ରୁ 'ଟ୍ରିଗୋନୋମେଟ୍ରି', 'ଗୋଲକ'ରୁ 'ଗ୍ଲୋବ୍' ଆଦି ଶବ୍ଦ ଗଠିତ ବୋଲି କହି ପାରିବା କି ସହଜ କଥା ?

ବେଦରେ ଜୀବାତ୍ମା ଓ ପରମାତ୍ମାଙ୍କୁ ଗୋଟିଏ ବୃକ୍ଷ ଉପରେ ବସିଥିବା ଦୁଇଟି ପକ୍ଷୀ ବୋଲି ଯେଉଁ ଆଲଂକାରିକ ବର୍ଣ୍ଣନା କରାଯାଇଛି ଏବଂ ସେଥି ମଧ୍ୟରୁ ଗୋଟିଏ ଫଳଭୋକ୍ତା ପକ୍ଷୀ ଫଳ ଖାଏ ଓ ଅନ୍ୟଟି ସାକ୍ଷ ହୋଇ ବସି ରହିଥାଏ ବୋଲି ଯେଉଁ ଦାର୍ଶନିକ ଭାବ ଫୁଟାଯାଇଛି, ସେଥିରୁ ବାଇବଲ୍ ଲିଖିତ ଏଡେମ୍ ଓ ଇଭ୍‌ଙ୍କ 'ବଗିଚାରେ ଫଳ ଖାଇବା' କିଂବଦନ୍ତୀ ଅନୁକରଣର ସାମଗ୍ରୀ ବୋଲି ବୁଝିବା ପାଇଁ ଭାଷା-ପରିବର୍ତ୍ତନତାର ସୂକ୍ଷ୍ମ ଜ୍ଞାନ ଥିବା ଆବଶ୍ୟକ । ଆଦିଭାଷାର ସୁସଂଯତ, କ୍ଲିଷ୍ଟ ଓ ମୌଳିକ ବ୍ୟାକରଣରୁ ଆଜିର ପ୍ରଚଳିତ ଭାଷାମାନଙ୍କ ଗଠନ ଏତେଦୂର ଅସଂଯତ, ସହଜିଆ ଓ କୃତ୍ରିମ ହୋଇ ପଡ଼ିଛି ଯେ, ସେ ସବୁକୁ ଗମ୍ଭୀର ଅଧ୍ୟୟନ ନକଲେ ସହଜେ ବୁଝି ହେବନାହିଁ ।

ଆର୍ଯ୍ୟ, ସେମେଟିକ ଓ ତୁରାନୀ ଭାଷା ପରିବାର ସବୁ ବିଶଦ୍ ଭାବରେ ପରିଚିତ ହେଲେ ସ୍ପଷ୍ଟ ଜଣାଯାଏ ଯେ, ଏହି ସକଳ ଭାଷା ଗୋଟିଏ ମୂଳ ଭାଷାରୁ ଗୃହୀତ । ଆର୍ଯ୍ୟ ପରିବାରର ସଂସ୍କୃତ, ଜନ୍ଦ୍, ଗ୍ରୀକ୍ ଆଦି ଭାଷା ଏତେଦୂର ସମାନ ଯେ, ଏସବୁ ଆଦିଭାଷାର ପ୍ରଥମ ଅପଭ୍ରଂଶ ବୋଲି ସହଜେ ଜଣାଯାନ୍ତି । ସଂସ୍କୃତ 'କସ୍ମୈ' ସ୍ଥଳରେ ଜଂଦ୍ ଭାଷାର 'କହମୈ', 'ଅସ୍ମୈ' ସ୍ଥଳରେ 'ଅହମୈ', 'ଯେଷାମ୍' ସ୍ଥଳରେ 'ଯଣାମ୍' ଆଦି ବ୍ୟବହୃତ ହୁଏ । ଏହା ଦେଖିଲେ ସ୍ପଷ୍ଟ ହୁଏ ଯେ, ଏହି ଦୁଇ ଭାଷା ଭାଷାପରିବର୍ତ୍ତନ-ସ୍ରୋତରେ ବହୁ ଦୂର ଆଗେଇ ନାହାନ୍ତି । ଆର୍ଯ୍ୟ ଭାଷାମାନଙ୍କ ମଧ୍ୟରେ ଭାବ ଓ ବ୍ୟାକରଣର ଯେପରି ନିକଟତମ ସଂପର୍କ ପରିଲକ୍ଷିତ ହୁଏ, ସେହିପରି ଆର୍ଯ୍ୟ ଓ ସେମେଟିକ୍ ପରିବାର ମଧ୍ୟରେ ସହଜାତ-ସାମ୍ୟ ପରିଦୃଷ୍ଟ ହୁଏ । ସେମେଟିକ୍ ପରିବାରର ଆରବୀ, ହିବ୍ରୁ ଇତ୍ୟାଦି ଭାଷାର ସ୍ତ୍ରୀ ଲିଙ୍ଗରେ 'ଅକାରାନ୍ତ' ପ୍ରୟୋଗ ବହୁ ପରିମାଣରେ

ଦେଖାଯାଏ । ସେହିପରି ତୁରାନୀ ପରିବାର ଅନ୍ତର୍ଗତ ଚୀନ, ଜାପାନୀ, ତୁର୍କୀ, ଦ୍ରାବିଡ ଆଦି ଭାଷାରେ ଆର୍ଯ୍ୟ ଭାଷାର ବହୁ ଅପଭ୍ରଂଶ ଦେଖିବାକୁ ମିଳେ । ସଂସ୍କୃତ 'ଦେବୀ' ଶବ୍ଦକୁ ଚୀନ ଭାଷାରେ 'ତୌ', ଜାପାନୀ ଭାଷାରେ 'ଦେ', ଦ୍ରାବିଡ (ତେଲୁଗୁ)ରେ 'ଦିବମ୍' ବ୍ୟବହୃତ ହୁଏ ।

ଅଧ୍ୟାପକ ମେକ୍ସମୁଲେର୍ ଏସବୁ ଉପଲବ୍ଧି କରି ଲେଖିଛନ୍ତି— 'ଯେଉଁ ସବୁକୁ ଆମେ ଭାଷା ପରିବାର ବୋଲି କହୁ, ସେସବୁ ଗୋଟିଏ ଆଦି ଭାଷାର ଦେଶଜ ବା ଅପଭ୍ରଷ୍ଟ ପ୍ରୟୋଗ ମାତ୍ର' † ।' ଭାଷା ବିଜ୍ଞାନ ପର୍ଯ୍ୟାଲୋଚନାକଲେ ଭାଷା ଧାରାର ଏକ ଓ ଅଦ୍ୱିତୀୟ ମୂଳ ଉତ୍ସ ପ୍ରତି ଧାରଣା ବଦ୍ଧମୂଳ ହୋଇଯାଏ ।

## ଆଦି ଭାଷାର ସ୍ୱରୂପ

ଯେଉଁ ମୂଳ ଭାଷାରୁ କାଳ ଗତିରେ ସଂସାରର ସମସ୍ତ ପ୍ରଚଳିତ ଭାଷା ଗଠିତ, ସେହି ଭାଷାର ସ୍ୱରୂପ କଣ ହୋଇପାରେ ? ପ୍ରଚଳିତ ଭାଷାମାନଙ୍କ ଠାରୁ ସେହି ଭାଷାର ଗଠନ କୌଶଳରେ କେଉଁ ଭିନ୍ନତା ରହିପାରେ ? ଭାଷା ବିଜ୍ଞାନର ଅତି ଗହନ ଭିତରକୁ ନଯାଇ ସାଧାରଣ ରୂପେ ଆଲୋଚନା କଲେ ଏହି ରହସ୍ୟ ଉପଲବ୍ଧ ହେବ । ଯେକୌଣସି ଭାଷାର ଲିଖିତ ଓ କଥିତ ଭାଷାର ସ୍ୱରୂପ ମଧ୍ୟରେ ଯେଉଁ ଭିନ୍ନତା ପରିଦୃଷ୍ଟ ହୁଏ, ସେହି ଭିନ୍ନତା ମୂଳ ଓ ଶାଖା ଭାଷାମାନଙ୍କ ମଧ୍ୟରେ ମଧ୍ୟ ଦେଖା ଯାଇଥାଏ । ପ୍ରଥମତଃ ଲିଖିତ ଭାଷା ସଂଶ୍ଳେଷଣାତ୍ମକ

---

† *What are called families of languages are only dialects of an earlier speech. (China's place in philosophy By Max-muller.)*

ଓ କଥିତ ଭାଷା ବିଶ୍ଳେଷଣାତ୍ମକ । ଅପାର ଲିଖିତ ବା ପଠିତ ଭାଷାର ଗୋଟିଏ ଶବ୍ଦ ବା ସଂକ୍ଷିପ୍ତ ଭାବକୁ ପ୍ରକାଶ କରିବାକୁ ହେଲେ, କଥିତ ଭାଷାରେ ବହୁ ଶବ୍ଦ ବିସ୍ତୃତ ଭାବରେ ପ୍ରୟୋଗ କରିବାକୁ ହୁଏ । ଦ୍ୱିତୀୟତଃ ଲିଖିତ ଭାଷାର ଉଚ୍ଚାରଣ ବିସ୍ତାରପୂର୍ଣ୍ଣ ଓ କ୍ଲିଷ୍ଟ ଅଟେ । କଥିତ ଭାଷାରେ ଏହା ଅସଂପୂର୍ଣ୍ଣ ଓ ସରଳ ।

ଆରଂଭରେ ମନୁଷ୍ୟର ଭାଷା ବାକ୍ୟରୂପ, ବିଭକ୍ତିଯୁକ୍ତ ଓ ସଂଶ୍ଳେଷଣାତ୍ମକ ଥିଲା । ବର୍ତ୍ତମାନର ଉପଲବ୍ଧ ଭାଷାମାନଙ୍କ ମଧ୍ୟରେ ସଂସ୍କୃତ ଭାଷାହିଁ ସର୍ବାଧିକ ବିଭକ୍ତିଯୁକ୍ତ ଓ ସଂଶ୍ଳେଷଣାତ୍ମକ । ଭାରତ-ୟୁରୋପୀୟ ପରିବାରର ଗ୍ରୀକ୍ ଓ ଲେଟିନ୍ ଭାଷାରେ ଏହି ରଚନା-ସାମ୍ୟ ଅନେକାଂଶରେ ପରିଦୃଷ୍ଟ ହୁଏ । ପରଂତୁ ଏହି ପରିବାରର ଅପେକ୍ଷାକୃତ ନବୀନ ଭାଷା ଇଁରାଜୀ, ହିଂଦି, ବଙ୍ଗଳା, ଓଡ଼ିଆ ଆଦି ଧୀରେ ୨ ବିଶ୍ଳେଷଣାତ୍ମକ ରୂପ ଧାରଣ କରୁଛନ୍ତି । ଇଁରାଜୀରେ ବିଭକ୍ତିର ସଂଖ୍ୟା ଅନିର୍ଦ୍ଦିଷ୍ଟ ଓ ଅଳ୍ପ ସଂଖ୍ୟକ ହୋଇ ପଡ଼ିଛି । ନାମ ଓ ସଂଜ୍ଞାବାଚୀ ଶବ୍ଦରେ ବହୁବଚନର ବିଭକ୍ତି ଚିହ୍ନ 'ଏସ୍' ( *s* ) ଓ ଅସଂପୂର୍ଣ୍ଣ କାଳମାନଙ୍କ କ୍ରିୟାରେ 'ଇଙ୍ଗ୍' (*ing*) ଛାଡ଼ିଲେ ପ୍ରାୟ ସମସ୍ତ ଇଁରାଜୀ ଭାଷାକୁ ଚୀନ ଭାଷାପରି ଏକାକ୍ଷରରେ ଲେଖି ହୋଇପାରେ । ଚୀନ ଭାଷା ଏକାକ୍ଷରାତ୍ମକ ଓ ବିଭକ୍ତିହୀନ ଭାଷାର ଏକ ଚରମ ଉଦାହରଣ । ପରଂତୁ ଏହି ଭାଷାର ପୂର୍ବ ସ୍ୱରୂପ ବିଭକ୍ତିଯୁକ୍ତ ରହିଥିବାର ସ୍ପଷ୍ଟ ଯାଇ ଅଛି । ଏପରିକି ଦକ୍ଷିଣ ଆଫ୍ରିକା ଓ ଆମେରିକାର ଆଦିମ ଅଧିବାସୀ 'ଇଥିଓପୋକ୍' ବିଭାଗ ଯାହାଙ୍କୁ କି ବନମନୁଷ୍ୟଙ୍କ ପ୍ରଥମ ବଂଶଧର ବୋଲି ବିଜ୍ଞାନବାଦୀମାନେ କଳ୍ପନା କରନ୍ତି, ସେହି ଲୋକଙ୍କ ଭାଷା ବି ସଂଶ୍ଳେଷଣାତ୍ମକ ଓ ଧାତୁଯୁକ୍ତ ଥିବା ଦେଖାଯାଏ । ସୁତରାଂ

ଏ ସବୁରୁ ସ୍ପଷ୍ଟ ଅନୁମିତ ହୁଏଯେ ଏକ ମୂଳ ଭାଷାର ସଂଶ୍ଳେଷଣାତ୍ମକ ବା ସଂକ୍ଷିପ୍ତ ରୂପରୁ ବର୍ତ୍ତମାନ ବିଭିନ୍ନ ଭାଷା ନାମରେ ବହୁ ବିଶ୍ଳେଷଣାତ୍ମକ ଓ ବିଭକ୍ତିହୀନ ରୂପ ଦେଖା ଦେଉଛନ୍ତି ।

ସେହିପରି ମୂଳ ଭାଷାର ଉଚ୍ଚାରଣ ପରବର୍ତ୍ତୀ ଭାଷାମାନଙ୍କ ଠାରୁ ପରିପୂର୍ଣ୍ଣ ଓ କ୍ଲିଷ୍ଟ ଥିବା କଥା ସହଜରେ ପ୍ରମାଣ କରି ଯାଇପାରେ । ଆଦିମ ଭାଷାର ଋ, ଷ, ଯ, ଜ୍ଞ, ଘ, ଛ, ଢ, ଧ, ଭ, ଙ, ଣ ଆଦି ବର୍ଣ୍ଣର ଶୁଦ୍ଧ ଉଚ୍ଚାରଣ ଆଜିକାଲି ବହୁ ଦେଶବାସୀଙ୍କ ପକ୍ଷରେ ଦୁଃସାଧ୍ୟ ହେଉଛି । ସଂସ୍କୃତ ଭାଷାର 'ଋତ' କୁ 'ହ୍ରୋଟ୍', 'ସିଂଧୁ' କୁ 'ହିନ୍ଦୁ', 'ବୃଦ୍ଧ'କୁ 'ବୁଢ଼', 'ଷଷ୍ଠ'କୁ 'ଛିଠ', 'ଜ୍ଞ' (ବୈଦିକ ଭାଷାର 'ଜ୍ଞ')କୁ 'ନୋ' (*Know*) ଆଦି ରୂପରେ ଅର୍ଥାତ୍, ସେମେତିକ ଓ ତୁରାଣୀ ପରିବାରର ବିଭିନ୍ନ ଭାଷା ମଧ୍ୟରେ ଉଚ୍ଚାରିତ ହେଉଛି ।

## ବୈଦିକ ଭାଷା ହିଁ ଆଦି ଭାଷା

ମୂଳ ଓ ପରବର୍ତ୍ତୀ ଭାଷାମାନଙ୍କ ମଧ୍ୟରେ ଥିବା ଉପରୋକ୍ତ ଦୁଇଟି ପାର୍ଥକ୍ୟକୁ ଅନୁଶୀଳନ କଲେ ଦେଖାଯିବଯେ ବୈଦିକ ଭାଷାହିଁ ମୂଳ ଭାଷା । ଏହି ଭାଷା ପୂର୍ଣ୍ଣରୂପରେ ସଂଶ୍ଳେଷଣାତ୍ମକ । ବୈଦିକ ବ୍ୟାକରଣ ଶାସ୍ତ୍ର ବା ଦର୍ଶନ ଶାସ୍ତ୍ରର ଗୋଟିଏ ୨ ସଂକ୍ଷିପ୍ତ ସୂତ୍ରର ଅର୍ଥକୁ ଅନ୍ୟାନ୍ୟ ଭାଷାରେ ଶହ ୨ ପୃଷ୍ଠାରେ ବି ପ୍ରକାଶ କରିବା ଅସମ୍ଭବ ବୋଧ ହେଉଛି । ଏହି ଭାଷାର 'ପଠତି' ଶବ୍ଦ ପାଇଁ ଇଂରାଜୀରେ *'He is reading'*, ହିନ୍ଦିରେ 'ବହ ପଢ଼ତା ହୈ', ଓଡ଼ିଆରେ 'ସେ ପଢ଼ୁଅଛି'—ଏତେଗୁଡ଼ାଏ ଶବ୍ଦ ପ୍ରୟୋଗ କରିବାକୁ ହୁଏ ।

'ପିପଠିଷ୍ୟତି' ଶବ୍ଦ ପାଇଁ ଇଂରାଜୀରେ '*He desires to read*', ହିନ୍ଦିରେ 'ବହ ପଢନେକୋ ଚାହତା ହୈ', ଓଡ଼ିଆରେ 'ସେ ପଢିବାକୁ ଚାହେଁ' ବୋଲି ବିଶ୍ଲେଷଣ କରି କହିବାକୁ ହୁଏ ।

ବୈଦିକ ଭାଷାର ଉଚ୍ଚାରଣ ବା ଧ୍ୱନି ବିସ୍ତୃତ ଓ ପରିପୂର୍ଣ୍ଣ । ଲେଟିନ ଭାଷାରେ ୨୦, ଫ୍ରେଞ୍ଚ୍‌ରେ ୨୪, ଇଂରାଜୀରେ ୨୬, ଗ୍ରେନସ୍‌ରେ ୨୭, ଆରବୀରେ ୨୮ ଆଦି ଉଚ୍ଚାରଣ ଥିବା ସ୍ଥଳେ ଏହି ଭାଷାର ଉଚ୍ଚାରଣ ସଂଖ୍ୟା ୪୭ । ପୁନଶ୍ଚ ଗୋଟିଏ ୨ ଉଚ୍ଚାରଣକୁ ହଳନ୍ତ, ହ୍ରସ୍ୱ, ଦୀର୍ଘ, ପ୍ଳୁତ ଓ ଉଦାତ୍ତ, ଅନୁଦାତ୍ତ, ସ୍ୱରିତ ଭେଦରେ ସମସ୍ତ ଉଚ୍ଚାରଣ ସଂଖ୍ୟା ସହସ୍ରାଧିକ ହୋଇପାରେ । ଉଚ୍ଚାରଣ ବା ଧ୍ୱନିର ଅପୂର୍ଣ୍ଣତା ଓ ଅଶୁଦ୍ଧତା ହେତୁ ଜଣେ ଇଂରାଜୀ 'ତୁମ୍'କୁ 'ଟୁମ୍' କହେ, ଜଣେ ଚୀନାବାସୀ 'ରୂପ'କୁ 'ଲୁପ' କହେ ବା ଜଣେ ଅଶିକ୍ଷିତ ଓଡ଼ିଆ 'ଜ୍ଞାନ'କୁ 'ଗ୍ୟାନ' କହେ ।

## ବୈଦିକ ଓ ସଂସ୍କୃତ ଭାଷା

ପ୍ରଚଳିତ ସଂସ୍କୃତ ଭାଷାଠାରୁ ବୈଦିକ ଭାଷା ଭିନ୍ନ । ଏହି ଭିନ୍ନତା ଅତ୍ୟନ୍ତ ପ୍ରଶସ୍ତ ନହେଲେ ବି ଏହି ଦୁଇ ଭାଷାକୁ ଏକ ବୋଲି କୁହା ଯାଇନପାରେ । ବୈଦିକ ଭାଷା ମନୁଷ୍ୟର ଆଦିଭାଷା ଓ ସଂସ୍କୃତ ଭାଷା ତାହାର ପ୍ରଥମ ସରଳୀକରଣ ବା ଅପଭ୍ରଂଶ । ବୈଦିକ ଭାଷାର ପୂର୍ଣ୍ଣରୂପ ଆଜି ଅଲଭ୍ୟ । ତାହାର ବ୍ୟାବହାରିକ ଭାଷା ହୁଏତ ବିସ୍ମୃତ ହୋଇସାରିଛି ବା ବିକ୍ଷିପ୍ତ ହୋଇ ସଂସାରର ବିଭିନ୍ନ ଭାଷାରେ ପ୍ରଚ୍ଛନ୍ନ ଓ ଅପଭ୍ରଷ୍ଟ ରୂପେ ରହି ଯାଇଛି । ଆର୍ଯ୍ୟ, ସେମେଟିକ୍ ଓ ତୁରାନୀ

ଭାଷାର ଶହ ୨ ଉପଭାଷାମାନଙ୍କରେ ପ୍ରଗଲ୍‌ଭ ଅନୁଶୀଳନ ଚଳାଇଲେ, ଏହାର ସ୍ୱରୂପ ହୁଏତ ନିର୍ଣ୍ଣୟ କରି ଯାଇପାରେ । ବୈଦିକ ଭାଷାର ଯାହା ଅବଶିଷ୍ଟ ରହିଛି, ତାହାହିଁ ବେଦ—ତାହାହିଁ ସେହି ଭାଷାର ପ୍ରାଣପିଣ୍ଡ ।

ବ୍ୟାକରଣ ଦୃଷ୍ଟିରୁ ଆଲୋଚନା କଲେ ବୈଦିକ ଓ ସଂସ୍କୃତ ଭାଷା ମଧ୍ୟରେ ପାର୍ଥକ୍ୟ ପରିଲକ୍ଷିତ ହୁଏ । ବେଦର ବହୁ ସ୍ଥଳରେ ସଂସ୍କୃତ ଭାଷାର ଭୂତକାଳବାଚୀ 'ଲିଟ୍' ଓ 'ଲଙ୍' 'ଲ'କାର ବର୍ତ୍ତମାନକାଳ ଅର୍ଥରେ ବହୁଳ ଭାବରେ ପ୍ରୟୋଗ କରି ଯାଇଛି । ପୁନଶ୍ଚ ସଂସ୍କୃତ ଭାଷାର 'ଲ'କାରମାନଙ୍କ ଛଡ଼ା ଆଉ କେତେକ 'ଲ'କାର ବେଦରେ ବ୍ୟବହୃତ ହେବା ଦେଖାଯାଏ ।

ବୈଦିକ ଓ ସଂସ୍କୃତ ଭାଷା ମଧ୍ୟରେ ପ୍ରଧାନ ପାର୍ଥକ୍ୟ ହେଉଛି ଯେ, ବୈଦିକ ଭାଷାର ଅକ୍ଷରାର୍ଥରୁ ଧାତ୍ୱର୍ଥ ଓ ଧାତ୍ୱର୍ଥରୁ ଶବ୍ଦାର୍ଥ ହେବାର ଅଭ୍ରାନ୍ତ କୌଶଳ ସଂସ୍କୃତ ଭାଷାର ପ୍ରତ୍ୟେକ ସ୍ଥଳରେ ପରିଲକ୍ଷିତ ହୁଏନାହିଁ । ସଂସ୍କୃତ ଭାଷାର ବହୁ ଶବ୍ଦ ଅକ୍ଷରାର୍ଥରୁ ନିଷ୍ପନ୍ନ ନହେବାରୁ, ସେ ସବୁର ଅର୍ଥ କରିବାରେ ନିପୁଣ ବୈଜ୍ଞାନିକତା ଉପଲବ୍ଧ ହୁଏନାହିଁ । ପରନ୍ତୁ ବୈଦିକ ଭାଷାର ଅକ୍ଷର, ଧାତୁ ଓ ଶବ୍ଦରେ ନିୟମିତତାର ଶୃଂଖଳା ଏତେଦୂର ନିଭୁଲ ଯେ, ତାହାକୁ ଐଶ୍ୱରୀୟ ଛଡ଼ା ମାନୁଷିକ ଓ ଅପୂର୍ଣ୍ଣ ବୋଲି କହିବା ଧୃଷ୍ଟତା ମାତ୍ର ।

## ଭାଷା ସୃଷ୍ଟି ସମ୍ବନ୍ଧେ ନବୀନ ଭାଷାବିତ୍

ପ୍ରାକୃତିକ ବିକାଶ, ଜୀବନ ବିକାଶ ଓ ଜ୍ଞାନ ବିକାଶ ତଥ୍ୟମାନ କଳ୍ପନା କରି ମଧ୍ୟଯୁଗୀୟ ବୈଜ୍ଞାନିକମାନେ ଯେଉଁରୂପେ ପ୍ରକୃତ

ଓ ତାହାର ଗଡର ସାହାଯ୍ୟରେ ସୃଷ୍ଟି ରଚନାର ବିଶ୍ଳେଷଣ କରିବାକୁ ଉଦ୍ୟମ କରିଛନ୍ତି, ସେହି ରୂପେ ମନୁଷ୍ୟର ଭାଷାକୁ ବିକାଶର ଫଳ ବୋଲି ସାବ୍ୟସ୍ତ କରିବାକୁ ଚେଷ୍ଟା କରିଛନ୍ତି । ଏଠାରେ ପୁନଃ ସ୍ପଷ୍ଟ କରିଦେବା ଉଚିତ ମନେହୁଏଯେ, ଏହି ଧରଣର ବୈଜ୍ଞାନିକମାନେ ଯେତେକୌଣସି-ମତେ ଗୋଟିଏ ପରଲୌକିକ, ଅଦୃଷ୍ଟ ଶକ୍ତିର ବିନା ସହାୟତାରେ ଓ ଉଚ୍ଚାରଣରେ ସୃଷ୍ଟିର ସକଳ ବ୍ୟାଖ୍ୟା କରିଦେବା ପାଇଁ ବ୍ୟାକୁଳ ହୋଇ ପଡ଼ିଛନ୍ତି । ଏଥିଲାଗି ଏମାନେ 'ବିକାଶ', 'ସ୍ୱଭାବ', 'ଅକସ୍ମାତ୍' ଆଦି କିଂଭୂତକିମାକାର ଶବ୍ଦମାନଙ୍କର ମୁହୁର୍ମୁହୁ ପ୍ରୟୋଗ କରିଛନ୍ତି ।

ମନୁଷ୍ୟର ଆଦିଭାଷାର ଉଦ୍‌ଗୀରଣକୁ ଏମାନେ ଅପୌରଷେୟ ବୋଲି ନମାନି କୃତ୍ରିମ ବୋଲି ଯୁକ୍ତି ବାଢ଼ିଛନ୍ତି । ଏଥିପାଇଁ ଏମାନଙ୍କୁ ଅନେକ ହାସ୍ୟାସ୍ପଦ ଉପାୟ ଅବଲମ୍ବନ କରିବାକୁ ପଡ଼ିଛି । କୋଇଲିର 'କୁହୁକୁହୁ' ଧ୍ୱନି, ବର୍ଷାର 'ଝର୍‌ଝର୍' ଶବ୍ଦ, ଘଣ୍ଟିର 'ଠନ୍‌ଠନ୍' ନାଦକୁ ଲକ୍ଷ୍ୟ କରି କେହି କଳ୍ପନା କରିଛିଯେ ଆଦିମାନବ ଏସବୁ ଶବ୍ଦରୁ ଭାଷାର ଆଦିତତ୍ତ୍ୱ ପାଇଲା । କେହି ବା କଳ୍ପନା କରିଛିଯେ, ହର୍ଷ-କ୍ରୋଧାଦି ମନୋଭାବରୁ ଯେଉଁ ଉଦ୍‌ଗାର ପ୍ରକାଶ ପାଇଲା ତାକୁ ଆଦିମ ମନୁଷ୍ୟ 'ହାୟହାୟ', 'ଓଃ ଓଃ', 'ବାହ୍‌ବାହ୍' ଆଦି ଧ୍ୱନି ପ୍ରକଟ କରୁ ୨ ଭାଷାର ମର୍ମ ପାଇଗଲା । କେହି ବା ଯୁକ୍ତି ବାଢ଼ିଛିଯେ 'ପ୍ରକୃତ' ମନୁଷ୍ୟକୁ ଭାଷାର ଶିକ୍ଷା ଦେଲା । ଯାହାକୁ ଯୁକ୍ତିର ଥଳକୂଳ ମିଳୁନାହିଁ ସେ ପ୍ରଚାର କରୁଛିଯେ, 'ଅକସ୍ମାତ୍' ମନୁଷ୍ୟକୁ ଭାଷାର ଜ୍ଞାନ ଚାଲି ଆସିଲା—ଏଥିପାଇଁ କୌଣସି ପ୍ରେରଣା ଶକ୍ତିର ଅପେକ୍ଷା ନଥିଲା ।

**ନବୀନ ମତମାନଙ୍କର ନବୀକରଣ**

ବାହାରର ଠନ୍‌ଠନ୍, ଧଡ଼୍‌ଧଡ଼୍, ମ୍ୟାଉଁମ୍ୟାଉ, ଫୁଁଫୁଁ ଶବ୍ଦରୁ ଯଦି ଭାଷାର ଭାବୁକତା, ବ୍ୟାକରଣର ବ୍ୟାପକତା ବା କାବ୍ୟର

ଲାଗିଥିବ ଆଦି ମନୁଷ୍ୟର ମନକୁ ଆପେ ଆପେ ଚାଲି ଆସିଲା, ତା'ହେଲେ ସେ ଜ୍ଞାନ ଆଜ ଶିଶୁର ମନକୁ ଚାଲି ଆସୁନାହିଁ କାହିଁକି ? ନଦୀ, ଜଂଗଲ, କୁଆ କୋଇଲିର ରବ ସଦ୍ୟଜାତ ଶିଶୁ ଆଜ ବି ଶୁଣୁଛି—ପଶୁପକ୍ଷୀ ସବୁ ଶୁଣୁଛନ୍ତି ।

'କ', 'ଙ' ଓ 'ହ'ର ଉଚ୍ଚାରଣ ଜନିତ ସଠିକ ଜ୍ଞାନ ନପାଇଥିଲେ ଆଦି ମନୁଷ୍ୟ 'କୁହୁକୁହୁ' କହିଲା କପରି ? ପୁଣି କୋଇଲିର 'କୁହୁକୁହୁ' ବା ବିରାଡ଼ିର 'ମ୍ୟାଉଁ ମ୍ୟାଉଁ' ଆଦି ଅବ୍ୟକ୍ତ ଭାଷା, ବର୍ଣ୍ଣାତ୍ମକ ଶବ୍ଦରେ ଆଦି ମନୁଷ୍ୟର କଂଠରୁ ଝରିଲା କପରି ? ସେ ବିରାଡ଼ି ଭଳି ମ୍ୟାଉଁ ମ୍ୟାଉଁ କହିବା ରଡ଼ି ପାରିଲା, ତାକୁ ପ୍ରଥମେ ବର୍ଣ୍ଣାତ୍ମକ କରିଲା କପରି ? ପୁଣି ବିରାଡ଼ିର 'ମ୍ୟାଉଁ ମ୍ୟାଉଁ' ସତେ କ'ଣ ଉଚ୍ଚାରଣ ଦୃଷ୍ଟିରୁ ଠିକ୍ ମ୍ୟାଉଁ ମ୍ୟାଉଁ ଶବ୍ଦ ! ବର୍ଣ୍ଣର ଉଚ୍ଚାରଣ ଶିଖିବା ପୂର୍ବରୁ ଆଦି ମାନବ ଶବ୍ଦର ଅନୁକରଣ କରି ପାରିଲା କପରି ? ଶବ୍ଦାନୁକୃତିରେ ଯଦିଓ କେତୋଟି ବାହ୍ୟ ଶବ୍ଦର ଉଚ୍ଚାରଣ ଶିଖିପାରିଲା—ବୈଦିକ ଦେବଭାଷାର ଅକ୍ଷରେ ଅକ୍ଷରେ, ଶବ୍ଦେ ଶବ୍ଦେ ଅପୂର୍ବ ଶୃଂଖଳାର ଜ୍ଞାନ ପାଇଲା କେଉଁଠୁ ?

'ପ୍ରକୃତି' (*Nature*) ଯଦି ଆଦିମ ମନୁଷ୍ୟକୁ ଭାଷାର ଜ୍ଞାନ ଶିଖାଇଲା, ତେବେ ଏ 'ପ୍ରକୃତି' କି ଦ୍ରବ୍ୟ ? ଏହା ଯଦି ବାହ୍ୟ ଜଗତର ଜଡ଼ ଦ୍ରବ୍ୟ (*Matter*), ତାହାହେଲେ ଏହି ଜଡ଼ଦ୍ରବ୍ୟ କେଉଁ ଚେତନା ବଳରେ ମନୁଷ୍ୟର 'ଗୁରୁ' ହେଲା ? ଏହା କେଉଁ ବିଜ୍ଞାନ ? ଏ ପ୍ରକୃତି ଯଦି ଏକ ଚେତନଶୀଳ ଜ୍ଞାନ ଶକ୍ତି, ତାହାହେଲେ ଆଦିମ ମନୁଷ୍ୟକୁ ଭାଷାର ଜ୍ଞାନ ଶିଖାଇଲା—ଏକ ଅସୀମ ଅପୌରୁଷେୟ ଶକ୍ତି । ପରିପୂର୍ଣ୍ଣ ଭାଷା-ଶାସ୍ତ୍ରର ପ୍ରେରଣା ଦାତା ସର୍ବଜ୍ଞ ଛଡ଼ା ଆଉ କେହି ହୋଇ ନପାରନ୍ତି । ଏଠାରେ ଆଉ ବାଦବିସଂବାଦର ଆଶଂକା ନାହିଁ ।

ଯଦି କହ, ସ୍ୱଭାବରୁ ଆଦି ମନୁଷ୍ୟ ବର୍ଣ୍ଣୋଚ୍ଚାରଣ-ଶିକ୍ଷା ପାଇଲା, ତାହାହେଲେ ଏ 'ସ୍ୱଭାବ' ଆସିଲା କେଉଁଠୁ ? ପ୍ରଥମେ ତ ସେ ସେଥିରେ ଅନଭିଜ୍ଞ ଥିଲା ଅର୍ଥାତ ତାହାଠାରେ ବର୍ଣ୍ଣୋଚ୍ଚାରଣ ଜ୍ଞାନର ଅଭାବ ଥିଲା । କୌଣସି ସଂଗୃଳକ ଶକ୍ତିର ବିନା ସହାୟତାରେ 'ଅଭାବ'ରୁ 'ସ୍ୱଭାବ' ଆସିଲା କିପରି ?

ଅବ୍ୟକ୍ତ ଧ୍ୱନି କରୁ କରୁ ମନୁଷ୍ୟ ଯଦି 'ବିକାଶ'ର ତଥ୍ୟ ଅନୁଯାୟୀ ଦର୍ଶନ, କାବ୍ୟ ଓ ବ୍ୟାକରଣର ବ୍ୟାପକ ଭାଷା ପାଇ ପାରିଲା, ତେବେ ସେହି ବିକାଶର ବଳରେ ବିକଶିତ ନହୋଇ ଆଜି ଆମେ କାହିଁକି ଆମ୍ବିକ-ସାହିତ୍ୟକୁ ବିସ୍ମରଣ କରି ବସିଛୁ ? ଏପରିକି ଯେଉଁ ଭୌତିକ ସାହିତ୍ୟରେ ଛନ୍ନ ହୋଇ ପଡ଼ିଛୁ, ତା' ବି ବିଶୃଙ୍ଖଳିତ—ସହଜ ଓ ଗଣ-ସାହିତ୍ୟ ନାମରେ ବିକୃତ ! ଏଠାରେ ବିକାଶର ଧାରା କେଉଁଠି ରହିଲା ? ଯେଉଁ ଯୁଗର ବିଶ୍ୱ ସାହିତ୍ୟରେ '*put*' କୁ 'ପୁଟ୍' ବୋଲି ଉଚ୍ଚାରଣ କରିବାସ୍ଥଳେ '*but*' କୁ 'ବାଟ୍' ବୋଲି ଉଚ୍ଚାରଣ କରାଯାଏ, ସେଠାରେ ନିୟମିତତା ରହିଲା କିପରି ? ଅନିୟମିତତା ଦୁର୍ବଳତାର ଚିହ୍ନ । ଆଦି ଦେବଭାଷାର ସବଳ ସାହିତ୍ୟରୁ ଏହି ଦୁର୍ବଳ ସାହିତ୍ୟର ଧାରା ବିକାଶର ପ୍ରତିକୂଳରେ ନା ଅନୁକୂଳରେ ?

କେହି କେହି ଯୁକ୍ତି କରୁଛନ୍ତିଯେ ଆଦି ମାନବ 'ଅକସ୍ମାତ' (*By Chance*) ଭାଷାର ଜ୍ଞାନ ପାଇଲା । ଏହି ମତକୁ ସମର୍ଥନ କରୁଥିବା ଲୋକେ କହନ୍ତି—'ବିଶ୍ୱର ବିକାଶ ସଂବନ୍ଧରେ ନିରପେକ୍ଷ ଆଲୋଚନା କଲେ ଜଣାଯାଏଯେ ଏଥିରେ କିଛି ନିର୍ଦ୍ଦିଷ୍ଟ ଦୋଷ ବା ପ୍ରୟୋଜନ

ନାହିଁ, ସୁତରାଂ ପ୍ରତ୍ୟେକ ଘଟଣାର ବ୍ୟାଖ୍ୟାପାଇଁ ଅକସ୍ମାତ (*Blind Chance*) ଉପରେ ନିର୍ଭର କରିବା ଛଡ଼ା ଆଉ ଅନ୍ୟ ପନ୍ଥା କିଛି ନାହିଁ †।'

କୌଣସି କାର୍ଯ୍ୟର ପୂର୍ବରୁ ଚିନ୍ତା ଓ ବୁଦ୍ଧିର ପ୍ରୟୋଗ ନହେଲେ ତାହାକୁ ଅକସ୍ମିକ କୁହାଯାଏ। ଯେଉଁମାନେ ସୃଷ୍ଟିକୁ 'ଅକସ୍ମିକ' କହନ୍ତି ସେମାନେ ବିଶ୍ୱାସ କରନ୍ତିଯେ ସୃଷ୍ଟି ପଛରେ କୌଣସି ନିୟମ—ନିୟାମକ ଶକ୍ତିର କର୍ତ୍ତୃତ୍ୱ—ନାହିଁ। ପ୍ରଥମ ଅଧ୍ୟାୟରେ କୁହା ଯାଇଛିଯେ ବିଜ୍ଞାନର କାର୍ଯ୍ୟ ହେଉଛି ସୃଷ୍ଟିର ସନାତନ ନିୟମ ଗୁଡ଼ିକର ଅନୁଶୀଳନ କରିବା। ବୈଜ୍ଞାନିକ ଆଜି ତାହାହିଁ କରୁଛନ୍ତି। ଜ୍ୟୋତଷୀ ଆଜି ଘରେ ବସି ହଜାରେ ବର୍ଷ ପାଇଁ କ୍ୟାଲେଣ୍ଡର୍ ତିଆରି କରୁଛି। ଏଥିରେ ଭୁଲ ରହୁନାହିଁ। ଏହାର କାରଣ ହେଉଛିଯେ ପୃଥିବୀର ଗତି ଓ ସୌର-ଜଗତର ସମସ୍ତ କ୍ରିୟା ଅଭ୍ରାନ୍ତ ନିୟମ ଉପରେ ଅଙ୍କିତ ଏବଂ ଏସବୁର ଭିତ୍ତି ଉପରେ ଜ୍ୟୋତଷୀ ଗବେଷଣା ଆରଂଭ କରେ। ସେହିପରି ଅଧି ଭୌତିକ ସଂସାର ଅଣୁରେ ୨, ଶବ୍ଦ ୨ ଯେଉଁ ଅପୂର୍ବ ଶୃଂଖଳା ଓ ସଂଯମ ଦେଖାଯାଏ, ତାହାର ସୃଷ୍ଟି କୌଣସି ଏକ ଅଭ୍ରାନ୍ତ ଜ୍ଞାନର ପ୍ରାକ୍-ଚିନ୍ତା ଛଡ଼ା କଣ ସମ୍ଭବ ହୋଇପାରେ ?

---

† *Since impartial study of the evolution of the world teaches us that there is no definite sin and no special purpose to be traced in it, there seems to be no alternative but to leave everything to blind chance. (The Riddle of the Universe by Ernst Haeckel)*

ଆଜିର ବିଜ୍ଞାନବେତ୍ତା 'ଆକସ୍ମିକ ବାଦ'କୁ ଅସ୍ୱୀକାର କରନ୍ତି । ଭୌତିକ ବିଜ୍ଞାନ ତାହାର ପ୍ରଗତି ସଙ୍ଗେ ୨ ଆତ୍ମିକ ବିଜ୍ଞାନର ସମୀପବର୍ତ୍ତୀ ହେବାକୁ ଯାଉଛି । ତେଣୁ ସ୍ୱୀକାର କରୁଛି—'ବାହ୍ୟ ଜଗତରେ ଏକ କ୍ରମ, ସ୍ଥିରତା, ନିର୍ଦ୍ଦେଶକ ଶକ୍ତି, ସୂକ୍ଷ୍ମବୁଦ୍ଧି ଆଦିର ଅସ୍ତିତ୍ୱ ଥିବା କଥା' ବୈଜ୍ଞାନିକ ଗବେଷଣାରୁ ଜଣାଯାଏ । ଏହି ସମସ୍ତ ଗୁଣ ସ୍ୱତଃ ଉତ୍ପନ୍ନ ହୁଅନ୍ତି ନାହିଁ । ସେମାନେ କୌଣସି 'ଆକସ୍ମିକ' ଘଟଣା ନୁହନ୍ତି * ।'

ଏଣୁ ଭାଷା ବା ବାଣୀର ସୃଷ୍ଟିକୁ ପ୍ରାକୃତିକ, ସ୍ୱାଭାବିକ ବା ଆକସ୍ମିକ ବୋଲି କହିବା ଆଦୌ ଯଥାର୍ଥ ନୁହେ । ପାଶ୍ଚାତ୍ୟ ବିଦ୍ୱାନ କୋଲରିକ୍ କହିଛନ୍ତି—'ଭାଷା ମନୁଷ୍ୟର ଏକ ଆତ୍ମିକ ସାଧନ ଅଟେ ।' ଆର. ସି. ଟ୍ରିନର୍ ତାହାଙ୍କ ପ୍ରଣୀତ 'ଷ୍ଟାଡ଼ି ଅଫ୍ ୱାର୍ଡ଼ସ୍' ନାମକ ଗ୍ରନ୍ଥରେ ଲେଖିଛନ୍ତି—'ଯେଉଁରୂପେ ଈଶ୍ୱର ଆମ୍ଭମାନଙ୍କୁ ବୁଦ୍ଧି ଦେଇଛନ୍ତି, ସେହିରୂପେ ବାଣୀ ମଧ୍ୟ ଦେଇଛନ୍ତି ।'

## ବୈଦିକ ଭାଷାର ବର୍ଣ୍ଣ ବା ଅକ୍ଷର

ଇଁରାଜୀ ଭାଷାର 'ଫାଦର୍' ଶବ୍ଦ, ଫାରସୀ ଭାଷାର 'ପିଦର ବା ପାରସୀ ଭାଷାର 'ପିତର୍' ଶବ୍ଦ ଅନ୍ୟ ଅର୍ଥକୁ ନବୁଝାଇ 'ପିତା'

---

* *To sum up this part of argument we can say that scientific study most certainly shows us the presence in this physical universe of an Order, Stability, Directing Force, Inteligibility and Capability of being understood by us. These qualities are not spontaneously produced. They do not come by chance. They are not mere accidents. (Science & Religion by Seven men of Science).*

ଅର୍ଥକୁ ବୁଝାଏ କାହିଁକି ? ଏହି ପ୍ରଶ୍ନ କଲେ ଉପରୋକ୍ତ ଭାଷାର ପଣ୍ଡିତ-ଗଣ ନୀରବ ରହିଯାନ୍ତି । କିନ୍ତୁ 'ପିତୃ' ଶବ୍ଦର ଅର୍ଥ କିପରି 'ପିତା' ହୁଏ, ଏହି ପ୍ରଶ୍ନ ଜଣେ ବୈଦିକ ଭାଷାର ପଣ୍ଡିତଙ୍କୁ ପଚାରିଲେ, ସେ ଅନାୟାସରେ ଏହାର ଉତ୍ତର ଦେଇ ପାରନ୍ତି । ସଙ୍ଗେ ୨ ସେ କହନ୍ତି— 'ପିତୃ' ଶବ୍ଦ 'ପା-ରକ୍ଷଣେ' ଧାତୁରୁ ଗଠିତ । 'ପା' ଧାତୁ 'ପ' ଶବ୍ଦର ପ୍ରାଧାନ୍ୟରୁ ରକ୍ଷଣ ଅର୍ଥରେ ଅଛି । ବର୍ଣ୍ଣମାନଙ୍କର ଉଚ୍ଚାରଣ ପଦ୍ଧତିରେ 'ପ' ଅକ୍ଷର ହେଉଛି ପ୍ରଥମ ଯାହାର ଉଚ୍ଚାରଣ ବେଳେ ଓଷ୍ଠ ବନ୍ଦ ହୋଇଯାଏ । ଏତେବେଳେ ଶବ୍ଦଧାତୁ ମୁଖ ମଧ୍ୟରେ ରକ୍ଷିତ ହୋଇଯାଏ । ଏଣୁ ଉଚ୍ଚାରଣ ପ୍ରଣାଳୀରୁ 'ପ' ଶବ୍ଦ ବା 'ପା' ଧାତୁର ଅର୍ଥ ଅଟେ 'ରକ୍ଷଣ କରିବା' । ଏଥିରୁ ନିଷ୍ପନ୍ନ ପିତା ଶବ୍ଦ ରକ୍ଷଣାର୍ଥରେ ପିତା, ରାଜା ବା ପରମେଶ୍ୱରବାଚୀ ହୁଏ ।

ଯେଉଁପରି ଇଂରାଜୀ ଭାଷାର 'ପି' (*P*) ଅକ୍ଷର କହେତୁ ଅନ୍ୟ କୌଣସି ଆକୃତି ନନେଇ ଏପରି ଆକାର ଗ୍ରହଣ କରିଛି— ଏହି ପ୍ରଶ୍ନ ପଚାରିଲେ ଜଣେ ଇଂରେଜ ନିରୁତ୍ତର ହୋଇଯାଏ । ପରନ୍ତୁ ଏଭଳି ପ୍ରଶ୍ନ ବୈଦିକ ଭାଷାର 'ପ' ଅକ୍ଷର ପାଇଁ କୌଣସି ସଂସ୍କୃତପାଠୀଙ୍କୁ ପଚାରିଲେ, ସେ ଉତ୍ତର ଦିଅନ୍ତି—'ପ' ବର୍ଣ୍ଣର ଉଚ୍ଚାରଣବେଳେ ଶବ୍ଦଧାତୁ ମୁଖ ମଧ୍ୟରେ ରକ୍ଷିତ ହୋଇ ଯିବାରୁ ଏହି ସଂକଳ୍ପର ସାକ୍ଷ ରୂପେ ବର୍ଣ୍ଣର ଲିପି ବୁନ୍ଦ-ସିନ୍ଦୁକ ପରି ହୋଇଯାଏ । ଏହି ଆଦି-ବ୍ରାହ୍ମୀଲିପିର ଅପଭ୍ରଂଶରୁ ବର୍ତ୍ତମାନ ସଂସ୍କୃତ 'ପ', ଇଂରାଜୀ '*P*' ଆଦି ବର୍ଣ୍ଣର ଆକୃତି ଗଠିତ ।

ଶବ୍ଦ ଓ ଧାତୁର ଏହି ମୌଳିକ ଓ ଅର୍ଥିକ ସିଦ୍ଧାନ୍ତକୁ କୋଇଲିର 'କୁହୁକୁହୁ' ଶବ୍ଦ ବା ହର୍ଷ ସାଗର 'ବାହ୍‌ବାହ୍‌' ଧ୍ୱନି ଆଦିମ ମନୁଷ୍ୟ ଠାରେ

ପ୍ରେରଣା ଦେଇଥିବା ସଂପୂର୍ଣ୍ଣ ଅସଂଭବ । ଉପରୋକ୍ତ ପାଂଦର୍, ପିଦର୍, ପିତର୍ ଶବ୍ଦାଦି ଉଚ୍ଚାରଣର ପରିବର୍ତ୍ତନରେ ଆଦିମ ପିତୃ ଶବ୍ଦରୁ ବିଚ୍ଛିନ୍ନ ହୋଇ ପଡ଼ିଛନ୍ତି ବୋଲି, ଏହି ସବୁର ଗଠନକୁ 'ମନୁଷ୍ୟକୃତ' କୁହାଯାଇପାରେ । ପରନ୍ତୁ ଆଦି ପିତୃ ଶବ୍ଦର ଗଠନରେ ଯେଉଁ ଅଦ୍ଭୁତ ରଚନା-ଶୈଳୀ ପରିଦୃଷ୍ଟ, ତାହା କଦାପି ମନୁଷ୍ୟକୃତ ହୋଇ ନପାରେ

ଉପରୋକ୍ତ ପଣ୍ଡିତ ଆର. ପି. ତ୍ରିନାଥ ଅନ୍ୟ ଏକ ସ୍ଥଳରେ କହିଛନ୍ତି—'ପ୍ରତେକ ଶବ୍ଦ ଓ ଅକ୍ଷର ମଧ୍ୟରେ ଏକ ୨ କାବ୍ୟ ପରିପୂର୍ଣ୍ଣ ହୋଇ ରହିଛି ।' ସ୍ୱୟଂ ବେଦ କହେ—

ଋଚୋ ଅକ୍ଷରେ ପରମେ ବ୍ୟୋମନ୍ ଯସ୍ମିନ୍ ଦେବା ଅଧି ବିଶ୍ୱେ ନିଷେଦୁଃ ।
ଯସ୍ତନ୍ନ ବେଦ କିମୃଚା କରିଷ୍ୟତି ଯ ଇତ୍ତଦ୍ୱିଦୁସ୍ତ ଇମେ ସମାସତେ ॥
( ଋକ୍ ୧, ୧୬୪, ୩୯ )

ଅର୍ଥାତ— ଋଗ୍ ବା ବେଦମନ୍ତ୍ର ଅବିନାଶୀ ଓ ଭୁବଗର୍ଭର ଭୂଭ ଉପରେ ପ୍ରତିଷ୍ଠିତ । ଯେ ଅକ୍ଷରାର୍ଥ ବୁଝେନାହିଁ, ସେ ବେଦରୁ କି ଫଳ ପାଇବ ?

ପତଂଜଳି ମୁନି ଏ ସମ୍ବନ୍ଧରେ ଲେଖିଛନ୍ତି— .
ବର୍ଣ୍ଣଜ୍ଞାନଂ ବାଗ୍ୱିଷୟୋ ଯତ୍ର ଚ ବ୍ରହ୍ମ ବର୍ତ୍ତତେ ।
ତଦର୍ଥମିଷ୍ଟବୁଦ୍ଧ୍ୟର୍ଥଂ ଲଘ୍ୱର୍ଥଂ ଚୋପଦିଶ୍ୟତେ ॥ (ମହାଭାଷ୍ୟ ୧, ୧୨)

ଅର୍ଥାତ—ବର୍ଣ୍ଣଜ୍ଞାନହିଁ ବାଣୀର ଜ୍ଞାନ ଯେଉଁଠାରେ ବ୍ରହ୍ମ (ବେଦ) ଅବସ୍ଥିତ । ଏହାର ତାତ୍ପର୍ଯ୍ୟ ହେଉଛି ଅକ୍ଷରାର୍ଥ ନକରି ବେଦ ବୁଝିବା ସମ୍ଭବ ନୁହେ ।

ମହାଭାଷ୍ୟକାର କହୁଛନ୍ତି—'ଅର୍ଥବନ୍ତୋ ବର୍ଣ୍ଣାଃ'। ଗଭୀର ଅଧ-ବସାୟ ବଳରେ ଯେଉଁ ମନ୍ତ୍ରଦ୍ରଷ୍ଟା ଋଷିମାନେ ଅନ୍ତର୍ଦୃଷ୍ଟି ବଳରେ ଅଦ୍ୱି ଅକ୍ଷୟ ଅକ୍ଷରକୁ ଅବଲୋକନ କରିଛନ୍ତି, ସେମାନେ ପ୍ରତ୍ୟେକ ଅକ୍ଷର ଘଟରେ ଏକ ୨ ବ୍ରହ୍ମାଣ୍ଡର ଅର୍ଥକୁ ଦେଖି ପାରିଛନ୍ତି। ଉଚ୍ଚାରଣର କ୍ରିୟା ଓ ଧ୍ୱନିରୁ ସେମାନେ ପ୍ରତ୍ୟେକ ମୌଳିକ ଅକ୍ଷରର ଭାବକୁ ଲକ୍ଷ୍ୟ କରି ପାରିଛନ୍ତି। ପୁଣି ଏ ଭାବର ପ୍ରତିବିମ୍ବକୁ ଚିହ୍ନ ବା ଲିପି ଆକାରରେ ପ୍ରତ୍ୟକ୍ଷୀଭୂତ କରି ପାରିଛନ୍ତି। ଏହାହିଁ ଅକ୍ଷର-ବିଜ୍ଞାନ। ଜ୍ଞାନର ପ୍ରକାଶ ସଙ୍ଗେ ୨ ଏହି ଅକ୍ଷର-ବିଜ୍ଞାନ ଆଦ୍ୟ ସୃଷ୍ଟିରେ ପ୍ରକାଶିତ ହୁଏ।

ଭୌତିକ ସୃଷ୍ଟିରେ ପରମାଣୁ ପରି ଭାଷା ସମୁଦ୍ରରେ ଏହି ଅକ୍ଷର ଜଳବିନ୍ଦୁ ସଦୃଶ୍ୟ। ଯଜୁର୍ବେଦ ଅନୁସାରେ ମୌଳିକ ଅକ୍ଷରଙ୍କ ସଂଖ୍ୟା ୧୭-ଅ, ଇ, ଉ, ଋ, ଌ, କ, ଗ, ଚ, ଜ, ଟ, ଡ, ତ, ଦ, ପ, ବ, ଂ, ଓ, ଃ। ପାଂଚ ସ୍ୱରରେ ହ୍ରସ୍ୱ, ଦୀର୍ଘ, ପ୍ଲୁତ ଓ ସଂଧି ହୋଇ ପଚିଶ ଅକ୍ଷର ହୁଅନ୍ତି। 'ଅ'ରେ ବିସର୍ଗ ମିଶି 'ହ' ହୁଏ। କ,ଗ,ଚ,ଜ,ଟ,ଡ,ତ,ଦ, ପ ସହ ହ ମିଶିଲେ ଯଥାକ୍ରମେ ଖ,ଘ,ଛ,ଝ,ଠ,ଢ,ଥ,ଧ,ଫ ହୁଏ। ଅନୁସ୍ୱାରରୁ ସମସ୍ତ ସାନୁନାସିକ ବର୍ଣ୍ଣ ଓ ବିସର୍ଗରୁ ଶ,ସ,ଷ ହୁଏ। ଇ ଓ ଅ ମିଶି ଯ, ଋ ଓ ଅ ମିଶି ର, ଌ ଓ ଅ ମିଶି ଲ, ଉ ଓ ଅ ମିଶି ବ ଗଠିତ ହୁଏ। କ ଓ ଷ ମିଶି କ୍ଷ, ତ ଓ ର ମିଶି ଏ, ଜ ଓ ଞ ମିଶି ଜ୍ଞ ହୁଏ। ଏହି ରୂପେ ୨୫ ସ୍ୱର, ୨୫ ବର୍ଗ ବର୍ଣ୍ଣ ଓ ୧୩ ସ୍ଫୁଟ ମିଶି ୬୩ ହୁଅନ୍ତି। ଅର୍ଦ୍ଧଚନ୍ଦ୍ରକୁ ମିଶାଇ ସମସ୍ତ ବର୍ଣ୍ଣ ସଂଖ୍ୟା ୬୪ ହୁଏ।

ଭାଷା-ସୌଧର ବିରାଟକାୟ ଏହି ସତର ବର୍ଣ୍ଣର ଭିତ୍ତି ଉପରେ ପ୍ରତିଷ୍ଠିତ। ଏହି ସତରଟି ବର୍ଣ୍ଣର ମୂଳ ସ୍ରୋତରୁ ଆଜି ପୃଥିବୀ ବକ୍ଷରେ

ସହସ୍ର ୨ ଭାଷାର ବିରାଟ ସ୍ରୋତ ବହି ଚାଲିଛି । ଗୋଟିଏ ୨ ଉଜ୍ଜ୍ୱଳ ଟୁର ନକ୍ଷତ୍ର ପରି ପ୍ରତ୍ୟେକ ଅକ୍ଷର ପଛରେ ଭାବ ସ୍ରୋତର କବିତା ଛପି ୨ ରହିଛି । ଏହି ଭାବ-ସ୍ରୋତରୁ ଅର୍ଥ ନେଇ ବୈଦିକ ଭାଷାରେ ଅକ୍ଷରରୁ ଧାତୁ ଗଢ଼ାହୁଏ, ଧାତୁରୁ ଅର୍ଥ ନେଇ ଶବ୍ଦ ଗଢା ହୁଏ ଓ ସାର୍ଥକ ଶବ୍ଦାବଳୀର ଅଲୌକିକ ଛନ୍ଦରେ ନିତ୍ୟ ଅର୍ଥରେ ବେଦର ଋଚୁ ରା ମଂଏ ସୃଷ୍ଟି । ମନୁଷ୍ୟର ଆଦି ସୃଷ୍ଟି ସ୍ଥଳରୁ ଦଳ ୨ ମନୁଷ୍ୟ ଯେତେବେଳେ ଦେଶାନ୍ତର ଗମନ କଲେ କାଳକ୍ରମେ ଉଚ୍ଚାରଣ, ଭାବ ଓ ବ୍ୟାକରଣର ଭିନ୍ନତାରେ ମୌଳିକ ଅକ୍ଷରର ଶୀଳତା ଓ ବ୍ୟାପକତା ବିସ୍ମୃତ ହୋଇଗଲା । ଉଚ୍ଚାରଣ ପଦ୍ଧତିରୁ ଗଠିତ ଅକ୍ଷରମାନଙ୍କର ଭାବ ବିସ୍ମୃତ ହୋଇଗଲା । ବହୁ ଭାଷା ଗଠିତ ହେଲା । ଏହି ସବୁ କୃତ୍ରିମ ଭାଷାରେ ଆଦି ଭାଷା ପରି ସଂକ୍ଷେପ, ନ୍ୟୁମ ଓ ଅର୍ଥ ରହିଲା ନାହିଁ ।

ବୈଦିକ ଅକ୍ଷରର ଗଠନ ଦୁଇ ପ୍ରକାର—ପ୍ରଥମତଃ ଏହାର ମୁଖ୍ୟ ଗଠନ ଉଚ୍ଚାରଣ ବେଳେ ମୁଖ ମଧ୍ୟରେ ହୁଏ ଓ ଦ୍ୱିତୀୟତଃ ଏହାର ସାକ୍ଷ ସ୍ୱରୂପ ଲିପିର ଆବିଷ୍କାର । ଉଚ୍ଚାରଣରେ ଯେଉଁ ଭାବ ପ୍ରକାଶିତ ହୁଏ, ତାହା ଲିପିରେ ଅକ୍ଷୁନ୍ନ ଭାବରେ ପ୍ରକାଶ ପାଏ । 'ପ' ଅକ୍ଷର ସମ୍ବନ୍ଧେ ଉପରେ ଯେଉଁ ଆଲୋଚନା କରା ଯାଇଛି, ତାହା ବୈଦିକ ଭାଷାର ପ୍ରତ୍ୟେକ ଅକ୍ଷର ପାଇଁ ପ୍ରଯୁଜ୍ୟ । ବର୍ତ୍ତମାନର ପ୍ରଚଳିତ ଭିନ୍ନ ୨ ଭାଷା ଓ ଲିପି ଆଦି-ଭାଷା ଓ ଲିପିର ବହୁ ପରିବର୍ତ୍ତିତ ଅବସ୍ଥା ହୋଇ ଥିବାରୁ ଏ ସବୁରେ ଉପରୋକ୍ତ ସଂଯମ ପରିଦୃଷ୍ଟ ହୁଏ ନାହିଁ ।

'ଅ'କାର ଉଚ୍ଚାରଣବେଳେ ଜିହ୍ୱା ଏକ ସରଳରେଖାରେ ରହେ ଓ ମୁଖ ଚତୁର୍ଦ୍ଦିଗରେ ସମାନ ଭାବରେ ଖୋଲାରହେ । ଓଷ୍ଠ ବଂଦ

କର୍ 'ଅ'କାର ଉଚ୍ଚାରଣ କଲେ 'ପ' ହୁଏ ଓ କଣ୍ଠରେ ଏହାକୁ ଉଚ୍ଚାରଣ କଲେ 'କ' ହୁଏ । ସ୍ଥୂଳତଃ ସମସ୍ତ ଧ୍ୱନି ଓ ବର୍ଣ୍ଣର ଉଚ୍ଚାରଣ ବେଳେ 'ଅ'କାରର ଆବଶ୍ୟକ ହୁଏ । ଏହିରୂପେ 'ଅ'କାରର ପ୍ରବଳ ଅସ୍ତିତ୍ୱ ଗୋଟିଏ ଦିଗରେ ପୂର୍ଣ୍ଣ ଓ ବ୍ୟାପ୍ତିର ଅର୍ଥ ବୁଝାଉଥାବେଳେ ଅନ୍ୟ ସମସ୍ତ ଅକ୍ଷରର ଅଭାବର ମଧ୍ୟ ସୂଚନା ଦିଏ । ଏଣୁ 'ଅ'କାରର ଗୋଟିଏ ଅର୍ଥ ଅଭାବ, ଶୂନ୍ୟ ଆଦି । ଏହାର ସାଙ୍କ ସ୍ୱରୂପ 'ଅ'କାରର ପ୍ରତିବିମ୍ବ 'ା' ରୂପେ ବ୍ରହ୍ମଲିପିର ପ୍ରତି ବର୍ଣ୍ଣରେ ରହିଥାଏ । ଯେତେବେଳେ ଏହା ବିଚ୍ଛିନ୍ନ ହୋଇଯାଏ 'ା' ର ତଳକୁ ଲାଗି ( ୍ ) ହଲନ୍ତ ଚିହ୍ନ ତାହାର ବିଯୋଗର ସଂକେତ ଦିଏ । ପୁଣି ଏହାର ଉଚ୍ଚାରଣ ବେଳେ, ମୁଖ ଚତୁର୍ଦ୍ଦିଗରେ ସମାନ ଭାବରେ ଖୋଲିବା ଅର୍ଥ ବ୍ୟାପକତା ଓ ପୂର୍ଣ୍ଣତାର ସୂଚନା ଦିଏ ଅର୍ଥାତ୍ ସମସ୍ତ ବର୍ଣ୍ଣରେ ଏହା ପୂର୍ଣ୍ଣରୂପେ ରହେ । ଏଣୁ ଏହାର ସାଙ୍କ ସ୍ୱରୂପ ଲିପି 'ଠ' ହୋଇଯାଏ । ଆଦି ବ୍ରହ୍ମଲିପିର 'ଅ'କାର ସମ୍ବନ୍ଧରେ ଗବେଷଣା କଲେ ଜଣାଯାଏଯେ ଏହାର ସ୍ୱରୂପ 'ଠ' ଓ 'ା'ର ସମ୍ମିଶ୍ରଣରେ ଗଠିତ ହୋଇଥାଏ । ବ୍ୟାକରଣର ସୁବିଧା ପାଇଁ ହ୍ରସ୍ୱ 'ଅ'କାର ଅଶୁଦ୍ଧି, ଅଭାବ ଆଦିର ସୂଚନା ଦେବାବେଳେ, ଦୀର୍ଘ 'ଅ'କାର ସମସ୍ତ ଅର୍ଥରେ (ଆସମୁଦ୍ରାନ୍ତ ଆଦି) ପ୍ରୟୋଗ ହୁଏ ।

ଉଚ୍ଚାରଣର ପଦ୍ଧତିକୁ ଅନୁଧାବନ କଲେ ଜଣାଯାଏଯେ 'ଅ'କାର ପରେ ଅନାୟାସରେ ଯେଉଁ ବର୍ଣ୍ଣ ଉଚ୍ଚାରିତ ହୁଏ, ତାହା ଅଟେ 'ଇ' । 'ଅ'କାର ତଳକୁ ଗଡ଼ିକରି ତଳ ଓଷ୍ଠର ସହାୟତାରେ 'ଇ'କାର ରୂପେ ଉଚ୍ଚାରିତ ହୁଏ । ଏହା ପ୍ରକୃତରେ 'ଅ'କାରର ପଡ଼ୋଶୀ । ପୁଣି 'ଅ'କାର ସମସ୍ତ ଅକ୍ଷରର ପ୍ରତିନିଧି । ଏହି ଦୁଇ ଭାବନାରୁ 'ଇ'କାର ଯେଉଁ ଶବ୍ଦ ସହ ମିଶେ, ତାହାର ଅଧିକାଂଶକୁ ବୁଝାଏ । 'ପା' ର ଅର୍ଥ

‘ରକ୍ଷା କରିବା’ ହେବାବେଳେ ‘ତ୍ରି’ର ଅର୍ଥ ‘ରକ୍ଷା କରିବା ଲୋକ’ । ସେହିପରି ‘ଗା’ର ଅର୍ଥ ‘ଗତି’ ହେବାବେଳେ ‘ଗି’ର ଅର୍ଥ ‘ଗତିବାଲା’ । ବର୍ତ୍ତମାନ ଏହି ଲିପିର ସ୍ୱରୂପ ସମ୍ବନ୍ଧେ ବିଚାର କରାଯାଉ । ‘ଅ’କାର ମୁଖ ମଧ୍ୟରେ ସମଭାବରେ ଉଚ୍ଚାରିତ ହେବାବେଳେ, ସେଥିରେ ବ୍ୟଙ୍ଗ ହୋଇ ‘ଇ’କାର ଉତ୍ପନ୍ନ ହେବାରୁ ଏହାର ଅର୍ଥ ପରିବର୍ତ୍ତନ—ସଂକୁଳନ ଗତ ହୁଏ । ଏଥିରୁ ଯେଉଁ ଭାବ ଉତ୍ପନ୍ନ ହୁଏ ତାହାର ସାକ୍ଷ ସ୍ୱରୂପ ବ୍ରାହ୍ମୀଲିପିର ‘ଇ’କାର ପ୍ରତିବିମ୍ବିତ । ଏଥିରେ ପରିବର୍ତ୍ତନ ହୋଇ ପ୍ରଚଳିତ ଭାଷାମାନଙ୍କର ‘ଇ’କାର ଗଠିତ ।

‘ଅ’କାରର ଧ୍ୱନିଧାରାକୁ ‘କ’କାର ସର୍ବ ପ୍ରଥମେ କଣ୍ଠ ସ୍ଥଳରେ ଅବରୋଧ କରୁଥିବା ହେତୁ ‘କ’କାର ବାନ୍ଧିବା, ଗତିରୋଧ କରିବା, ଶଂକା ଉତ୍ପନ୍ନ କରିବା ଆଦି ଅର୍ଥକୁ ଗ୍ରହଣ କରେ । ଫଳରେ କଃ, କା ଆଦି ପ୍ରଶ୍ନାତ୍ମକ, ଶଂକୋତ୍ପାଦକ ଅର୍ଥରେ ବ୍ୟବହୃତ ହୁଅନ୍ତି । ସେହି ଉଚ୍ଚାରଣ ପଦ୍ଧତିରେ ‘ହ’କାର ଅନ୍ୟ ବର୍ଣ୍ଣ ସହ ମିଶିଲେ ତାହାର ବିରୁଦ୍ଧ ଅର୍ଥ କରାଏ । ସୁତରାଂ ‘କ’ ବର୍ଣ୍ଣ ସହ ‘ହ’ ବର୍ଣ୍ଣ ମିଶି ଯେଉଁ ‘ଖ’ ବର୍ଣ୍ଣ ସୃଷ୍ଟି ହୁଏ, ତାହାର ଅର୍ଥ ହୁଏ ‘କ’ର ବିପରୀତ ଅର୍ଥାତ୍ ବନ୍ଧନହୀନ ଆକାଶାଦି । ‘ଗ’ ବର୍ଣ୍ଣର ଉଚ୍ଚାରଣ ପାଇଁ ‘କ’ ବର୍ଣ୍ଣର ସ୍ଥାନ ଓ ପ୍ରଯତ୍ନରେ ଗତି ଉତ୍ପନ୍ନ ହେଉଥିବାରୁ ଏହା ଗମନ, ସ୍ଥାନାନ୍ତର ଆଦି ଅର୍ଥରେ ବ୍ୟବହୃତ ହୁଏ । ‘କ’ ବର୍ଗର ‘ଗ’ ପରି ‘ଚ’ ଓ ‘ତ’ ବର୍ଗର ‘ଜ’ ଓ ‘ଦ’ ଯଥାକ୍ରମେ ଜନ୍ମ ଓ ଦାନ ଅର୍ଥରେ ବ୍ୟବହୃତ ହୁଅନ୍ତି । ଲେଖିବାର ନିଷ୍କର୍ଷ ଏହିପେ, ଆଦି ବ୍ରାହ୍ମୀଲିପିର ପ୍ରତ୍ୟେକ ମୌଳିକ ଓ ସଂଯୁକ୍ତ ବର୍ଣ୍ଣ ପଛରେ ସେ ବର୍ଣ୍ଣର ଉଚ୍ଚାରଣର ସ୍ଥାନ ଓ ପ୍ରଯତ୍ନ ଦୃଷ୍ଟିରୁ ନିର୍ଦ୍ଦିଷ୍ଟ ଅର୍ଥମାନ ରହିଛି । ଏହା ସଙ୍ଗେ ୨ ସେହି

ଉଚ୍ଚାରଣ ପଦ୍ଧତିର ପ୍ରତିବିମ୍ବ ସ୍ୱରୂପ ବର୍ଣ୍ଣମାନଙ୍କର ଲିପି ଦ୍ୱାରା ଶବ୍ଦକୁ ଗଠନ କରାଯାଇଛି ।

## ଅକ୍ଷରରୁ ଧାତୁ ଓ ଶବ୍ଦ

ମହର୍ଷି ପତଞ୍ଜଳି ମହାଭାଷ୍ୟରେ ଲେଖିଛନ୍ତି—'ବୈଦିକ ବର୍ଣ୍ଣ ଅର୍ଥବନ୍ତ ଅଟନ୍ତି । ଧାତୁ, ନାମ, ପ୍ରତ୍ୟୟ, ନିପାତର ପ୍ରତ୍ୟେକ ବର୍ଣ୍ଣ ସାର୍ଥକ ଅଟେ † ।' ବର୍ଣ୍ଣ କିପରି ଅର୍ଥବାନ୍ ତାହା ଉପରେ ଆଲୋଚନା କରାଯାଇଛି । ବର୍ଣ୍ଣରୁ ଗଠିତ ଧାତୁ ମଧ୍ୟ ସାର୍ଥକ । ଉଦାହରଣ ସ୍ୱରୂପ 'ଚର୍' ଧାତୁ 'ଚ' ଓ 'ର' ନେଇ ଗଠିତ । ଅକ୍ଷରାର୍ଥରେ 'ଚ'ର ଅର୍ଥ ପୁନଃ ୨, 'ର'ର ଅର୍ଥ ବାହ୍ୟଗତି, ସୁତରାଂ 'ଚର୍' ର ଅର୍ଥ ପୁନଃ ୨ ବାହ୍ୟଗତି ବା ଚଳନ । ସେହିରୂପେ 'ଭଗ୍' ଧାତୁର 'ଭ'ର ଅର୍ଥ ପ୍ରକାଶ ଓ 'ଗ'ର ଅର୍ଥ ଗତି । ତେଣୁ 'ଭଗ୍' ଧାତୁର ଅର୍ଥ ଗତିଶୀଳ ପ୍ରକାଶ ବା ଐଶ୍ୱର୍ଯ୍ୟ । 'ମର୍' ଧାତୁରେ 'ମ'ର ଅର୍ଥ ନିଷେଧ ଓ 'ର'ର ଅନ୍ୟ ଅର୍ଥ ରମଣ ବା କ୍ରିୟା । 'ମର୍' ଧାତୁ ଏଣୁ କ୍ରିୟା ବା ଅସ୍ତିତ୍ୱହୀନ ଅବସ୍ଥାକୁ ବୁଝାଏ । ଏଥିରୁ ଜଣାଯାଏ ଯେ ବୈଦିକ ଧାତୁ ଅକ୍ଷରାର୍ଥକୁ ଗ୍ରହଣ କରି ସାର୍ଥକ ହୁଅନ୍ତି ।

ସେହିପରି ବୈଦିକ ଶବ୍ଦ ବର୍ଣ୍ଣାର୍ଥବାଚୀ । 'ଟ୍ରୁଥ୍' (*truth*) ଶବ୍ଦ ଇଂରାଜୀରେ 'ସତ୍ୟ' ଅର୍ଥରେ ଆସେ । ଏହି ଶବ୍ଦର ଅର୍ଥ ବୁଝାଇବା ପାଇଁ ବହୁ ବ୍ୟାଖ୍ୟାନ ଆବଶ୍ୟକ ହୁଏ । ଜଣେ ଇଂରେଜ ଶିକ୍ଷକଙ୍କୁ

---

† ଅର୍ଥବନ୍ତୋ ବର୍ଣ୍ଣାଃ । ଧାତୁପ୍ରାତିପଦିକ ପ୍ରତ୍ୟୟ ନିପାତାନାମେକବର୍ଣ୍ଣା ନାମର୍ଥଦର୍ଶନାତ୍ । (ମହାଭାଷ୍ୟ)

ଏଥିପାଇଁ ବହୁ ଉଦାହରଣ ଦେବାକୁ ହୁଏ । ପରନ୍ତୁ ବୈଦିକ 'ଅସ୍'
ଧାତୁ (ହେବା ଅର୍ଥ)କୁ ବୁଝିନେଲେ ସେଥିରୁ ଉତ୍ପନ୍ନ 'ସତ୍ୟ' ଶବ୍ଦ
ପାଇଁ ଅଉ ବ୍ୟାଖ୍ୟାନ ଆବଶ୍ୟକ ହୁଏ ନାହିଁ ।

*Civilised Man* ବା ସଭ୍ୟ ମନୁଷ୍ୟ—ଏହି ଶବ୍ଦ ଜଣେ ଇଂରେଜ
ବିଦ୍ୟାର୍ଥୀଙ୍କୁ ବୁଝାଇବା ପାଇଁ ଅନ୍ୟୂନ ଶହେ ପୃଷ୍ଠା ଆବଶ୍ୟକ ହୁଏ ।
ସମସ୍ତ ସମାଜ-ଶାସ୍ତ୍ର *(Sociology)* ପଢ଼ି ସାରିବା ପରେ ସେ ବୁଝେ
ସମାଜ କଣ ଓ କିରୂପେ ସମାଜରେ ମିଳିମିଶି କାର୍ଯ୍ୟ କରାଯାଏ । ପରନ୍ତୁ
ବୈଦିକ ଭାଷାର 'ସଭ୍ୟ'—ସଭାର ଯୋଗ୍ୟ—ଶବ୍ଦରୁ ସମସ୍ତ ରହସ୍ୟ
ବୁଝିହୁଏ ।

ସେହିପରି ବୈଦିକ 'ସୃଷ୍ଟି' ଶବ୍ଦରୁ ଯେଉଁ ଭାବ ମିଳେ ତାହା
ଇଂରାଜୀ ଭାଷାର 'ନେଚର' *(Nature)* ଶବ୍ଦରୁ ବା କାହୁଁ ମିଳିବ ?
ଅକ୍ଷରାର୍ଥରୁ 'ସୃଷ୍ଟି'ର ଅର୍ଥ ଯାହା ତିଆରି ବା ନିର୍ମିତ ହୋଇଛି । ଏହି
ଶବ୍ଦର ଉଚ୍ଚାରଣ ମାତ୍ରେ ମନୁଷ୍ୟକୁ ସ୍ରଷ୍ଟାଙ୍କ କର୍ତ୍ତୃତ୍ୱ ମାନି ନେବାକୁ
ହୁଏ ।

ଈଶ୍ୱରୀୟ ସୃଷ୍ଟିର ଅଗ୍ନି, ବାୟୁ, ସୂର୍ଯ୍ୟ ଆଦି ମୌଳିକ ବସ୍ତୁ ପରି
ଆଦି ବୈଦିକ ଭାଷାର ବର୍ଣ୍ଣ ଓ ଶବ୍ଦ ସତେ କେଡ଼େ ଚମତ୍କାର, କେତେ
ମାର୍ମିକ ! ଏମାନେ କଦାପି ମାନୁଷିକ ହୋଇ ନପାରନ୍ତି ।

## ଭାଷା ସୃଷ୍ଟି ସମ୍ବନ୍ଧେ ବୈଦିକ ପ୍ରମାଣ

ଆମ୍ଭେମାନେ ଆଲୋଚନା କରିଛେ ଯେ ମନୁଷ୍ୟର ଆଦି-ବାଣୀ
ବା ଭାଷା ଆକସ୍ମିକ କିଂବା ସ୍ୱାଭାବିକ ନୁହେ । ଆଦିଜ୍ଞାନ ପରି ଏଥିପାଇଁ

ଯେଉଁ ନିମିତ୍ତ ଅବଶ୍ୟକ, ସେ ସେହି 'ପୂର୍ବେଷାମପି ଗୁରୁଃ' । ଏ ଯୁଗର ବୈଜ୍ଞାନିକମାନେ ତାହାଙ୍କୁ ପ୍ରଥମ ସଂଚାଳକ (*First Prime Mover*) ବୋଲି ନାମିତ କରିଛନ୍ତି ।

ଅମୈଥୁନୀ ସୃଷ୍ଟିରେ ଆକାଶ, ବାୟୁ, ଜଳ, ଅଗ୍ନି, ବନସ୍ପତି, ପଶୁପକ୍ଷୀ ଆଦି ସକଳ ପ୍ରାଥମିକ ରଚନା ସମାପ୍ତ ହେବାପରେ ଯେବେ ଜୀବଶ୍ରେଷ୍ଠ ମନୁଷ୍ୟର ସୃଷ୍ଟି ହୁଏ, କାରୁଣିକ ଭଗବାନ ତା'ଠାରେ ଜ୍ଞାନ ଓ ଭାଷାର ପ୍ରକାଶ କରନ୍ତି । ଏହା ବେଦ । ଋକ୍‌ବେଦର ଦଶମ ମଣ୍ଡଳ ଏକସ୍ତୋତ୍ର ସୂକ୍ତରେ ଏହାର ସ୍ପଷ୍ଟୀ କରଣ କରି ଦିଆ ଯାଇଛି—

ବୃହସ୍ପତେ ପ୍ରଥମଂ ବାଚୋ ଅଗ୍ରଂ ଯତ୍ପ୍ରୈରତ ନାମଧେୟଂ ଦଧାନାଃ ।
ଯଦେଷାଂ ଶ୍ରେଷ୍ଠଂ ଯଦରିପ୍ରମାସୀତ୍ପ୍ରେଣା ତଦେଷାଂ ନିହିତଂ ଗୁହାବିଃ ॥
(ଋକ୍ ୧୦, ୭୧, ୧)

ସକ୍ତୁମିବ ତିତଉନା ପୁନନ୍ତୋ ଯତ୍ର ଧୀରା ମନସା ବାଚମକ୍ରତ ।
ଅତ୍ରା ସଖାୟଃ ସଖ୍ୟାନି ଜାନତେ ଭଦ୍ରୈଷାଂ ଲକ୍ଷ୍ମୀର୍ନିହିତାଧି ବାଚି ॥
(ଋକ୍ ୧୦, ୭୧, ୨)

ଯଜ୍ଞେନ ବାଚଃ ପଦବୀୟମାୟନ୍ ତାମନ୍ୱବିନ୍ଦନ୍ ଋଷିଷୁ ପ୍ରବିଷ୍ଟାମ୍ ।
ତାମାଭୃତ୍ୟା ବ୍ୟଦଧୁଃ ପୁରୁତ୍ରା ତାଂ ସପ୍ତରେଭା ଅଭିସଂ ନବନ୍ତେ ॥
(ଋକ୍ ୧୦, ୭୧, ୩)

ଅର୍ଥାତ୍—ସର୍ଗାରମ୍ଭବେଳେ ଯେତେବେଳେ ମନୁଷ୍ୟ ଉତ୍ପନ୍ନ ହେଲେ ଓ ସେମାନେ ଚତୁର୍ଦ୍ଦିଗସ୍ଥ ପରିଦୃଶ୍ୟମାନ ବସ୍ତୁମାନଙ୍କ ନାମ-

କରଣର ଇଚ୍ଛା କଲେ, ସେତେବେଳେ ପରମଗୁରୁ, ସର୍ବବିଦ୍ୟାନିଧାନ ଭଗବାନ ସେମାନଙ୍କ ଠାରେ ବାଣୀର ପ୍ରେରଣା ଦେଲେ । ଏହା ବାଣୀର ପ୍ରଥମ ପ୍ରକାଶ । ଏହି ବାଣୀର ପ୍ରେରଣା ପାଇଲେ କିଏ ? ବେଦ କହେ—ସର୍ଗାରମ୍ଭ ବେଳେ ଯେଉଁମାନେ ଶ୍ରେଷ୍ଠ ଓ ନିଷ୍ପାପ ମନୁଷ୍ୟ ଥିଲେ ଓ କଲ୍ୟାଣ ବାଣୀର ପ୍ରଚାର ପାଇଁ ଉତ୍କଟ ଭାବନା ରଖୁଥିଲେ, ଅନ୍ତର୍ଯ୍ୟାମୀ ପ୍ରଭୁ ସେମାନଙ୍କ ହୃଦୟରେ ଏହି ପ୍ରେରଣା ପ୍ରକାଶ କଲେ । (୧)

ଏହି ବାଣୀ ସହ ଶବ୍ଦାର୍ଥ ସଂବନ୍ଧଯୁକ୍ତ ଜ୍ଞାନ ମଧ୍ୟ ପ୍ରେରିତ ହେଲା । ଏହା ଜ୍ଞାନର ପ୍ରଥମ ପ୍ରକାଶ । ଏହି ଜ୍ଞାନ ଅମିଶ୍ରିତ ଓ ଶୁଦ୍ଧ ରୂପରେ ନିର୍ଦ୍ଦୋଷ ଓ ସାକ୍ଷାତ୍‌କୃତଧର୍ମା ମନୁଷ୍ୟଙ୍କ ମଧ୍ୟରେ ପ୍ରବେଶ କରି ଉପଦେଶ ରୂପରେ ସେମାନଙ୍କ ଠାରୁ ବହିର୍ଗତ ହେଲା । ବହିର୍ଗତ ଅବସ୍ଥାରେବି ତାହା ଅମିଶ୍ରିତ ରୂପରେ ଥିଲା । ତେଣୁ ଦ୍ୱିତୀୟ ମନ୍ତ୍ରରେ କୁହା ଯାଇଛି—

ସେହି ମହାତ୍ମାଗଣ ପ୍ରଭୁ ପ୍ରେରିତ ବଚନକୁ ଉଚ୍ଚାରଣ କରନ୍ତି, ସେଥିରେ ନିଜର କୌଣସି ମତ ବା ସିଦ୍ଧାନ୍ତକୁ ମିଶ୍ରଣ କରନ୍ତି ନାହିଁ । ସେମାନେ ଭଗବାନଙ୍କ ସଖାରୂପେ ପରବର୍ତ୍ତୀ ମନୁଷ୍ୟ ଗୋଷ୍ଠୀକୁ ଜ୍ଞାନର ଶୁଦ୍ଧ କିରଣ ବିତରଣ କରନ୍ତି । ସଖା ସଖାର ଭାବକୁ ସର୍ବଦା ରକ୍ଷା-କରେ । ସଖାରେ କୃତରେ ବିକୃତ କରେନାହିଁ । ତେଣୁ ମନ୍ତ୍ରରେ କୁହା ଯାଇଛି—ଚାଲୁଣୀର ଚାଳନବେଳେ ତୁଷ ନିବାହାର କେବଳ ସକ୍ତୁ ବାହାରିଯିବା ପରି ଏହି ଦେବର୍ଷିମାନଙ୍କର ବାଣୀରେ କେବଳ ବେଦବାଣୀ ନିର୍ଗତ ହୁଏ । ଏଥିରେ ଏମାନଙ୍କ ମାନସିକ ବିଚାର ମିଶ୍ରଣ ହୁଏନାହିଁ । (୨)

ଏହି ବାଣୀହିଁ ବେଦବାଣୀ । ତୃତୀୟ ମନ୍ତ୍ରରେ କୁହାଯାଇଛି—ବେଦବାଣୀର ପଦ ଓ ଅର୍ଥ ସମ୍ବନ୍ଧୀ ସକଳ ଜ୍ଞାନ ଏହିରୂପେ ସର୍ବପୂଜ୍ୟ ପରମାତ୍ମାଙ୍କ ଦ୍ୱାରା ପ୍ରାପ୍ତ ହୁଏ । ଏହି ବେଦବାଣୀ ପ୍ରାପ୍ତ ହୋଇ ଅଦିମ ଋଷିମାନେ ସବୁ ସ୍ଥଳରେ ପ୍ରଚାର ଓ ପ୍ରସାର କରନ୍ତି । (୩)

ବ୍ରାହ୍ମଣ ଗ୍ରନ୍ଥକାର କହିଛନ୍ତି—'ସା ବା ଏଷା ବାକ୍ ଧେନୁ ବହିତା ଋଚେ ଯଜୂଂଷି 'ସାମାନି'—ଅର୍ଥାତ୍ ଏହି ବାଣୀହିଁ ଋକ-ବେଦାଦି ଜ୍ଞାନ । ଋକ୍‌ବେଦରେ ଅଛି—'ଦିବ୍ୟଗୁଣଯୁକ୍ତ ପରମେଶ୍ୱର ଶବ୍ଦବ୍ରହ୍ମରୂପୀ ବଳଦକୁ ମନୁଷ୍ୟ ମଧ୍ୟରେ ପ୍ରବେଶ କରାଇଲେ । ଏହାର ଚାରିଶୃଂଗ—ନାମ, ଆଖ୍ୟାତ, ଉପସର୍ଗ ଓ ନିପାତ । ତିନି ପାଦ—ଭୂତ, ଭବିଷ୍ୟତ ଓ ବର୍ତ୍ତମାନ । ଶିର—ଧ୍ୱନି । ହସ୍ତ—ବିଭକ୍ତି । କଂଠ ଓ ଶିର ସ୍ଥଳରେ ଏହି ବଳଦ ବନ୍ଧା ଯାଏ † ।' ଏଠାରେ ଆଳଂକାରିକ ରୂପରେ ବାଣୀ-ବୃଷ୍ଟିର ବ୍ୟାକରଣ ରହସ୍ୟକୁ ବୁଝାଇ ଦିଆ ଯାଇଛି । ଭାଷାଶାସ୍ତ୍ରର ପ୍ରଥମ ଉପାଦାନ ଗୁଡ଼ିକର ବିଜ୍ଞାନ ଏଠାରେ ଖୋଲି ଦିଆଯାଇଛି ।

ବାଣୀ ବିଜ୍ଞାନର ଦୁଇଟି ସନାତନ ସତ୍ୟ—ପ୍ରଥମ ହେଉଛି ବାଣୀ ଈଶ୍ୱର ସୃଷ୍ଟ ଓ ଦ୍ୱିତୀୟ ହେଉଛି ବାଣୀ ନିତ୍ୟ । ଆଧୁନିକ ଆବିଷ୍କୃତ ଫୋନୋଗ୍ରାଫ୍ ଯନ୍ତ୍ର ବାଣୀର ନିତ୍ୟତାକୁ ପରିପୁଷ୍ଟ କରେ । ବାଣୀ ସମ୍ବନ୍ଧରେ ଅଧ୍ୟାପକ ପାଠ୍ ଆଦି ପାଶ୍ଚାତ୍ୟ ପଣ୍ଡିତମାନେ ମଧ୍ୟ ଘୋଷଣା

---

† ଚତ୍ୱାରି ଶୃଙ୍ଗା ତ୍ରୟୋ ଅସ୍ୟ ପାଦା ଦ୍ୱେଶୀର୍ଷେ ସପ୍ତହସ୍ତାସୋ ଅସ୍ୟ ।
ତ୍ରିଧା ବଦ୍ଧୋ ବୃଷଭୋ ରୋରବୀତି ମହାଦେବୋ ମର୍ତ୍ତ୍ୟଂ ଆବିବେଶ ॥
(ଋକ୍ ୪, ୫୮, ୩)

କରିଛନ୍ତିଯେ ଭୌତିକ ଜଗତରେ ଯେଉଁପରି କୌଣସି ନୂତନ ପରମାଣୁ ସୃଷ୍ଟି ହୋଇନାହିଁ, ସେହିପରି ବାଣୀ ଜଗତରେ କୌଣସି ନୂତନ ବର୍ଣ୍ଣ, ଧାତୁ ବା ଶବ୍ଦର ସୃଷ୍ଟି ହୋଇନାହିଁ । ଆମ୍ଭେମାନେ ସେହି ବାଣୀର ବ୍ୟବହାର କରୁଛୁଁ ଯାହାକି ଆଦି-ମନୁଷ୍ୟ ସୃଷ୍ଟି ଆରମ୍ଭରେ ବ୍ୟବହାର କରୁଥିଲେ ।

ବାଣୀର ନିତ୍ୟତା ସମ୍ବନ୍ଧରେ ପଣ୍ଡିତ ଗୁରୁଦତ୍ତ ଏମ୍. ଏ. ଲେଖିଛନ୍ତି—'ଆଗାମୀ କଳ୍ପମାନଙ୍କରେ ମଧ୍ୟ 'ଓଁ' ଶବ୍ଦ ତାହାର ବର୍ତ୍ତମାନ ଅର୍ଥକୁ ପ୍ରକାଶ କରିବ ଯେହେତୁ ଶବ୍ଦମାନଙ୍କର ପଦାର୍ଥବୋଧ ନିୟମ-ରହିତ ନହୋଇ ନିୟମ-ବଦ୍ଧ ଅଟେ । ଏହା ସ୍ୱୀକୃତ ସତ୍ୟଯେ ଯେଉଁ-ମାନେ ଈଶ୍ୱରୋକ୍ତ ବିଦ୍ୟାକୁ ଜାଣନ୍ତି ବା ଯେଉଁ ଯୋଗୀମାନେ ଆଦି-ଜ୍ଞାନକୁ ସାକ୍ଷାତ କରି ବାଚକ ଚିହ୍ନ ଓ ବାଚ୍ୟ ପଦାର୍ଥର ସମ୍ବନ୍ଧକୁ ଜାଣନ୍ତି, ସେମାନେ ଶବ୍ଦ, ତାହାର ଭାବ ଓ ଏହି ଦୁଇ ସମ୍ବନ୍ଧକୁ ନିତ୍ୟ, ନୈସର୍ଗିକ ଓ ଅପୌରୁଷେୟ ବୋଲି ଉପଲବ୍ଧ କରନ୍ତି * ।'

---

* *Even in the cycles of creation to come, since words signify things not arbitrarily but a fixed natural standard, the same symbol 'Om' is made to express the same idea, because it is an established fact with those who know Revelation or those yogis who have realised that the relation between the signifying symbol and the thing signified is that the words, their corresponding ideas and the relations between them is eternal and exists in nature and not by human convention (Pt. Gurudatt M. A. on Mandukya Upanishad)*

'ଓଁ' ଶବ୍ଦ ସମ୍ବନ୍ଧରେ ଉପରୋକ୍ତ ସଂଜ୍ଞାଟି ବୈଦିକ ଭାଷାର ପ୍ରତ୍ୟେକ ଶବ୍ଦ ପାଇଁ ପ୍ରଯୁଜ୍ୟ । ପରବର୍ତ୍ତୀ ଏକ ଅଧ୍ୟାୟରେ ସୃଷ୍ଟିତତ୍ତ୍ୱ ସମ୍ବନ୍ଧରେ ଆଲୋଚନା କଲାବେଳେ ଅନୁଭୂତ ହେବ ଯେ ପ୍ରତି କଳ୍ପରେ ସୃଷ୍ଟିର ସକଳ ନିୟମ ସମାନ ରହେ । ଏହିରୂପେ ବାଣୀ-ଶାସ୍ତ୍ରର ନିୟମ ମଧ୍ୟ ସନାତନ ରହେ ।

ଆଦି ଅମୈଥୁନୀ ସୃଷ୍ଟିରେ ଜୀବ ତାହାର ପୂର୍ବକଳ୍ପର ସଂସ୍କାର ନେଇ ଆସେ । ଜ୍ଞାନ ସେତେବେଳେ ସୁପ୍ତ ଅବସ୍ଥାରେ ଥାଏ । ଅଧ୍ୟାପକ ବେନ୍ ଆଦି ପାଶ୍ଚାତ୍ୟ ପଣ୍ଡିତମାନେ ଏହାକୁ ତତ୍ତ୍ୱୋଦ୍ଭୂତ ଜ୍ଞାନ *(Latent Cerebrum)* ଆଖ୍ୟା ଦେଇଛନ୍ତି । ଆଦି ମନୁଷ୍ୟ ସମାଧିସ୍ଥ ଅବସ୍ଥାରେ ଏକ ନିମିତ୍ତ-ଶକ୍ତିର ପ୍ରେରଣାରେ ଶବ୍ଦ ଓ ଅର୍ଥ ଉପଲବ୍ଧ କରିଥାନ୍ତି । ତତ୍ତ୍ୱୋଦ୍ଭୂତ ଜ୍ଞାନ ଶବ୍ଦମୟ ରୂପରେ ସେତେବେଳେ ଜାଗ୍ରତ ହୁଏ । ସମସ୍ତ ସୃଷ୍ଟିର ନିମିତ୍ତ ପରମାତ୍ମାହିଁ ଏହି ପ୍ରେରଣାର ନିମିତ୍ତ । ଏହି ଶବ୍ଦମୟ ଜ୍ଞାନହିଁ ବେଦ ।

ଶରୀର ମଧ୍ୟରୁ ବାଣୀ-ଉଚ୍ଚାରଣର ବିଜ୍ଞାନକୁ ମହାଭାଷ୍ୟକାର ବ୍ୟାଖ୍ୟା କରିଛନ୍ତି—'ଆତ୍ମା ବୁଦ୍ଧିଯୁକ୍ତ ହୋଇ ମନକୁ ପ୍ରେରଣା ଦିଏ । ମନ କାୟାଗ୍ନି (ଶାରୀରିକ ବିଦ୍ୟୁତ)କୁ ତାଡ଼ନା ଦିଏ । ଏହି ବିଦ୍ୟୁତ ମାରୁତକୁ (ବାୟୁ) ସ୍ପନ୍ଦନ ଦିଏ । ଏଥିରୁ ବାକ୍ (ବୁଦ୍ଧିଯୁକ୍ତ ବାଣୀ) ଉତ୍ପନ୍ନ ହୁଏ † ।' ସର୍ବପ୍ରଥମେ ବୁଦ୍ଧି ସହ ଆତ୍ମାର ସଂଯୋଗ ପାଇଁ

---

† ଆତ୍ମବୁଦ୍ଧ୍ୟା ସମେତ୍ୟାର୍ଥାନ୍ ମନୋ ଯୁଙ୍କ୍ତେ ବିବକ୍ଷୟା । ମନଃ କାୟାଗ୍ନି ମାହନ୍ତି ସ ପ୍ରେରୟତି ମାରୁତମ୍ । ମାରୁତସ୍ତୂରସି ଚରନ୍ମନ୍ଦଂ ଜନୟତି ସ୍ୱରମ୍ । (ବ୍ୟାକରଣ ମହାଭାଷ୍ୟ)

ପରମାତ୍ମାଙ୍କୁ ପ୍ରେରଣାଦାତା ରୂପେ ମହାଭାଷ୍ୟକର୍ତ୍ତା ସଂବୋଧନ କରନ୍ତନ୍ତି ।

## ବୁଦ୍ଧି ପୂର୍ବା ବାକ୍ ପ୍ରକୃତର୍ବେଦେ

ଅଧ୍ୟାପକ ମେକ୍ସମୁଲେର୍ ଭାଷା ବିଜ୍ଞାନ ସମ୍ବନ୍ଧରେ ଆଲୋଚନା କଲାବେଳେ ଲେଖିଛନ୍ତି-'ଧ୍ୱନି ସମୂହ ଭାବନାକୁ କିପରି ପ୍ରକାଶ କରି ପାରନ୍ତି? ଧାତୁ ସମୂହ କେଉଁ ରୂପରେ ବସ୍ତୁରଧାର୍ଯ୍ୟର ସଂକେତ ଦେଇ ପାରିଲେ ? କେଉଁ ରୂପରେ 'ମା'ର ଅର୍ଥ ମାପିବା, 'ମନ୍'ର ଅର୍ଥ ବିଚାର କରିବା, 'ଗମ୍'ର ଅର୍ଥ ଯିବା, 'ସ୍ଥା'ର ଅର୍ଥ ରହିବା, 'ସଦ୍'ର ବସିବା, 'ଦା'ର ଦେବା, 'ମର୍'ର ମରିବା, 'ଚର୍'ର ଚଲିବା ଏବଂ 'କର୍'ର କରିବା ଅର୍ଥ ବ୍ୟବହୃତ ହେଲା † ?'

ଆଦି ବୈଦିକ ଭାଷାର ରଚନା କୌଶଳ ଆଲୋଚନା କରିବା ବେଳେ ଆମ୍ଭେମାନେ ଏହି ଭାଷାର ଅଭ୍ରାନ୍ତ ଓ ବୈଜ୍ଞାନିକ ଗଠନ ପ୍ରଣାଳୀକୁ ଲକ୍ଷ୍ୟ କରିଅଛୁ । ବୈଦିକ ଅକ୍ଷରବିଜ୍ଞାନ, ଧାତୁବିଜ୍ଞାନ ଓ ସଂଧିବିଜ୍ଞାନ କେଉଁରୂପେ ପୂର୍ଣ୍ଣଭାବେ ସାର୍ଥକ, ଏହାକୁ ହୃଦୟଂଗମ

---

† *How can sound express thought ? How did roots become signs of general ideas ? How was the abstract idea of measuring expressed by* ମା, *the idea of thinking by* ମନ୍ *? How did* ଗମ୍ *come to mean going,* ସ୍ଥା *standing,* ସଦ୍ *sitting,* ଦା *giving,* ମର୍ *dying,* ଚର୍ *walking and* କର୍ *doing? (Lectures on the Science of the Language Vol. I by Max-muller).*

କରଅଛୁ । ବୈଦିକ ଭାଷାର ପ୍ରତ୍ୟେକ ଅକ୍ଷର ଅର୍ଥଯୁକ୍ତ—'ଅର୍ଥବନ୍ତୋ ବର୍ଣ୍ଣାଃ' । ସେହିପରି ଅକ୍ଷରରୁ ଧାତୁ ଓ ଧାତୁରୁ ଶବ୍ଦ ଉତ୍ପନ୍ନ ହେବାବେଳେ ଅର୍ଥବନ୍ତ ହୋଇଥାନ୍ତି । ବୈଦିକ ଭାଷାର ଏହି ଆଧ୍ୟାତ୍ମିକତା ଉପଲବ୍ଧି କରିଗଲେ, ମେକ୍ସମୂଲରଙ୍କ ସାହେବଙ୍କ ଉପରୋକ୍ତ ସଂଦେହ ସହଜରେ ଦୂରୀଭୂତ ହୋଇଯାଏ ।

ଆଦିସୃଷ୍ଟିବେଳେ ମନୁଷ୍ୟ ଠାରେ ଆଦିଜ୍ଞାନ ବେଦର ପ୍ରକାଶ ହେବାବେଳେ ଏକ ନିମିତ୍ତ ବା ପ୍ରେରଣାଦାତାଙ୍କ ଆବଶ୍ୟକ ହୁଏ ବୋଲି ଚତୁର୍ଥ ଅଧ୍ୟାୟରେ ପ୍ରମାଣିତ ହୋଇଥିଲା । ସର୍ବସ୍ରଷ୍ଟା ପରମାତ୍ମାହିଁ ଏହି ପ୍ରେରଣାକର୍ତ୍ତା ବୋଲି ପ୍ରତିଷ୍ଠା କରାଯାଇଥିଲା । ସେଠାରେ ଏହି ପ୍ରତିଶ୍ରୁତି ଦିଆ ଯାଇଥିଲାଯେ ଏହି ଆଦି ଜ୍ଞାନର ବାହକ ରୂପେ ମନୁଷ୍ୟର ଆଦି ଭାଷାକୁ ପରୀକ୍ଷଣ କଲେ ଜଣାଯାଏଯେ ଏହା ପାଇଁ ମଧ୍ୟ ଏକ ପ୍ରେରଣାକର୍ତ୍ତାଙ୍କ ଆବଶ୍ୟକ ଅଛି । ପ୍ରକୃତରେ ଆଦି ଜ୍ଞାନ ଓ ଆଦି ଭାଷା ଦୁହିଁଙ୍କର ପ୍ରେରଣାଦାତା ଏକହିଁ ହୋଇ ପାରନ୍ତି ।

ବୈଦିକ ଭାଷାର ବୁଦ୍ଧିପୂର୍ବକ ରଚନାକୁ ଲକ୍ଷ୍ୟ କରି ସକଳ ମଂତ୍ରଦ୍ରଷ୍ଟା ଋଷି ଓ ଦାର୍ଶନିକ ଏହାକୁ ଈଶ୍ୱର-ପ୍ରକାଶିତ ବୋଲି ଗ୍ରହଣ କରି ନେଇଛନ୍ତି । ବୈଶେଷିକ ଦର୍ଶନଶାସ୍ତ୍ରର ରଚୟିତା ଋଷି କଣାଦ ତେଣୁ ଲେଖିଛନ୍ତି—'ବୁଦ୍ଧିପୂର୍ବା ବାକ୍ ପ୍ରକୃତିର୍ବେଦେ'--ବେଦବାଣୀର ରଚନା ପରମେଶ୍ୱର ବୁଦ୍ଧି ପୂର୍ବକ କରିଛନ୍ତି ।

## —ଷଷ୍ଠ ଅଧ୍ୟାୟ—

ମନୁଷ୍ୟର ଆଦି ଜ୍ଞାନ ବେଦ ପାଇଁ ସୃଷ୍ଟି ପ୍ରାରଂଭରେ ଏକ ନୈମିତ୍ତିକ ସତ୍ତ୍ୱର ପୂର୍ଣ୍ଣ ଆବଶ୍ୟକତା ଚତୁର୍ଥ ଅଧ୍ୟାୟରେ ଆଲୋଚିତ ହୋଇଛି । ଏହି ଜ୍ଞାନର ବାହକ ରୂପେ ବୈଦିକ ଭାଷାର ଅପୂର୍ବ ଓ ଚମତ୍କାର ରଚନା-ଶୈଳୀ ବର୍ଣ୍ଣନା କରାଯାଇ ବେଦକୁ ଈଶ୍ୱରନିଃଶ୍ୱସିତ ବୋଲି ପଂଚମ ଅଧ୍ୟାୟରେ ପ୍ରତିଷ୍ଠା କରାଯାଇଛି । ବେଦର ଧର୍ମ ଓ ଶିକ୍ଷା ସଂବନ୍ଧରେ ସମ୍ୟକ୍ ଅନୁଶୀଳନ କରି ପୂର୍ବୋକ୍ତ ପ୍ରମାଣମାନଙ୍କୁ ପୁଷ୍ଟ କରିବା ଏବର କାର୍ଯ୍ୟ ।

### ମନୁଷ୍ୟ ଓ ଧର୍ମ

କେଉଁ କାଳରେ କେଉଁ ସ୍ଥଳରେ ମନୁଷ୍ୟ ଧର୍ମଛଡ଼ା ହୋଇ ରହିନାହିଁ । ଶରୀରର ଅଙ୍ଗ ପ୍ରତ୍ୟଙ୍ଗ ପରି ସୃଷ୍ଟି ପାରଂଭରୁ ମନୁଷ୍ୟ ସହ

ଧର୍ମ ନାନା ଭାବେ ରହି ଅଛି । ମନୁଷ୍ୟ ଯେତେବେଳେ ବଧର୍ମୀ ବା ଭୌତିକବାଦୀ ବୋଲି 'ଧର୍ମ' ବିରୁଦ୍ଧରେ ହୁଙ୍କାର କରୁଛି, ସେତେବେଳେ ବି ଧର୍ମ ଏକ ନିକୃଷ୍ଟ ସ୍ତରରେ ତାହା ସହ ଲାଗିରହିଛି । ଗୋଟିଏ ଅଦୃଷ୍ଟ, ଉଚ୍ଚ ଶକ୍ତିଠାରେ ବିଶ୍ୱାସ ରଖି ଲୌକିକ ଓ ପାରଲୌକିକ ସୁଖପାଇଁ ଉଦ୍ୟମ କରିବାହିଁ ଧର୍ମର ଲକ୍ଷଣ । ଏହି ଅଦୃଷ୍ଟ ଶକ୍ତିକୁ କେହି ନିରାକାର ବୋଲି ବିଶ୍ୱାସ କରୁଛି ତ କେହି ସାକାର ବୋଲି କଳ୍ପନା କରୁଛି । କେହି ସର୍ବବ୍ୟାପକ ବୋଲି ମାନି ନେଉଛି ତ କେହି ସ୍ୱର୍ଗଲୋକ, କ୍ଷୀରସାଗର ବା ଆସମାନ୍‌ରେ ଆସୀନ ବୋଲି ବର୍ଣ୍ଣନା କରୁଛି । ଭାରତବର୍ଷର କେଉଁ ଆଦିବାସୀ ଏହି ଶକ୍ତିକୁ ଆକାଶର ବିଜୁଳି ଠାରେ ସନ୍ନିବେଶ କରୁଛି ତ ଆଫ୍ରିକାର କେଉଁ ଜଙ୍ଗଲ୍‌ବାସୀ ମେଘ ଗର୍ଜନ ଠାରେ ଏହାକୁ ବିଶ୍ୱାସ ରଖୁଛି । ଏହି ଶକ୍ତିକୁ କେହି ତୁଳସୀ ବୃକ୍ଷ ମୂଳେ ଦେଖି ପାରୁଛି ତ କେହି ପୃଥିବୀର ମାଧ୍ୟାକର୍ଷଣ ଶକ୍ତିଠାରେ ଉପଲବ୍ଧି କରୁଛି । କେହି ପ୍ରାକୃତିକ-ନିୟମ *(Natural Laws)* ନାମରେ ବିଶ୍ଳେଷଣ କରୁଛି ତ କେହି ସଚ୍ଚିଦାନନ୍ଦ ରୂପରେ ବର୍ଣ୍ଣନା କରୁଛି । ଗୋଟିଏ ଉଚ୍ଚ, ଜ୍ଞାନେଚ୍ଛା ଶକ୍ତି ଠାରେ ବିଶ୍ୱାସ ନରଖିବା ମନୁଷ୍ୟ ସଂସାରରେ କେହିନାହିଁ ।

ପଣ୍ଡିତ ଫ୍ଲିଣ୍ଟ୍ ଠିକ୍ କହିଛନ୍ତି—'ଧର୍ମ ଏକ ବିଶାଳ ଶକ୍ତି । ମନୁଷ୍ୟର ଜୀବନ ଓ ଇତିହାସ ସଙ୍ଗେ ଏହା ସମାନାନ୍ତର ଗତି କରେ । କୌଣସି ଜାତି ବା ଯୁଗ ଧର୍ମଶୂନ୍ୟ ହୋଇ ରହିଥିବା କଥା ସଂଦେହପୂର୍ଣ୍ଣ† ।'

---

† *Religion is certainly a very large phenomenon. It is practically co-extensive, indeed, with human life and history. It is doubtful if any people, any age has been without some religion.—The Theism By Flint.*

ଊନବିଂଶ ଶତାବ୍ଦୀର ବୈଜ୍ଞାନିକଗଣ (ବିଂଶ ଶତାବ୍ଦୀର ନୁହେ) 'ଧର୍ମ' ବିରୁଦ୍ଧରେ ଖଡ୍‌ଗହସ୍ତ ହୋଇ ବାହାରିଥିଲେ ବି ପ୍ଲାନ୍‌ଚେଟ୍‌ (*Planchette*), ସ୍ୱୟଂଚଳିତ ଯନ୍ତ୍ର (*Automatic Writing*), ପରଚିତ୍ତଜ୍ଞାନ (*Telepathy*) ଆଦି ଅଦୃଷ୍ଟ ଶକ୍ତି ଉପରେ ବିଶ୍ୱାସ ରଖିଥିଲେ । ତଥାକଥିତ ସାମ୍ୟବାଦ ଦର୍ଶନର ସୂତ୍ରଧାରମାନେ ଧର୍ମକୁ ମାଦକ ଦ୍ରବ୍ୟ (*Opium*) ରୂପେ ତିରସ୍କାର କରୁଥିଲେ ମଧ୍ୟ 'ଅଦ୍ଭୁତ ଶକ୍ତି' (*Mysterious Force*) ଆଦି ଅଦୃଷ୍ଟ ସଂଜ୍ଞାମାନ ପ୍ରୟୋଗ କରୁଛନ୍ତି । ରାଜନୈତିକ ଦୃଷ୍ଟିକୋଣରୁ ଏମାନେ ଈଶ୍ୱରଙ୍କ ଅସ୍ତିତ୍ୱ ଉପରେ ବିଶ୍ୱାସ ରଖୁନଥିଲେ ବି ବ୍ୟକ୍ତିଗତ ଭାବରେ ପ୍ରାୟ ପ୍ରତ୍ୟେକ ସଭାସମିତିରେ ଭାଷଣ ଦେବାବେଳେ ଈଶ୍ୱରଙ୍କ ନାମ ଘନ ଘନ ବ୍ୟବହାର କରୁଛନ୍ତି । ସଂସାରରେ ଯେଉଁ ସାମାନ୍ୟ କେତୋଟି ରାଷ୍ଟ୍ର ନିଜକୁ ଧର୍ମ-ନିରପେକ୍ଷ ବୋଲି ଘୋଷଣା କରିଛନ୍ତି, ସେମାନେ ପ୍ରତ୍ୟେକେ ଏକ ଏକ ଧର୍ମ ଉପରେ ପ୍ରତିଷ୍ଠିତ । ଧର୍ମ-ନିରପେକ୍ଷର ଅର୍ଥ ଧର୍ମଶୂନ୍ୟ ନୁହେ । ଏକ ଅଦୃଷ୍ଟ ଶକ୍ତି ଉପରେ ବିଶ୍ୱାସ ମନୁଷ୍ୟର ସହଜାତ ପ୍ରବୃତ୍ତି ରୂପେ ସୃଷ୍ଟି ପ୍ରାରମ୍ଭରୁ ରହି ଆସିଛି । ମନୁଷ୍ୟ ନିଜକୁ 'ଅଳ୍ପ' ବୋଲି ଉପଲବ୍ଧି କରେ । ସେ ବୁଝେ ଯେ ଏକ ବୃହତ୍ତର ଅଦୃଷ୍ଟ ଶକ୍ତିର ପ୍ରାକୃତିକ ନିୟମ ବିଶ୍ୱର ସକଳ ଗତି ଉପରେ ନିୟନ୍ତ୍ରଣ କରେ ।

ପ୍ରାଚୀନ ଆର୍ଯ୍ୟ ଏହି ଆସ୍ତିକ ବିଚାରର ଏକ ପୂର୍ଣ୍ଣ ରୂପ ଦେଖି ପାରିଥିଲେ । ତେଣୁ ତାର ଧର୍ମ ସର୍ବତୋମୁଖୀ ଥିଲା । ଧର୍ମ ସହ ସେ ଅଙ୍ଗାଙ୍ଗୀ ହୋଇ ରହିଥିଲା । କୌଣସି ପ୍ରାଚୀନ ଗ୍ରନ୍ଥରେ 'ଧର୍ମର ଆବଶ୍ୟକତା କଣ' ?— ଏ ସମ୍ବନ୍ଧରେ ଆଲୋଚନା ହୋଇନାହିଁ । କିନ୍ତୁ ଏ ସବୁରେ 'ଧର୍ମ କଣ' ବା 'ଧର୍ମର ଲକ୍ଷଣ କଣ' ଏ ସମ୍ବନ୍ଧରେ ପ୍ରଗଲ୍‌ଭ

ଆଲୋଚନା ହୋଇଛି । ଏହାର ଏକମାତ୍ର କାରଣ ହେଉଛି ଯେ ପ୍ରାଚୀନ ମନୁଷ୍ୟ ହସ୍ତ, ପଦ, ଜିହ୍ୱାଦି ଶରୀରର ଅଙ୍ଗ ପ୍ରତ୍ୟଙ୍ଗ ପରି ଧର୍ମକୁ ଏକ ଅଂଗ ବୋଲି ବିଚାରୁଥିଲା । ତେଣୁ ସେ ତାର 'ଆବଶ୍ୟକତା' ସମ୍ବନ୍ଧରେ ଆଲୋଚନା ନକରି ତାର 'ସ୍ୱରୂପ' ଉପଲବ୍ଧି କରିବାରେ ଚିନ୍ତାଶୀଳ ଥିଲା । ପୁଣି ଏହି ଉପଲବ୍ଧ ଧର୍ମର ସୁରକ୍ଷା ପାଇଁ ସେ ଆପ୍ରାଣ ଉଦ୍ୟମ କରୁଥିଲା । ଜଣେ ପ୍ରାଚୀନ କବି ଗାଇଛନ୍ତି—

ଧର୍ମ ଏବ ହତୋ ହନ୍ତି<br>
ଧର୍ମୋ ରକ୍ଷତି ରକ୍ଷିତଃ ।<br>
ତସ୍ମାତ୍ ଧର୍ମୋ ନ ହନ୍ତବ୍ୟୋ<br>
ମାନୋ ଧର୍ମଃ ହତୋ ବଧୀତ ।

ଅର୍ଥାତ—ନଷ୍ଟ ଧର୍ମ ମନୁଷ୍ୟଙ୍କୁ ନଷ୍ଟ କରିଦିଏ ଓ ସୁରକ୍ଷିତ ଧର୍ମ ମନୁଷ୍ୟକୁ ରକ୍ଷା କରେ । ଏଥିହେତୁ ଧର୍ମକୁ ନାଶ କରିବା ଉଚିତ ନୁହେ ଯେହେତୁ ଏଥିରେ ଆମେ ବି ନଷ୍ଟ ଯାଉଁ ।

## ଧର୍ମର ସ୍ରୋତ

ସଂସାରରେ ଭାଷା ସଂଖ୍ୟା ବଢ଼ି ଚାଲିଥିବା ପରି ଧର୍ମ ସଂଖ୍ୟା ମଧ୍ୟ ବଢ଼ିଚାଲିଛି । କେତେକ ଭାଷା ଲିଖିତ ଓ କେତେକ କେବଳ କଥିତ ହୋଇଥିବା ପରି, କେତେକ ଧର୍ମ ପ୍ରତିଷ୍ଠିତ ଓ ପ୍ରସାରିତ ପୁଣି ଅନ୍ୟ କେତେକ ଅପ୍ରତିଷ୍ଠିତ ଓ ସଂକୁଚିତ ହୋଇ ରହିଛି । ଭାରତବର୍ଷର କୋଣ୍ଡ୍, ସନ୍ତାଳ, କନ୍ଧ, କୋହଲ ଆଦିଙ୍କ ଧର୍ମ ବା ଦକ୍ଷିଣ ଆଫ୍ରିକାର ଜୁଲୁ, ହଟେଣ୍ଟଟ୍ ଆଦିଙ୍କ ଧର୍ମ ଏହିରୂପେ ଅପ୍ରତିଷ୍ଠିତ ଓ ସଂକୁଚିତ ହୋଇ ରହିଛି । ଆଜି ମନୁଷ୍ୟ ଯେତେବେଳେ ସାମାଜିକ ସମସ୍ୟାର ବର୍ଦ୍ଧନ

ବୃଷ୍ଟିରୁ ପୃଥିବୀର ବିଭିନ୍ନ ସ୍ଥଳରେ ବିକ୍ଷିପ୍ତ ହୋଇଗଲେ, ବିଭିନ୍ନ ସ୍ଥଳର ଭୂଗୋଳ ଓ ପରିସ୍ଥିତିର ପ୍ରଭାବରେ ଆଦିଭାଷା ଅନେକ ହୋଇଗଲା । ଠିକ୍ ସେହିପରି ଆଦି ମନୁଷ୍ୟଙ୍କ ମଧ୍ୟରେ ଦାର୍ଶନିକ ବିଶ୍ୱାସର ପରିବର୍ତ୍ତନ ଘଟିବାରୁ ଆଦି ଧର୍ମ ବି ଅନେକ ହୋଇଗଲା । ପରେ ୨ ଏହି ସବୁ ଧର୍ମରେ ଯେତେବେଳେ ଅନ୍ଧବିଶ୍ୱାସର ମାତ୍ରା ବଢ଼ିଚାଲିଲା, ବିଭିନ୍ନ ସ୍ଥଳରେ ଓ ଯୁଗରେ ଧର୍ମ ସଂଶୋଧକମାନେ ଜନ୍ମ-ଗ୍ରହଣ କରି ପ୍ରଚଳିତ ଧର୍ମରେ ବିଭିନ୍ନ ଦାର୍ଶନିକ ତଥ୍ୟର ମିଶ୍ରଣ କଲେ । ଏହି ଆବର୍ତ୍ତନ ସବୁ ଯୁଗରେ ହୁଏ । ଏହି ରୂପେ ଆଦି ଧର୍ମ ଅନେକ ହୋଇଛି ଓ ହେଉଛି । ତେବେ ଏ ସମସ୍ତଙ୍କୁ ଧର୍ମରୂପେ ଘେନେଇ ଦିଆଯିବ ବା ଏମାନଙ୍କୁ ଅନ୍ୟ କୌଣସି ସଂଜ୍ଞାବାଚୀ କରାଯିବ, ତାହା ପରେ ବିଚାର ହେବ । ବ୍ୟାବହାରିକ ଭାଷାରେ ଏ ସମସ୍ତଙ୍କୁ 'ଧର୍ମ' ବୋଲି ଲୋକେ ଗ୍ରହଣ କରିଥିବା ହେତୁ, ବର୍ତ୍ତମାନ ପାଇଁ ଏସବୁକୁ ଧର୍ମ ନାମରେ ଉଲ୍ଲେଖ କରାଯାଉଛି ।

ଯେତେବେଳେ ବୈଦିକ ଏକେଶ୍ୱରବାଦ କ୍ରମେ ବହୁଦେବତା-ବାଦରେ ପରିଣତ ହେଲା, ସେତେବେଳେ ମହାତ୍ମା ଜରଥୁସ୍ତ୍ର ଏକେ-ଶ୍ୱରଙ୍କ ଉପାସନା ଲାଗି ଉପଦେଶ ଦେଇଥିଲେ । ସେହିପରି ବୈଦିକ ଯଜ୍ଞ ନାମରେ ଯେତେବେଳେ ନିରୀହ ପଶୁପକ୍ଷୀଙ୍କୁ ବଳି ଦିଆଗଲା ଓ ମନୁଷ୍ୟ ସମାଜକୁ ସହସ୍ର ୨ ଜାତି ବିଭାଗରେ ସଂକୀର୍ଣ୍ଣ କରି ଦିଆଗଲା, ସେତେବେଳେ ଏହି ସବୁର ପ୍ରତିରୋଧ ପାଇଁ ମହାତ୍ମା ବୁଦ୍ଧ ଧର୍ମ ପ୍ରଚାରକଲେ । ଜରଥୁସ୍ତି (ପାରସୀ) ଧର୍ମ ଯେତେବେଳେ ଅବଲୁପ୍ତ ହେବାକୁ ବସିଲା, ଇହୁଦୀ ଓ ଖ୍ରୀଷ୍ଟିଆନ ଧର୍ମ ସଂସ୍କାର ଆଶାରେ ମୁଣ୍ଡ ଟେକିଲେ । ଖ୍ରୀଷ୍ଟିଆନ ଧର୍ମରେ ଈଶ୍ୱର-ବିଶ୍ୱାସ ଯେତେବେଳେ ବିରୂପ

ହୋଇ ପଡ଼ିଲା, ଯେତେବେଳେ ମହମ୍ମଦ ମୁସଲମାନ ଧର୍ମ ଆରମ୍ଭ କଲେ । ଏଣେ ଭାରତବର୍ଷରେ ବୈଦିକ ଧର୍ମର ଅପପ୍ରଚାର ହେଉଥିବା ସମୟରେ ଶଂକର, ଦୟାନନ୍ଦ, କବୀର, ନାନକ, ଦାଦୁ, ଚୈତନ୍ୟ, ରାମମୋହନ ଆଦି ଧର୍ମସଂଶୋଧକମାନେ ଜନ୍ମଗ୍ରହଣ କରିଥିଲେ ।

## ବେଦ-ଜିଂଦାବସ୍ତା-ପେଂଟାଚୁସ୍-ତ୍ରିପିଟକ-ବାଇବେଲ୍-କୋରାନ୍ ଓ ପୁରାଣ

କାଳସ୍ରୋତରେ ମନୁଷ୍ୟର ଆଦିଧର୍ମ ବହୁରୂପରେ ଦେଖାଦେଇଛି ପରଂତୁ ଏହି ସବୁ ପରବର୍ତ୍ତୀ ଧର୍ମ ମାନଙ୍କରେ କୌଣସି ନୂତନତା ନାହିଁ ; ଗୋଟିଏ ମାତ୍ର ମୌଳିକ ଧର୍ମ ଉପରେ ଏ ସମସ୍ତ ଆଶ୍ରିତ । ଧର୍ମର ଆଚରଣରେ ଅନ୍ଧ ବିଶ୍ୱାସ ଓ ସ୍ୱାର୍ଥଭାବ ପ୍ରବେଶ କଲେ କେହି ସଂଶୋଧକ ସେ ସବୁର ସଂଶୋଧନ କରିବାପରେ ତାହାଂକର ସମର୍ଥକମାନେ ଏକ ନୂତନ ଧର୍ମର ପ୍ରଚାର ଆରଂଭ କରି ଆସିଛନ୍ତି । ପରଂତୁ ଏହି ସବୁ ନୂତନ ଧର୍ମ ଆଦି ଧର୍ମପରି ନିର୍ଭୁଲ ଓ ପରିପୂର୍ଣ୍ଣ ନୁହେ । ଏହି ସବୁରେ ଲୌକିକ ଓ ପରଲୌକିକ ସିଦ୍ଧାନ୍ତମାନଙ୍କ ଯୁକ୍ତିଯୁକ୍ତ ଓ ପରିପୂର୍ଣ୍ଣ ରୂପ ମିଳେ ନାହିଁ ।

ସଂସାରରେ ପ୍ରଚଳିତ ପ୍ରଧାନ ଛଅଟି ଧର୍ମ—ବୈଦିକ, ପାରସୀ ଇହୁଦୀ, ବୌଦ୍ଧ, ଖ୍ରୀଷ୍ଟିଆନ ଓ ମୁସଲମାନର ଉପରୋକ୍ତ ଧର୍ମଗ୍ରନ୍ଥମାନ ଆଲୋଚନା କଲେ ଜଣାଯାଏଯେ ଏମାନଙ୍କ ମଧ୍ୟରେ ରକ୍ତଗତ ସଂପର୍କ ରହିଛି । ଉପର୍ଯ୍ୟୁକ୍ତ ଧର୍ମ ସମୟ କ୍ରମେ ଲକ୍ଷିତ । ଅର୍ଥାତ ବୈଦିକ ଧର୍ମରୁ ପାରସୀ ଧର୍ମ, ପାରସୀରୁ ଇହୁଦୀ, ବୈଦିକ ଧର୍ମରୁ ବୌଦ୍ଧ, ଇହୁଦୀ ଓ ବୌଦ୍ଧରୁ ଖ୍ରୀଷ୍ଟିଆନ ଓ ଇହୁଦୀରୁ ମୁସଲମାନ ଧର୍ମର ଜନ୍ମ ।

ସୃଷ୍ଟି ଉତ୍ପତ୍ତିର ଘଟଣା ବେଦରେ ଯେଉଁ ରୂପରେ 'ମୀମାଂସା' କରାଯାଇଛି, ତାହା ବାଇବେଲ, କୋରାନାଦିରେ ଅଧସ୍ତନ ହେବାବେଳକୁ 'ରହସ୍ୟ' ରେ ପରିଣତ ହୋଇ ଯାଇଅଛି । ଅର୍ଥାତ ଏହି ପରବର୍ତ୍ତୀ ଶାସ୍ତ୍ରମାନଙ୍କରେ ସୃଷ୍ଟି ଉତ୍ପତ୍ତି କିଂଭୂତକିମାକାର ଭାବରେ ବର୍ଣ୍ଣନା କରାଯାଇଛି । ବେଦର ପରିପୂର୍ଣ୍ଣ ବିବରଣ ଏ ସବୁରେ ଅପୂର୍ଣ୍ଣ ରୂପରେ ଦର୍ଶିତ ହୋଇଛି ଓ ଏହି ଅସଂପୂର୍ଣ୍ଣ ରୂପକୁ ବିଶ୍ୱାସ କରି ନେବାପାଇଁ ସୃଷ୍ଟି ଉତ୍ପତ୍ତିକୁ 'ରହସ୍ୟ' ବୋଲି କୁହାଯାଇଛି । ସୃଷ୍ଟି ଉତ୍ପତ୍ତିର 'ପ୍ରକୃତି' (ପଂଚମହାଭୂତାଦି) ଈଶ୍ୱରଙ୍କ ସୃଷ୍ଟିର 'ଉପାଦାନ କାରଣ' (*Material Cause*) ରୂପ 'ଅନାଦି' ବୋଲି ବେଦରେ ବର୍ଣ୍ଣିତ ହେବାବେଳେ, ପରବର୍ତ୍ତୀ ଗ୍ରନ୍ଥମାନଙ୍କରେ ଏସବୁ 'ଅଜ୍ଞାନ'ରେ ରହିଯାଏ । ଏସବୁରେ ସୃଷ୍ଟି 'ଅଭାବ' (*Vacuum*)ରୁ ଜାତ ହୁଏ । ବିଜ୍ଞାନ କେବଳ ବିଶ୍ୱାସ ହୋଇଯାଏ । ବୈଦିକ ସୃଷ୍ଟିକାଳର ଚଉଦ ମନୁରୁ ଛଅ ମନୁ (ସମୟର ଏକ ବିଭାଗ) ରେ ସମସ୍ତ ସର୍ଜନା ପୂର୍ଣ୍ଣ ହେବା ପରି କ୍ରମାବସ୍ଥାରେ ଛଅ-କାଳ, ବାଇବେଲ ଓ କୋରାନ୍‌ରେ ଛଅ ଦିନରେ ସୃଷ୍ଟି ସମାପ୍ତ ହୁଏ । ବେଦ ବର୍ଣ୍ଣିତ ସୃଷ୍ଟିଚକ୍ର ଅନାଦି ଓ ଅନନ୍ତ ହୋଇଥିବା ସ୍ଥଳେ, ଏହା କଂଦାବସ୍ଥାରୁ ବାଇବେଲ ଓ କୋରାନ୍‌କୁ ଗତି କରିବାବେଳେ ସୀମିତ ହୋଇପଡ଼େ—ସୃଷ୍ଟିଚକ୍ର କେବଳ ପ୍ରଚଳିତ ଏକ ସୃଷ୍ଟିରେ ସୀମାବଦ୍ଧ ହୋଇପଡ଼େ ।

ଏଣେ ଭାରତବର୍ଷରେ ବୈଦିକ ଧର୍ମରୁ ବୌଦ୍ଧଧର୍ମ ଜାତ ହୁଏ । ବୈଦିକ ଧର୍ମର ଈଶ୍ୱର ବିଶ୍ୱାସ, ପୁନର୍ଜନ୍ମ ଆଦି 'ଆସ୍ତିକବାଦୀ' ସିଦ୍ଧାନ୍ତକୁ ଏହିଧର୍ମ 'ଅଜ୍ଞେୟବାଦୀ' ରୂପରେ ଖଣ୍ଡିଦିଏ । ତାହାର ଜନ୍ମକାଳୀନ ଏକ ବୀଭତ୍ସ ପରିସ୍ଥିତିର ସମ୍ମୁଖୀନ ହୋଇ ୨, ସେ ସୃଷ୍ଟି, ସ୍ରଷ୍ଟା

ଓ ସଦାଚାରର ଉପଲବ୍ଧି ପାଇଁ ଦୀର୍ଘ ଦୃଷ୍ଟି ହରାଇ ବସେ । ଆତ୍ମ-ସଂଯମ, ଆତ୍ମ-ପ୍ରତ୍ୟୟ ଆଦିର ଉପଦେଶ ଦେଇ ମଧ୍ୟ ପରମାତ୍ମବୋଧର ଅସ୍ତିତ୍ୱ ଉପରେ ସଂଦେହ ଦୃଷ୍ଟି ପକାଏ । ଶ୍ରେଷ୍ଠ ଆଦର୍ଶକୁ ଆଗରେ ନରଖି ଅନୁକରଣ କରି ବସେ । ସାମୟିକ ସମାଧାନ ଆଶାରେ ଶାଶ୍ୱତ-ନୀତିକୁ ଭୁଲି ଯାଏ । ଅଜ୍ଞେୟବାଦୀ ଦର୍ଶନର ପ୍ରଚାର ପାଇଁ 'ତ୍ରିପିଟକ' ଗ୍ରନ୍ଥ ରଚନା କରେ ।

ବୌଦ୍ଧଧର୍ମର ଅଜ୍ଞେୟବାଦୀ ସ୍ୱଭାବର ମଧ୍ୟାହ୍ନବେଳେ ଏ ଦେଶରେ ବାମମାର୍ଗୀ ମାନଙ୍କର ଉତ୍ପାତ ସୃଷ୍ଟି ହୁଏ । 'ଧର୍ମ' ଏକ ପ୍ରଲୀନ ଅବସ୍ଥାରେ ରହେ । ବାମମାର୍ଗୀମାନେ ଶାସ୍ତ୍ର ଓ ଶାସ୍ତ୍ରାର୍ଥକୁ ବିକୃତ କରନ୍ତି । ମଦ୍ୟପାନ, ସ୍ତ୍ରୀହରଣ, ଲିଂଗପୂଜନାଦି ପୈଶାଚିକ କର୍ମକୁ ଗଙ୍ଗାସ୍ନାନ, ବୈକୁଣ୍ଠପ୍ରାପ୍ତି ଆଦି ନାମକରଣ କରି ଜାଲ ଗ୍ରନ୍ଥମାନ ରଚନା କରନ୍ତି । ବହୁ ନକଲି ବେଦ ରଚିତ ହୁଏ । ଏହି ବିକଟ ପରିସ୍ଥିତିରେ ଚାର୍ବାକମତ ଜନ୍ମଲାଭ କରେ । ବହୁ ଧର୍ମଗ୍ରନ୍ଥକୁ ନଷ୍ଟ କରାଯାଏ । ନାସ୍ତିକବାଦୀ ସିଦ୍ଧାନ୍ତ ସ୍ୱଭାବ କରେ । ଏତିକିବେଳେ ବେଦର ପୁନରୁଦ୍ଧାର ପାଇଁ ଆଦିଶଂକର ଜନ୍ମ ହୁଅନ୍ତି । କିନ୍ତୁ ଶଂକରଙ୍କ ମାୟାବାଦୀ ଦର୍ଶନରେ ବେଦୋଦ୍ଧାରର ଆଶା ପରାହତ ହୁଏ । ନାସ୍ତିକ-ବାଦରୁ ମିଥ୍ୟାବାଦର ଜନ୍ମ ହୁଏ । 'ତ୍ରିପିଟକ'ର ଖଣ୍ଡନପାଇଁ 'ପ୍ରସ୍ଥାନ-ତ୍ରୟୀ' ରଚିତ ହୁଏ ।

ପରମାତ୍ମାଙ୍କୁ ପୂର୍ଣ୍ଣ, ସର୍ବବ୍ୟାପୀ ଓ ଅଦ୍ୱିତୀୟ ଭାବରେ ବେଦ ବର୍ଣ୍ଣନା କରେ । ବେଦର ଏହି ବର୍ଣ୍ଣନା ଜେଂଦାବସ୍ତାରେ ସହିଂଚି, ଅତଏବ ଗଭୀରତରେ । ଜେଂଦାବସ୍ତାର ଈଶ୍ୱର 'ଅହୁର ମଜଦା'

(ସଂସ୍କୃତ ଅସୁରମେଧାରୁ ଜାତ) ମହାତ୍ମା ଜରୁଦସ୍ତଙ୍କ ସହ ଆଳାପ କରନ୍ତି । ଜେଂଦାବସ୍ତାରୁ ବାଇବେଲ୍‌ରେ ପହଂଚ ପରମେଶ୍ୱର ମନୁଷ୍ୟ ପରି ଅନୁତାପ କରନ୍ତି । ଦୁଃଖ ଓ କ୍ରୋଧରେ ବେଳେ ୨ ଜର୍ଜରିତ ହୋଇ ଉଠନ୍ତି । ସଂସାରର ମନୁଷ୍ୟ, ପଶୁ ଆଦିଙ୍କୁ ଧ୍ୱଂସ କରିବା ପାଇଁ ବେଳେ ୨ ହୀନ ପ୍ରତିଜ୍ଞା କରି ବସନ୍ତି । ବାଇବେଲରୁ କୋରାନ୍‌ରେ ପହଂଚିବାବେଳେ ଭାବନାର କେନ୍ଦ୍ର ନଷ୍ଟ ହୋଇଯାଏ । ବର୍ଣ୍ଣନାରେ ଦୁର୍ଗନ୍ଧ ବଢ଼ିଚାଲେ । ଏଠାରେ ଅଲ୍ଲା ସିଂହାସନ ଉପରେ ବସନ୍ତି, କାଫିର୍‌ଙ୍କୁ ଅଭିଶାପ ଦିଅନ୍ତି, ଏକ ସ୍ୱେଚ୍ଛାଚାରୀ ସମ୍ରାଟ ପରି ଯାହାକୁ ଚାହାନ୍ତି ଦଣ୍ଡ ଓ କ୍ଷମା ଦିଅନ୍ତି । ବେଦର ନିର୍ବିକାର ପରମାତ୍ମା ବାଇବେଲ ଓ କୋରାନ୍‌ରେ ପହଂଚିବା ବେଳକୁ ବିକାରଗ୍ରସ୍ତ ହୋଇ ପଡନ୍ତି— ବେଦ ବର୍ଣ୍ଣିତ ଈଶ୍ୱରଙ୍କ ନ୍ୟାୟକାରିତା କ୍ରମଶଃ ସ୍ୱେଚ୍ଛାଚାରିତାରେ ପରିଣତ ହୁଏ । ଏଣେ ବୈଦିକ ଧର୍ମର ଲୀଳାଭୂମି ଆର୍ଯ୍ୟାବର୍ତ୍ତରେ ବହୁ ହୀନ ଶାସ୍ତ୍ରର ପ୍ରଚାର ହୁଏ । ହଜାରେ ପନ୍ଦର ଶହ ବର୍ଷର କେତେକ ନବୀନ ଗ୍ରନ୍ଥ ପାଂଚହଜାର ବର୍ଷ ତଳର ମହର୍ଷି ବେଦବ୍ୟାସଙ୍କ ନାମରେ ଭଣିତ ହୋଇ 'ପୁରାଣ' ନାମରେ କଥିତ ହୁଅନ୍ତି । ଏସବୁ ପୁରାଣରେ ବେଦବର୍ଣ୍ଣିତ ଈଶ୍ୱର ଖଣ୍ଡ ୨ ହୋଇଯାନ୍ତି—ବହୁ ଦେବତା-ବାଦର ନିକୃଷ୍ଟ କଳ୍ପନାରେ ବିରୂପ ହୋଇ ପଡ଼ନ୍ତି । ବେଦୋକ୍ତ ଅଦ୍ୱିତୀୟ ପରମବ୍ରହ୍ମଙ୍କ 'ଅମୃତସ୍ୟ ପୁତ୍ରାଃ' ତାଙ୍କର ନାମରେ ଦଳ, ପନ୍ଥା, ମତ ଓ ସଂପ୍ରଦାୟରେ ଖଣ୍ଡବିଖଣ୍ଡିତ ହୋଇ ନୈତିକ ଓ ରାଜ-ନୈତିକ ସ୍ୱାତନ୍ତ୍ର୍ୟ ହରାଇ ବସନ୍ତି !

ବୈଦିକ ଧର୍ମରୁ ଜରୁଦସ୍ତୀ ଧର୍ମର ଉତ୍ପତ୍ତି । ବେଦର ଲୋକ ଓ ପରଲୋକ ସଂବନ୍ଧୀୟ ବିଚାର, ଯଜ୍ଞ ଓ ଗୋପ୍ରତିଷ୍ଠା, ବର୍ଣ୍ଣ ବ୍ୟବସ୍ଥା,

ପୁନର୍ଜନ୍ମ ସିଦ୍ଧାନ୍ତ ଓ ସର୍ବୋପରି ବେଦର ଭାଷା-ଛନ୍ଦ ସହ ଏହି ଧର୍ମର ଏପରି ସାମଂଜସ୍ୟ ଏତେ ଦୃଢ଼ଯେ, ଏହା ବୈଦିକ ଧର୍ମର ଏକ ବିକୃତାଂଶ ବୋଲି ସହଜେ ଜଣାଯାଏ । ଜରୁଷ୍ଟ୍ରୀ ଧର୍ମରୁ ଇହୁଦୀ ଧର୍ମର ଜନ୍ମ । ସ୍ୱର୍ଗନରକ, ସୃଷ୍ଟିଉତ୍ପତ୍ତି ଓ ଈଶ୍ୱର ସମ୍ବନ୍ଧୀୟ ବିଚାରକୁ ନିରୀକ୍ଷଣ କଲେ ଜିନ୍ଦାବସ୍ତା ଓ ପେଣ୍ଟାଟୁକ୍ ଗ୍ରନ୍ଥ (ଇହୁଦୀ ଧର୍ମଶାସ୍ତ୍ର) ମଧ୍ୟରେ ସଂପର୍କର ମାତ୍ରା ସହଜରେ ବୁଝାଯାଏ । ଡାଃ ସ୍ପିଗଲ୍ ଆଦି ପଣ୍ଡିତଙ୍କ ମତରେ ପାରସୀ ମତର ପ୍ରତିଷ୍ଠାତା 'ଜରୁଷ୍ଟ୍ରୀ' ଓ ଇହୁଦୀଙ୍କ ପ୍ରଥମ ପୈଗମ୍ବର (ଈଶ୍ୱର ଦୂତ) 'ଇବ୍ରାହିମ୍' ଦୁହେଁ ସମକାଳୀନ ଥିଲେ । ଏ ଦୁହିଁଙ୍କ ମଧ୍ୟରେ ବିଚାରର ଆଦାନ ପ୍ରଦାନ ହେଉଥିଲା ।

ଖ୍ରୀଷ୍ଟିଆନ ଧର୍ମ ସମ୍ବନ୍ଧରେ ସୋପେନହର୍ ଲେଖିଛନ୍ତି—'ଖ୍ରୀଷ୍ଟିଆନ ଧର୍ମ ଭାରତବର୍ଷର ବିଜ୍ଞାନରୁ ବାହାରି ଇହୁଦୀ ମତରୂପୀ ବିଦେଶୀ ବୃକ୍ଷରେ ପ୍ରବେଶ କଲା † ।' ଖ୍ରୀଷ୍ଟଙ୍କ ଜନ୍ମ ପୂର୍ବରୁ ବୌଦ୍ଧ ଧର୍ମର ପ୍ରଚାର ପାଲେଷ୍ଟାଇନ ଦେଶରେ ହୋଇ ସାରିଥିଲା । ବହୁ ବୌଦ୍ଧ ଭିକ୍ଷୁଙ୍କ ସହ ଖ୍ରୀଷ୍ଟଙ୍କ ସଂସର୍ଗ ଥିଲା । ଖ୍ରୀଷ୍ଟ ଓ ବୌଦ୍ଧ ଧର୍ମର ଉପଦେଶ, ସଂସ୍କାର, ଏପରିକି ମଂଦିର ନିର୍ମାଣ ବିଧି ମଧ୍ୟରେ ବହୁ ସାମଂଜସ୍ୟ ମିଳେ । ଏହିରୂପେ ଖ୍ରୀଷ୍ଟିଆନ୍ ଧର୍ମର ସଦାଚାରିକ ସିଦ୍ଧାନ୍ତ ବୌଦ୍ଧଧର୍ମରୁ ଗୃହୀତ । ଏହି ଧର୍ମର ସମସ୍ତ ଆଧ୍ୟାତ୍ମିକ ସିଦ୍ଧାନ୍ତ ଇହୁଦୀ ଧର୍ମରୁ ଗୃହୀତ । ଏକଥା ଖ୍ରୀଷ୍ଟଙ୍କ ଅନୁଗାମୀମାନେ ମୁକ୍ତ କଂଠରେ ସ୍ୱୀକାର କରିଛନ୍ତି ।

ମୁସଲମାନ ଧର୍ମର ସୃଷ୍ଟି ଉତ୍ପତ୍ତି, ପ୍ରଳୟ, ମୃତୋତ୍ଥାନ, ନ୍ୟାୟଦିବସ, ଈଶ୍ୱର ଅବତାନ, ରୋଜେ (ଉପବାସ), ଖୈରାତ (ଦାନ),

† Vide Religion and Other Essays By Schoupenhaur

ରନ୍ତୁ ବବାଦ ଅଠି ସକଲ ସିଦ୍ଧାନ୍ତ ଇହୁଦୀ ମତରୁ ଗୃହୀତ । କୋରାନ୍‌ର ଧର୍ମ କୌଣସି ନବୀନ ଧର୍ମ ନୁହେ ।

ଏହିରୂପେ ପାରସୀ, ଇହୁଦୀ, ବୌଦ୍ଧ, ଖ୍ରିଷ୍ଟିଅନ ଓ ମୁସଲମାନ ଧର୍ମ ଅଦିମ ବୈଦିକ ଧର୍ମର ଭାବାନ୍ତର ଓ ଅପଭ୍ରଂଶ ମାତ୍ର । ଏଠାରେ ଏସବୁର ବିସ୍ତୃତ ଆଲୋଚନା କରିବା ସଂଭବ ନୁହେ । କେବଳ ଏତକମାତ୍ର ଦିଗ୍‌ଦର୍ଶନ କରାଇବା ଉଦ୍ଦେଶ୍ୟ ଯେ ଧର୍ମ ସଂସାରରେ ସୃଷ୍ଟି ଆରଂଭରୁ କୌଣସି ନୂତନ ତଥ୍ୟର ଅବିର୍ଭାବ ହୋଇନାହିଁ । ବେଦର ସମସ୍ତ ଶିକ୍ଷା କିରୂପେ ଅନ୍ୟାନ୍ୟ ଧର୍ମ ଶାସ୍ତ୍ରରେ ବିକୃତ ରୂପରେ ପ୍ରଚଳିତ ହେଉଛି, ତାହାର ଦୁଇ ତିନୋଟି ଉଦାହରଣ ନିମ୍ନରେ ଦିଆଗଲା ।

## ଇନ୍ଦ୍ର-ବୃତ୍ର କଥା

ଋକ୍‌ବେଦର ପ୍ରଥମ ମଣ୍ଡଳରେ ଇନ୍ଦ୍ର-ବୃତ୍ର ନାମରେ ଏକ କଥା ଅଛି । ଶବ୍ଦର ଯୌଗିକ ଅର୍ଥରେ 'ଇନ୍ଦ୍ର'ର ଏକ ନାମ ସୂର୍ଯ୍ୟ, 'ବୃତ୍ର'ର ଏକ ନାମ ମେଘ । ଉପରୋକ୍ତ ଇନ୍ଦ୍ର-ବୃତ୍ର ସୂକ୍ତି କଥାରେ ସୂର୍ଯ୍ୟ-ମେଘ କଳହର ପ୍ରାକୃତିକ ବର୍ଣ୍ଣନା ଅତି ଚମତ୍କାର ଓ ବୈଜ୍ଞାନିକ ରୂପରେ କରାଯାଇଛି । ଆକାଶରେ ସୂର୍ଯ୍ୟ ଓ ମେଘ ମଧ୍ୟରେ ଚାଲ ଟଣାଟଣି ହୁଏ । ଦୀପ୍ତିମାନ ସୂର୍ଯ୍ୟଙ୍କ ପ୍ରକାଶକୁ ମେଘ ଅନ୍ଧକାରରେ ଆଚ୍ଛାଦନ କରିବା ପାଇଁ ଚେଷ୍ଟାକରେ, ସେଥିରୁ ବହିର୍ଗତ ହେବାପାଇଁ ସୂର୍ଯ୍ୟ ଚେଷ୍ଟାକରେ । ଏହି ଟଣା ଓଟରରେ ପରଶେଷରେ ସୂର୍ଯ୍ୟ ଜ୍ଞାନ— ଅନ୍ଧକାରକୁ ଜ୍ୟୋତି ପରାଜିତ କରେ । ଏହା ଏହି କଥାର ଅଧିଦୈବିକ ଅର୍ଥ । ଆଧ୍ୟାତ୍ମିକ ଅର୍ଥରେ ଇନ୍ଦ୍ର=ଜ୍ୟୋତି=ପୁଣ୍ୟ=ସାତ୍ତ୍ୱିକତା,

ବୃତ୍ର=ମେଘ=ପାପ=ତାମସିକତା । ଜୀବ ମଧ୍ୟରେ ଏ ଦୁହିଁଙ୍କ ସଂଘର୍ଷ ସର୍ବଦା ଚାଲିଥାଏ । ଭୌତିକ ଜଗତର ଅନ୍ଧକାର ଓ ଆଲୋକ ମଧ୍ୟରେ ସଂଗ୍ରାମ ଲାଗିଥିବା ପରି ଆତ୍ମିକ ସଂସାରରେ ଧର୍ମ ଓ ଅଧର୍ମ ମଧ୍ୟରେ ସଂଗ୍ରାମ ଅବିରତ ଚାଲିଥାଏ ।

ବେଦର ଏହି ଇନ୍ଦ୍ର-ବୃତ୍ର କଥା ଜନ୍ଦାବସ୍ତାରେ ପହଂଚିବା ବେଳକୁ ଅହୁରମଜଦା ଓ ଅଙ୍ଗୀରମନ୍ୟୁ ନାମକ ଦୁଇଟି ପୃଥକ୍ ଐଶ୍ୱରିକ ଶକ୍ତିରୂପେ ବିଭକ୍ତ ହୋଇଯାନ୍ତି । ଅହୁରମଜଦା ବା ପରମେଶ୍ୱର ଓ ଅଙ୍ଗୀରମନ୍ୟୁ ବା ଅପବିତ୍ର କର୍ତ୍ତା ମଧ୍ୟରେ ଅବିରାମ ଯୁଦ୍ଧ ହୁଏ । ଇହୁଦୀ ଧର୍ମଗ୍ରନ୍ଥ ଦେଇ ଏହି ଭାବନା ବାଇବେଲ୍ ଓ କୋରାନ୍‌ରେ ପହଂଚିବାବେଳେ ଏହି ଦ୍ୱୈତ ଶକ୍ତି ଅତି ବିଚ୍ଛିନ୍ନ ହୋଇ ପଡନ୍ତି—ଈଶ୍ୱର ଓ ଶଇତାନ *(Satan)* । ପୁନଶ୍ଚ ବେଦୋକ୍ତ ବୃତ୍ର=ମେଘ=ଅହି । ସଂସ୍କୃତ ସାହିତ୍ୟରେ 'ଅହି'ର ଅର୍ଥ ସର୍ପ ମଧ୍ୟ । ବେଦୋକ୍ତ ବୃତ୍ର ଜନ୍ଦାବସ୍ତାରେ ଅଙ୍ଗୀରମେନ୍ୟୁ ଓ ବାଇବେଲ-କୋରାନ୍‌ରେ ଶଇତାନ୍ ରୂପେ ବର୍ଣ୍ଣିତ ହେବାବେଳେ ସିଏ ସର୍ପ ରୂପ ଧାରଣ କରନ୍ତି । ବେଦର ଗୋଟିଏ ପ୍ରାକୃତିକ ଦୃଶ୍ୟ ଓ ଆତ୍ମିକ ତତ୍ତ୍ୱର ଅନୁଶୀଳନ ପରବର୍ତ୍ତୀ ଧାର୍ମିକ ସାହିତ୍ୟ ମାନଙ୍କରେ ହାସ୍ୟ ଜନକ ଓ ଅଯୌକ୍ତିକର ଗାଥା ରୂପରେ ଅପଭ୍ରଷ୍ଟ ହୋଇଯାଏ । ବେଦର ସତ୍ୟତା ଏହିରୂପେ ଅସତ୍ୟ କିଂବଦନ୍ତୀରେ ପରିଣତ ହୁଏ ।

ଏଣେ ଭାରତବର୍ଷରେ ଅର୍ବାଚୀନ ପୁରାଣ ଗ୍ରନ୍ଥମାନଙ୍କରେ ଏହି କଥାକୁ ଅଧିକ ବିକାରଗ୍ରସ୍ତ କରି ଦିଆଯାଇଛି । କୁହାଯାଇଛି ତ୍ୱଷ୍ଟା ପୁତ୍ର ବୃତ୍ରାସୁର ଦେବତାଙ୍କ ରାଜା ଇନ୍ଦ୍ରକୁ ପରାଜିତ କରିବାରୁ ଦେବତାମାନେ ବିଷ୍ଣୁଙ୍କ ଶରଣ ପଶିଲେ । ବିଷ୍ଣୁ ଉପାୟ ବତାଇଲେ—ସମୁଦ୍ର

ଫେନ ମଧ୍ୟରେ ମୁଁ ପ୍ରବେଶ କରିବ, ସେହି ଫେନକୁ ଉଠାଇ ତୁମେ ବୃତ୍ରାସୁରକୁ ବଧ କରିବ । ତ୍ୱଷ୍ଟା, ଇନ୍ଦ୍ର, ବୃତ୍ର, ବିଷ୍ଣୁ ଆଦି ଶବ୍ଦର ଗୋଟିଏ ୨ ସୀମିତ ଅର୍ଥକୁ ନେଇ ଗଳ୍ପ ଗଢ଼ା ଯାଇଛି । ଏଠାରେ ଅନ୍ୟ କୌଣସି ସମାଲୋଚନା କରି ନଯାଇ କେବଳ ଏତିକି ଦର୍ଶାଇବା ଉଦ୍ଦେଶ୍ୟ ଯେ ମୂଳ ସଂହିତାରୁ ଭାବାନ୍ତର ଓ ଭାବଭ୍ରଷ୍ଟ ହୋଇଯାଇଛି । ବେଦର ପ୍ରାକୃତିକ ବର୍ଣ୍ଣନା ଓ ଆଧ୍ୟାତ୍ମିକ ଚିନ୍ତନ ସନାତନ ତତ୍ତ୍ୱ ଗୁଡ଼ିକୁ ପୁରାଣ ଗ୍ରନ୍ଥମାନଙ୍କରେ ଭିନ୍ନ ଭାବରେ ବର୍ଣ୍ଣନା କରାଯାଇଛି ।

## ଜଳପ୍ଲାବନ କଥା

ବେଦର ପ୍ରସିଦ୍ଧ ବ୍ୟାଖ୍ୟାତା ବ୍ରାହ୍ମଣ ଗ୍ରନ୍ଥରେ ଜଳପ୍ଲାବନ କଥା ଅଛି । ଥରେ ଗୋଟିଏ ମତ୍ସ୍ୟ ମନୁ ମହାରାଜାଙ୍କୁ ସୂଚନା ଦେଲା— 'ଆଗାମୀ ବର୍ଷ ଜଳପ୍ଲାବନ ହେବ । ତା' ପୂର୍ବରୁ ଗୋଟିଏ ନୌକା ତିଆରି କରି ରଖ । ତଦ୍ୱାରା ମୁଁ ବଂଚାଇବି, ତୁମେ ବି ରକ୍ଷା ପାଇବ ।' ତଦନୁରୂପ ଜଳପ୍ଲାବନ ଘଟିଲା ଓ ମନୁ ମହାରାଜା ନୌକା ସାହାଯ୍ୟରେ ରକ୍ଷା ପାଇଲେ । ଶତପଥ ବ୍ରାହ୍ମଣର ଏହି କଥା ବାଇବେଲ୍, ଜେଂଦାବସ୍ତା ଓ ଅନ୍ୟାନ୍ୟ ଧର୍ମଗ୍ରନ୍ଥମାନଙ୍କରେ ମିଳେ ।

ଜେଂଦାବସ୍ତାରେ ଅହୁରମଜଦା ଅଧିପତି 'ୟିମ୍'କୁ କହନ୍ତି— 'ଭୟାନକ ଶୀତ ଦ୍ୱାରା ସଂସାର ନଷ୍ଟ ହୋଇଯିବ । ଏଣୁ ସମସ୍ତଙ୍କ ଜୀବନ ରକ୍ଷାଲାଗି ପରାମର୍ଶ କର ।' ବାଇବେଲ୍‌ରେ ଈଶ୍ୱର ନୂହଙ୍କୁ କହନ୍ତି— 'ସଂସାରରେ ମନୁଷ୍ୟଙ୍କ ଅଶିଷ୍ଟତା ବଢିଗଲା । × × × । ସମସ୍ତ ଜୀବଧାରୀଙ୍କ ଜୀବନ ନାଶ ପାଇଁ ମୁଁ ଜଳପ୍ରଳୟ କରିବ । ତାଠାରେ ତୁମେ ଏକ ନୌକା ତିଆରି କର । ତଦ୍ୱାରା ଜଳପ୍ରଳୟ ବେଳେ ତୁମ

ପରିବାର ରକ୍ଷା ପାଇଯିବ ।' ମିଶର, କାଲ୍‌ଡ଼ିଆ ଓ ଦକ୍ଷିଣ ଆମେରିକାର ବହୁ ଦେଶର ପ୍ରାଚୀନତମ ଗ୍ରନ୍ଥମାନଙ୍କରେ ଏହି ଜଳପ୍ଲାବନ କଥାର ସ୍ମୃତି ଏବେ ସୁଦ୍ଧା ରହିଛି ।

## ଅଗ୍ନିହୋତ୍ରର ଅପଭ୍ରଂଶ

ଅଗ୍ନିହୋତ୍ର ବିଧି ବେଦରେ ବହୁ ସ୍ଥଳରେ ଅଛି । ବୈଦିକ କର୍ମକାଣ୍ଡରେ ଅଗ୍ନିହୋତ୍ର ଏକ ବିଶିଷ୍ଟ କ୍ରିୟା । ଜଳବାୟୁର ଶୁଦ୍ଧି ଓ ମାନସିକ ଅଭ୍ୟୁତ୍ଥାନ ପାଇଁ ମନ୍ତ୍ର ଉଚ୍ଚାରଣ ପୂର୍ବକ ଅଗ୍ନିରେ ଘୃତାହୁତି ଦେବାଲାଗି ବେଦରେ ମନୁଷ୍ୟଙ୍କୁ ଉପଦେଶ ଦିଆ ଯାଇଛି । ଏହି ଅଗ୍ନିହୋତ୍ର ଦୈନନ୍ଦିନ ପ୍ରାତଃ ଓ ସାୟଂକାଳରେ ଅନୁଷ୍ଠାନ କରାଯାଏ । ପୁଣି ବିଶିଷ୍ଟ ସାମାଜିକ କୃତ୍ୟ ବେଳେ ଏହା ଅନୁଷ୍ଠିତ ହୁଏ ।

ଏହି ବୈଦିକ ପଦ୍ଧତି ପାରସୀଙ୍କ ଜେନ୍ଦାବସ୍ତାରେ ନିମ୍ନସ୍ତରରେ ଦେଖିବାକୁ ମିଳେ । ବେଦର 'ଅଥର୍ବଣ' ଶବ୍ଦରୁ ପାରସୀଙ୍କ ପୁରୋହିତଙ୍କୁ 'ଅଥର୍ବ' କୁହାଯାଏ । ବୈଦିକ ଯଜ୍ଞର ଇଷ୍ଟି, ଆହୁତି, ହୋତା, ଯଜ୍ଞ ଆଦି ପାରସୀ ଧର୍ମାନୁଷ୍ଠାନରେ 'ଇସ୍ତି', 'ଆଜୁଡ', 'ଜୋଟା', 'ଯସ୍ନ' ଆଦି ନାମରେ ପରିଚିତ । ବୈଦିକ ବିଧିର 'ଦର୍ଶପୌର୍ଣ୍ଣିମା ଇଷ୍ଟି', 'ଚାତୁର୍ମାସ୍ୟ ଇଷ୍ଟି' ଆଦିରୁ ପାରସୀଙ୍କ 'ଦାରୁନ୍', 'ଗହନବାର' ଆଦି ଯଜ୍ଞମାନ ଅନୁକରଣ ମାତ୍ର । ପାରସୀ ଧର୍ମଗ୍ରନ୍ଥରେ ଲେଖାଅଛି—'ଅହୁରମଜ୍‌ଦା (ପାରସୀଙ୍କ ଈଶ୍ୱର)ଙ୍କ ଚିହ୍ନ ଅଗ୍ନି ଅଟେ । ଏହାର ପ୍ରଜ୍ୱଳିତ ଶିଖାରେ ସେ ପ୍ରକାଶିତ ହୁଅନ୍ତି † ।' ଏଠାରେ ଲକ୍ଷ୍ୟ କରିବା କଥାଯେ ବେଦର

---

† ଯସନ (୩୨୦,୮)

ଅଗ୍ନିହୋତ୍ର ସମ୍ବନ୍ଧୀ ବହୁ ତଥ୍ୟ ପାରସୀ ଶାସ୍ତ୍ରକୁ ଅଧ୍ୟୟନ କରିବାବେଳକୁ 'ଅଗ୍ନିପୂଜା'ରେ ସୀମିତ ହୋଇପଡ଼େ ।

ପାରସୀଙ୍କ ଏହି ଯଜ୍ଞ ବିଶ୍ୱାସ ଇହୁଦୀଙ୍କ ହାତରେ ଅଦ୍ଭୁତ ନିକୃଷ୍ଟ ପନ୍ଥାରେ ପ୍ରଚଳିତ ହୋଇଛି । ଇହୁଦୀଙ୍କ ଓଲ୍ଡ ଟେଷ୍ଟାମେଣ୍ଟ୍ ଗ୍ରନ୍ଥରେ ଲେଖାଅଛି— 'ଈଶ୍ୱରଙ୍କ ପାଇଁ ନୂହ ଏକ ଯଜ୍ଞବେଦୀ ନିର୍ମାଣ କଲେ । ସେଠାରେ ପଶୁ ପକ୍ଷୀଙ୍କୁ ପ୍ରଜ୍ୱଳିତ ଅଗ୍ନି ଉପରେ ଆହୂତି ଦେଲେ + ।' ଇହୁଦୀ ମତରୁ ଏହି ବିଧି ଖ୍ରୀଷ୍ଟିଆନ ମତରେ ପ୍ରବେଶ କରିଛି । ବାଇବେଲ୍‌ରେ ଈଶ୍ୱର ମୂଷାଙ୍କୁ କହନ୍ତି—'ମୋ ପାଇଁ ତୁମେ ମାଟିର ଏକ ବେଦୀ ତିଆରି କର । ସେଠାରେ ଶାନ୍ତିର ଜଳନ୍ତା ଆହୂତି ଦିଅ * ।'

ଯଜ୍ଞର ପବିତ୍ର ଓ ଲାଭଦାୟକ କ୍ରିୟା ଏବେ ହିନ୍ଦୁଙ୍କ ମଧ୍ୟରେ ବୀଭତ୍ସ ରୂପରେ ପାଳିତ ହୋଇଛି । 'ଗୋମେଧ ଯଜ୍ଞ'ରେ ଗୋ-ବାଣୀର ସ୍ୱାଧ୍ୟାୟ କରିବା ବା ଗୋପ୍ରଦର୍ଶନୀ ଆୟୋଜନ କରିବା ପରିବର୍ତ୍ତେ ପବିତ୍ର ଗୋମାତାଙ୍କ ହତ୍ୟାପାଠ ହୋଇଛି । 'ଅଶ୍ୱମେଧ ଯଜ୍ଞ'ରେ ଅଶ୍ୱ ବା ରାଷ୍ଟ୍ରର ଅଭ୍ୟୁତ୍ଥାନର ଚିନ୍ତା ଓ କାର୍ଯ୍ୟ କରିବା ପରିବର୍ତ୍ତେ ଅଶ୍ୱ ନାମକ ନିରୀହ ପଶୁକୁ ଅଗ୍ନିରେ ବଳିଦାନ ଦେବାର ହୀନ ପନ୍ଥା ବ୍ୟବହୃତ ହୋଇଛି । ବର୍ତ୍ତମାନ ଏହି ସବୁ ପ୍ରଥା କେତେକାଂଶରେ ହ୍ରାସ ହୋଇଥିଲେ ମଧ୍ୟ ଅଗ୍ନିହୋତ୍ର ବା ଯଜ୍ଞର ବ୍ୟାପକ ଓ ଆତ୍ମିକ ଅର୍ଥ ଆଜି ହିନ୍ଦୁଙ୍କ ମଧ୍ୟରେ ପ୍ରାୟ ବିସ୍ମୃତ ହୋଇ ପଡ଼ିଛି । ହିନ୍ଦୁ ଘରେ

---

+ଉତ୍ପତ୍ତି ପୁସ୍ତକ (୮୨,୦)

* ଯାତ୍ରା ପୁସ୍ତକ (୧୫,୨୨)

ସଂଜବେଳେ ଘିଅ ବଳିତାର ଯେଉଁ 'ସଂଜୁଆ' ବା 'ସଂଜଦୀପ' ଦିଆଯାଏ, ତାହା ସାୟଂକାଳ ଅଗ୍ନିହୋତ୍ରର 'କର୍ପୂର ଉଡ଼ା କନା' ରୂପ ବୋଲି ହୃଦୟଂଗମ କରିବାକୁ ବି ହିଂଦୁଙ୍କ ଅମୃ-ବିଶ୍ବାସ ନାହିଁ ।

## ବେଦର ଧର୍ମ ଆଦି-ଧର୍ମ

ଉପରେ ଯେଉଁସବୁ ଆଲୋଚନା କରି ଯାଇଛୁ, ସେଥିରୁ ଦୁଇଟି ବିଷୟର ଦିଗ୍‌ଦର୍ଶନ ହୁଏ । ପ୍ରଥମତଃ ପ୍ରତ୍ୟେକ ନବୀନ ଧର୍ମ ପୂର୍ବବର୍ତ୍ତୀ ଏକ ୨ ଧର୍ମର ଭିତ୍ତିରେ ଗଠିତ ଓ ସେହିପରି ପ୍ରତ୍ୟେକ ପୂର୍ବବର୍ତ୍ତୀ ଧର୍ମ ତତ୍‌ପୂର୍ବବର୍ତ୍ତୀ ଧର୍ମମାନଙ୍କର ଆଧାର ଉପରେ ଗଠିତ । ଏହି ରୂପେ ଧର୍ମ ସ୍ରୋତର ପ୍ରତି ଲୋମରେ ଗତି କଲେ ପ୍ରାଚୀନରୁ ପ୍ରାଚୀନ-ତର ହୋଇ ପ୍ରାଚୀନତମ ବୈଦିକ ଧର୍ମର ମୂଳ ଉତ୍ସରେ ପହଂଚିବାକୁ ହୁଏ । ଦ୍ୱିତୀୟତଃ ଗଙ୍ଗାନଦୀ ହିମାଳୟର ଶୁଭ୍ର ହିମରୁ ନିମ୍ନକୁ ଗତି କରୁ ୨ ପରିଶେଷରେ ସାଗର ନିକଟରେ ଦୁର୍ଗନ୍ଧି ଓ ଅବିଳମ୍ବ ହୋଇ ଉଠିବା ପରି, ଆଦି ବୈଦିକ ଧର୍ମ ଧର୍ମସ୍ରୋତର ବହୁ ମିଶ୍ରିତ ଦର୍ଶନର ପ୍ରଭାବରେ ଆଜି ବିକୃତ ଓ ବିଭିନ୍ନ ରୂପରେ ଅପଭ୍ରଷ୍ଟ ହୋଇ ପଡ଼ିଛି ।

ବେଦୋକ୍ତ ଧର୍ମର ଅଦ୍ୱିମତା ଓ ସ୍ୱତଃ ପ୍ରମାଣ ସମ୍ବନ୍ଧରେ ଧର୍ମ-ଶାସ୍ତ୍ରକାର ମହର୍ଷି ମନୁ କହିଛନ୍ତି—'ବେଦୋଽଖିଳ ଧର୍ମମୂଳଂ' (ମନୁସ୍ମୃତି ୧, ୨୩)—ଅର୍ଥାତ ବେଦହିଁ ଧର୍ମର ମୂଳ । ଅନ୍ୟ ଏକ ସ୍ଥଳରେ ମନ୍ୱାଚାର୍ଯ୍ୟ କହିଛନ୍ତି—'ଧର୍ମଜିଜ୍ଞାସ ମାନାନାଂ ପ୍ରମାଣଂ ପରମଂ ଶ୍ରୁତିଃ' (ମନୁ ୨,୧୩)—ଅର୍ଥାତ ଧର୍ମଜିଜ୍ଞାସୁଙ୍କ ପାଇଁ ବେଦ ପରମ ପ୍ରମାଣ ।

ଐତହାସିକ ପାବଗୀ ସ୍ପଷ୍ଟ ଶବ୍ଦରେ ଲେଖିଛନ୍ତି—'ବେଦହିଁ ଜ୍ଞାନର ଅଭିସ୍ରାତ, ପ୍ରେରଣାର ଉଦ୍‌ଗମ, ଦୈବୀଜ୍ଞାନ ଓ ଶାଶ୍ୱତ ସତ୍ୟର ଭଣ୍ଡାର ଅଟେ † ।'

## ବେଦର ଲୌକିକ ଶିକ୍ଷା ବ୍ୟାପକ ଅଟେ

ବେଦରେ ଯେଉଁ ଲୌକିକ ଓ ପରଲୌକିକ ତଥ୍ୟ ରହିଛି, ସେସବୁ ସାର୍ବଭୌମ ଓ ସାର୍ବଜନୀନ । ସୃଷ୍ଟିର ବିଭିନ୍ନ ନିୟମମାନଙ୍କୁ ନିରୀକ୍ଷଣ ଓ ହୃଦୟଂଗମ କରି ବୈଜ୍ଞାନିକ ଯେଉଁ ଲୌକିକ ଆବିଷ୍କାରମାନ କରୁଛନ୍ତି, ସେସବୁର ମୁଖ୍ୟ ତଥ୍ୟମାନ ବେଦ ସଂହିତାମାନଙ୍କରେ ରହିଛି । ମହର୍ଷି ଭରଦ୍ୱାଜକୃତ 'ଯନ୍ତ୍ର ସର୍ବସ୍ୱ' ନାମକ ଏକ ଲୁପ୍ତ ଗ୍ରନ୍ଥର ଏକ ଶ୍ଳୋକର ଟୀକାରେ ଅଛି--'ମହାମୁନି ଭରଦ୍ୱାଜ ବେଦସମୁଦ୍ରର ମନ୍ଥନ କରି ନବନୀତ ସ୍ୱରୂପ ଯନ୍ତ୍ରସର୍ବସ୍ୱ ଗ୍ରନ୍ଥ ରଚନା କରିଛନ୍ତି ।' ଚିକିତ୍ସା ଶାସ୍ତ୍ର ଚରକରେ ଲେଖାଅଛି—'ବେଦୋ ହ୍ୟାଥର୍ବଣଃ ଚିକିତ୍ସାଂ ପ୍ରାହ'—ଅର୍ଥାତ୍ ଚିକିତ୍ସା ଶାସ୍ତ୍ରର ବର୍ଣ୍ଣନା ଅଥର୍ବ ବେଦରେ ଅଛି ।

ବେଦସଂହିତାର ଇନ୍ଦ୍ର, ମିତ୍ର, ବରୁଣ, ବିଷ୍ଣୁ ଆଦି ଏଣେ ଅଧ୍ୟାତ୍ମିକ ଅର୍ଥରେ ଈଶ୍ୱରବାଚୀ ହେଉଥିବାବେଳେ ତେଣେ ଆଧିଦୈବିକ ଅର୍ଥରେ ଆକାଶୀୟ ଜଗତ (*Celestial Sphere*) ସମ୍ବନ୍ଧରେ ବିସ୍ତୃତ ବିଜ୍ଞାନର

---

† *The Veda, more-ever, is the fountain head of knowledge, the prime source of inspiration, nay, the great repository of faithy passages of divine wisdom and even eternal truth:—Vedic India, Mother of Parliaments By Pavgi.*

ଦିଗ୍‌ଦର୍ଶନ କରିଛନ୍ତି । ଋକ୍ ବେଦର 'ଇମଂ ମେ ଗଙ୍ଗେ ଯମୁନେ ସରସ୍ୱତୀ × × ×'— ମଂତ୍ରରେ ସୂର୍ଯ୍ୟକିରଣର ମୌଳିକାଂଶ ମାନଙ୍କର ଯେଉଁ ସଂକେତ ଦିଆଯାଇଛି, ସେ ସବୁକୁ ଭୌଗୋଳିକ ଗଙ୍ଗାଯମୁନା ନଦୀ ବୋଲି ନବୀନ ଇତିହାସକାରମାନେ ଟୀକା କଲେ ଦୋଷ କାହାର ? ସନାତନ ବେଦରୁ ଇତିହାସ କଥା ଟାଣି ଓଟାରି ବାହାର କଲେ ଗୋଟିଏ ଦିଗରେ ସନାତନ ତଥ୍ୟମାନଙ୍କର ସଂକେତ ମିଳେ ନାହିଁ ଓ ଅପର ଦିଗରେ ସତ୍ୟର ଅପଳାପ ଦୃଷ୍ଟିରୁ ପାପ ବି ଲାଗେ । ଯଜୁର୍ବେଦର 'ଦ୍ୱୌ୍ୟାଶ୍ୱସୀତ୍ର ପୂର୍ବଚିତ୍ତିଃ' ମଂତ୍ରରେ— ପ୍ରକୃତିର ପ୍ରଥମ ପରିଣାମ ବିଦ୍ୟୁତକଣା *(Electron)* ବୋଲି ସୂଚନା ରହିଛି । ବେଦରୁ ଭୌତିକ ବିଜ୍ଞାନର ପ୍ରାକୃତିକ ନିୟମମାନ *(Natural Laws)* ଜାଣିବାକୁ ହେଲେ ବେଦାର୍ଥ କରିବାର ରୂଢ଼ି ଓ ସୀମିତ ସରଣୀକୁ ଯୌଗିକ ଓ ବ୍ୟାପକ ଅର୍ଥରେ ନେବାକୁ ହେବ । ଏସବୁ ଲେଖିବାର ନିଷ୍କର୍ଷ ଏହିଯେ ବେଦରେ ବିଭିନ୍ନ ଭୌତିକ ବିଜ୍ଞାନର ଯେଉଁ ତଥ୍ୟମାନଙ୍କର ସଂକେତ ରହିଛି, ସେସବୁ ସତ୍ୟ ଓ ଚିରନୂତନ । ବେଦର ଲୌକିକ ରୂପହିଁ ଭୌତିକ ବିଜ୍ଞାନ । ଏଠାରେ ସଂକୀର୍ଣ୍ଣତା ବା ଅନ୍ଧବିଶ୍ୱାସର ସ୍ଥାନ ନାହିଁ । ଯୁକ୍ତିର କଷୋଟିରେ ଏଠାରେ ବିଜ୍ଞାନର ବ୍ୟାଖ୍ୟା କରି ଯାଇଛି । ସୁତରାଂ ବେଦର ଲୌକିକ ଶିକ୍ଷା ପ୍ରଶାନ୍ତ— ସୃଷ୍ଟିକାଳରୁହିଁ ଏକ ପ୍ରାକ୍-ସୂଚନା ।

## ବେଦର ନିର୍ଭୁଲ ପରଲୌକିକ ଶିକ୍ଷା

ଯେଉଁ ଶିକ୍ଷା ପାଇଁ ବେଦ ମନୁଷ୍ୟ ଜାତିର 'ସନାତନ ଗୁରୁ' ତାହା ବିଶେଷ ରୂପେ ଲୌକିକ ନୁହେଁ—ତାହା ପରଲୌକିକ ଶିକ୍ଷା ।

ବେଦର ଏହି ଶିକ୍ଷା ମହାନ୍, ସାର୍ବଜନୀନ ଓ ସନାତନ । ପାଶ୍ଚାତ୍ୟ ପଣ୍ଡିତ ବ୍ରାଉନ୍ ବେଦର ଶିକ୍ଷା ସମ୍ବନ୍ଧରେ ଲେଖିଛନ୍ତି—'ବୈଦିକ ଧର୍ମ ଏକ ଯୁକ୍ତିବାଦୀ ଧର୍ମ ଯେଉଁଠାରେ ଧର୍ମ ଓ ବିଜ୍ଞାନ ହାତରେ ହାତ ବଢ଼ାଇ ଚାଲନ୍ତି । ଏଠାରେ ଧାର୍ମିକ ସିଦ୍ଧାନ୍ତ ବିଜ୍ଞାନ ଓ ତତ୍ତ୍ୱଜ୍ଞାନ ଉପରେ ଅବଲମ୍ବିତ * ।'

ଉଦାହରଣ ସ୍ୱରୂପ, ଗୋଟିଏ ଧାର୍ମିକ ସିଦ୍ଧାନ୍ତର ଆଲୋଚନା କରାଯାଉ । ସଂସାରର ପ୍ରାୟ ପ୍ରତ୍ୟେକ ଧର୍ମ ଈଶ୍ୱରଙ୍କ ଅସ୍ତିତ୍ୱ ଠାରେ ବିଶ୍ୱାସ ରଖନ୍ତି ଓ ତାହାଙ୍କୁ 'ସର୍ବଶକ୍ତିମାନ' ରୂପେ ଗ୍ରହଣ କରନ୍ତି । ପରନ୍ତୁ ଏହି ସର୍ବଶକ୍ତିମତ୍ତାକୁ ବିଭିନ୍ନ ଧର୍ମ ବିଭିନ୍ନ ରୂପରେ ଚିତ୍ରଣ କରନ୍ତି । ବେଦୋକ୍ତ ଧର୍ମ ଛଡ଼ା ଅନ୍ୟ ସମସ୍ତ ଧର୍ମ ଈଶ୍ୱରଙ୍କ ଏହି 'ସର୍ବଶକ୍ତିମତ୍ତା'ର ଅର୍ଥ କରନ୍ତି—'ଯାହା ଇଚ୍ଛା ତାହା କରି-ପାରିବାରେ ବଳବାନ' ଅର୍ଥାତ୍ 'ସର୍ବକ୍ରିୟାବାନ' । ସୁତରାଂ କେଉଁ ଧର୍ମଗ୍ରନ୍ଥରେ ସର୍ବଶକ୍ତିମାନ ହେତୁ ଈଶ୍ୱର 'ଚନ୍ଦ୍ରକୁ ଦୁଇ ଖଣ୍ଡ କରିପାରନ୍ତି' ତ କେଉଁ ଗ୍ରନ୍ଥରେ 'ପିତା ବିନା ଜନ୍ମ ହୋଇପାରନ୍ତି' । କାହାର ଧର୍ମ-ଗ୍ରନ୍ଥରେ ସର୍ବଶକ୍ତିମାନ ଈଶ୍ୱର ସଂସାରରେ 'ସ୍ୱେଚ୍ଛାଚାର ଶାସନ' ଚଳାନ୍ତି ତ କେଉଁ ଗ୍ରନ୍ଥରେ 'ଅଙ୍ଗୁଳିରେ ଗୋବର୍ଦ୍ଧନ ପର୍ବତକୁ ଉଠାନ୍ତି' । ପରନ୍ତୁ ବେଦବର୍ଣ୍ଣିତ ପରମେଶ୍ୱର ଏହି ଧରଣର ସର୍ବଶକ୍ତିମାନ ନୁହନ୍ତି ।

* *It (Vedic Religion) is thoroughly a scientific religion where religion and science meet hand in hand. Here theology is based upon science and philosophy.—(The Superiority of the Vedic Religion By W.D. Brown)*

ବେଦରେ ସର୍ବଶକ୍ତିମାନର ଅର୍ଥ ଯୁକ୍ତିସମ୍ମତ । 'ଜ୍ଞାନ'ର ଅର୍ଥ ନିୟମ ପ୍ରଣୟନ କରିବା ଓ 'ଶକ୍ତି'ର ଅର୍ଥ ନିୟମକୁ ପାଳନ କରିବା । ବେଦରେ ଜ୍ଞାନ ଓ ଶକ୍ତିକୁ 'ଋତ' ଓ 'ସତ୍ୟ' ବୋଲି କୁହାଯାଇଛି । ଏହି ନିୟମରେ ସର୍ବଶକ୍ତିମାନର ଅର୍ଥ ନିୟମମାନଙ୍କ ଉଚିତ ୨ ପାଳନ କରିବା । ପରମେଶ୍ୱର ସର୍ବଶକ୍ତିମାନ, ସୁତରାଂ ସ୍ରଷ୍ଟା ରୂପେ ସୃଷ୍ଟିର ଯେଉଁ ଅଭ୍ରାନ୍ତ ନିୟମ ସେ ପ୍ରଣୟନ କରିଛନ୍ତି ତାହାର ଅଭ୍ରାନ୍ତ ପାଳନ ବି କରିପାରନ୍ତି । ଯେ ନିୟମ ପାଳନ କରି ପାରେନାହିଁ ସେ ଦୁର୍ବଳ । ନିତ୍ୟ ପ୍ରାତଃକାଳ ଚାରିଘଣ୍ଟା ବେଳେ ଶଯ୍ୟାତ୍ୟାଗ କରିବା ପାଇଁ ନିୟମ ପ୍ରଣୟନ କରି ଯେ ପାରେନାହିଁ ସେ ନିୟମଶୂନ୍ୟ ଓ ଦୁର୍ବଳ । ପରନ୍ତୁ ପରମେଶ୍ୱରଙ୍କୁ ନିୟମଶୂନ୍ୟ ଓ ଦୁର୍ବଳ ବୋଲି କହିବା ଧୃଷ୍ଟତା । ଐଶ୍ୱରିକ ନିୟମମାନଙ୍କର ସଠିକ ପ୍ରତିପାଳନ କରୁଥିବା ହେତୁ ବୈଦିକ ଈଶ୍ୱର ସର୍ବଶକ୍ତିମାନ । ଏହି ନିୟମବଦ୍ଧତା ହେତୁ ସେ 'ସର୍ବବ୍ୟାପୀ' ଓ 'ନିର୍ବିକାର' ହୋଇ 'ଅବତାର' ରୂପରେ ଏକଦେଶୀ ଓ ଗର୍ଭାଶୟୀ ହୁଅନ୍ତି ନାହିଁ । ଏହି ନିୟମବଦ୍ଧତା ହେତୁ ସେ'ନ୍ୟାୟକାରୀ' ହୋଇ ପାପୀର ପାପକୁ କ୍ଷମା କରି ପାରନ୍ତି ନାହିଁ—ତାଙ୍କ ପ୍ରଣୀତ 'କର୍ମଫଳ ଚକ୍ର'କୁ ଓଲ୍‌ଟାନ୍ତି ନାହିଁ । ଏହି ରୂପେ ବୈଦିକ ଈଶ୍ୱର ବାଇବେଲ୍, କୋରାନ୍ ଓ ପୁରାଣ ଶାସ୍ତ୍ରମାନଙ୍କ ବର୍ଣ୍ଣିତ ସହସ୍ର ଚମତ୍କାର (*Miracles*) ସୃଷ୍ଟି କରନ୍ତି ନାହିଁ । ଏହାହିଁ ବେଦୋକ୍ତ ଈଶ୍ୱରଙ୍କ ଐଶ୍ୱରିକତା—ବେଦର ବୈଦିକତା ଓ ବୈଶିଷ୍ଟ୍ୟ । ଏହା ପୂର୍ଣ୍ଣ ରୂପରେ ଯୁକ୍ତି ଓ ବିଜ୍ଞାନର ପରିପୂରକ । ପ୍ରଚଳିତ ହିନ୍ଦୁ ଧର୍ମରୁ ଜନ୍ମାନୁଯାୟୀ ଜାତିଭେଦ, ବହୁ ଦେବତାବାଦ, ଅବତାରବାଦ, ମୂର୍ତ୍ତିପୂଜା ଓ ପୁରାଣ ଶାସ୍ତ୍ରମାନଙ୍କ କିଂଭୂତକିମାକାର ସହସ୍ର ଚମତ୍କାରମାନଙ୍କୁ ଖୋଳି ବାହାର କରିଦେଲେ ଯେଉଁ ନିର୍ମଳ ରୂପ ମିଳିବ ତାହାହିଁ ବୈଦିକ

ଧର୍ମ । ପରନ୍ତୁ କୋରାନ୍, ବାଇବେଲ୍ ଆଦି ଧର୍ମ ଗ୍ରନ୍ଥରୁ 'ଚମତ୍କାର' ମାନଙ୍କୁ ଖୋଜି ବାହାର କରିଦେଲେ, ସେସବୁ ଧର୍ମକୁ ପରିହତ ହୋଇ ଧରାଶାୟୀ ହେବାକୁ ହେବ । କେତେକ ଚମତ୍କାରର ଉପରେ ଆଶ୍ରୟ କରିହିଁ ଏହି ସବୁ ଧର୍ମର ଅସ୍ତିତ୍ୱ ସମ୍ଭବ । ଉଦାର୍ ଓ ଉଦାତ୍ତ ଚିତ୍ତରେ ଏ ସବୁ ଗ୍ରନ୍ଥ ପଢ଼ିଲେ ଏକଥା ସହଜେ ଉପଲବ୍ଧ ହେବ ।

ଏ ସମ୍ବନ୍ଧରେ ଆଉ ଗୋଟିଏ ଧାର୍ମିକ ସିଦ୍ଧାନ୍ତ ଆଲୋଚନା କରାଯାଉ । ଇହୁଦୀ, ଖ୍ରିଷ୍ଟିଆନ୍ ଓ ମୁସଲମାନ ମତ ଅନୁସାରେ ଏହି ସୃଷ୍ଟି ପ୍ରଥମ ଓ ଅନ୍ତିମ (*First and Last*) । ଏହା ଅଭାବରୁ ଉତ୍ପନ୍ନ ହେଲା ଓ ଅଭାବରେ ବିଲୀନ ହେବ । କେବଳ ଜୀବାତ୍ମାମାନେ ଅନନ୍ତ-କାଳ ପାଇଁ ସ୍ୱର୍ଗ କିଂବା ନରକରେ ପଡ଼ି ରହିବେ । ବୌଦ୍ଧ ମତ ଅନୁସାରେ ଅନାଦି କାଳରୁ ଏହି ସୃଷ୍ଟି ଏହିପରି ଚାଲି ଆସୁଛି, ଏହାର ପ୍ରାରମ୍ଭ ବା ପ୍ରଳୟ ନାହିଁ । ଯୁକ୍ତି ଦୃଷ୍ଟିରୁ ଏ ସବୁକୁ ପରୀକ୍ଷଣ କରାଯାଉ । ଅଭାବରୁ ସୃଷ୍ଟି ଉତ୍ପତ୍ତି ସମ୍ଭବ ନୁହେଁ । ବିଜ୍ଞାନର 'ଶକ୍ତି-ସ୍ଥିତି ନିୟମ' † ଅନୁଯାୟୀ ଏହା ଅଯୌକ୍ତିକ । ଗୀତାରେ କୁହାଯାଇଛି—'ଅସତରୁ ଭାବ ଓ ସତରୁ ଅଭାବ ହୋଇ ନପାରେ * ।' ସୁତରାଂ ଅଭାବରୁ ସୃଷ୍ଟିର ଉତ୍ପତ୍ତି ଓ ଅଭାବରେ ସୃଷ୍ଟିର ଲୟ—ଏହି ସେମେଟିକ୍ (*Semetic*) ସିଦ୍ଧାନ୍ତ ଗ୍ରହଣୀୟ ନୁହେଁ । ପୁନଶ୍ଚ କୁହାଯାଇଛି ଜୀବାତ୍ମାଗଣ ଅନନ୍ତ କାଳପାଇଁ ସ୍ୱର୍ଗ କିଂବା ନରକରେ ପଡ଼ି ରହିବେ । ପାର୍ଥିବ ସ୍ଥୂଳ ଦେହ

---

† *Law of Conservation of Energy*

* ନାସତୋ ବିଦ୍ୟତେ ଭାବୋ ନାଭାବୋ ବିଦ୍ୟତେ ସତଃ ।
ଗୀତା (୨.୧୬)

ସ୍ୱର୍ଗ ନରକର ବର୍ଣ୍ଣନା କରାଯାଇଛି । ଭୌଗୋଳିକ ଦୃଷ୍ଟିକୋଣରୁ ଏଭଳି ଧାରଣା ଅସତ୍ୟ । ପ୍ରକୃତରେ ଜୀବର ସ୍ୱର୍ଗ ନରକ ଉପଭୋଗ ଜୀବନ-କାଳରେ ହିଁ ହୋଇଥାଏ । ପ୍ରଥମତଃ ଜୀବର ଅନନ୍ତ ସତ୍ତାକୁ ସ୍ୱୀକାର କରିବାକୁ ହେବ, ପୁନଶ୍ଚ କର୍ମଫଳ ଚକ୍ର ଅନୁଯାୟୀ ଜୀବକୁ ଆବାଗମନ ବା ପୁନର୍ଜନ୍ମ ଚକ୍ରରେ ଆସିବାକୁ ହେବ । କିନ୍ତୁ ସେମେଟିକ୍ ମତ ଅନୁସାରେ ପୁନର୍ଜନ୍ମକୁ ସ୍ୱୀକାର କରାଯାଏ ନାହିଁ । ପୁନର୍ଜନ୍ମ ତଥ୍ୟକୁ ସ୍ୱୀକାର ନକଲେ ଏପରି ଅନେକ ପ୍ରଶ୍ନ ଓ ସମସ୍ୟାର ଉତ୍ତର ଦେବାକୁ ହୁଏଯେ ସେଥିରୁ ନିସ୍ତାର ପାଇବା ସମ୍ଭବ ନୁହେ । ଗୋଟିଏ ଜୀବନର କର୍ମଫଳରୁ ଅନନ୍ତ କାଳପାଇଁ ସ୍ୱର୍ଗ କିମ୍ବା ନରକ ପାଇଯିବା କେଉଁ ନ୍ୟାୟ ? ତେବେ ଏ ସୃଷ୍ଟିର ଉଦ୍ଦେଶ୍ୟ କଣ ? ଏ ସଂସାର ଖେଳନା ନୁହେ କି ମାୟା ନୁହେ । ଖେଳନା ବଗିର 'ଋଣଂ କୃତ୍ୱା ଘୃତଂ ପିବେତ' କଲେ ଚଳିବ ନାହିଁ । ମିଥ୍ୟା ବଗିର ମାୟା ମଧ୍ୟରେ ପଶିଗଲେ ଥଳକୂଳ ମିଳିବ ନାହିଁ । ଏ ସଂସାର ସତ୍ୟ, ତାହାର ନିୟମ ଅଟଳ । ଜୀବର ଜୀବନରେ ଉଦ୍ଦେଶ୍ୟ ରହିଛି । ଜୀବର ଅନ୍ତିମ ଉଦ୍ଦେଶ୍ୟ ମୁକ୍ତି—ଦୁଃଖ, ସୁଖ, ପ୍ରଯତ୍ନ ଆଦି ବନ୍ଧନରୁ ସେ ମୁକ୍ତ ହେବ । ଏହା ଗୋଟିଏ ଜୀବନର କର୍ମଫଳରେ କି ସମ୍ଭବ ? ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପାଇଁ ଛାତ୍ରକୁ ବହୁଥର ସୁଯୋଗ ଦିଆଯାଉଥିବା ପରି, ପରମେଶ୍ୱର ଜୀବକୁ ପୁନର୍ଜନ୍ମର ଚକ୍ରରେ ଅସଂଖ୍ୟ ସୁଯୋଗ ଦେଇଥାନ୍ତି । ଜୀବକୁ ଏଥିପାଇଁ ପୁନର୍ଜନ୍ମ ଚକ୍ରରେ ଆସିବାକୁ ହେବ କର୍ମଫଳ ସିଦ୍ଧାନ୍ତ ଉପରେ ନିର୍ଭର କରି । ପୁନର୍ଜନ୍ମ ନହେଉଥିଲେ କେଉଁ କର୍ମର ପାପରୁ ଭୂମିଷ୍ଠ ନହେଉଣୁ ମାତୃଗର୍ଭରେ ଜୀବନ୍ତ ଶିଶୁର ମୃତ୍ୟୁ ଘଟେ ? ଏହା ନିଶ୍ଚୟ ତାହାର ପୂର୍ବ ଜୀବନର କର୍ମଫଳ । ଏହି ସୃଷ୍ଟିର ପ୍ରାରମ୍ଭ କିମ୍ବା ପ୍ରଳୟ ନାହିଁ—ଏହାର ସ୍ରଷ୍ଟା କେହି ନାହାନ୍ତି—ବୌଦ୍ଧମତର ଏହି ତଥ୍ୟ ଅଜ୍ଞେୟ

ଓ ପଲାୟନବାଦ ଛଡା ଆଉ କିଛି ନୁହେ ।

ବୈଜ୍ଞାନିକ ଆଜ ପ୍ରଚାର କରୁଛନ୍ତି ଯେ ପୃଥିବୀ ପ୍ରଥମେ ଏକ ବାଯ୍ପବୀୟ ଅବସ୍ଥାରେ (*Gaseous State*) ଥିଲା, କ୍ରମଶଃ ଜଳୀୟ ଅବସ୍ଥା (*Molten State*)ର ମାଧ୍ୟମରେ ବର୍ତ୍ତମାନର ଅବସ୍ଥାକୁ ଆସିଲା । ସେ ଏକଥା ବି ସ୍ୱୀକାର କରୁଛନ୍ତିଯେ ବାଷ୍ପୀୟ ଓ ଜଳୀୟାବସ୍ଥା ଜୀବ ଓ ବନସ୍ପତିଙ୍କ ଜୀବନୋପଯୋଗୀ ନହେବା ହେତୁ ପରବର୍ତ୍ତୀ କାଳରେ ଏସବୁ ଜାତ ହୋଇଥିଲେ । ପରନ୍ତୁ ସନାତନ ବେଦ ଆହୁରି ଅଗ୍ରସର ହୋଇ କହେଯେ ବାଯୁ ୀୟ ଅବସ୍ଥା ପୂର୍ବରୁ ଅନ୍ୟ ଏକ ଆକାଶୀୟ ଅବସ୍ଥା ଥିଲା । ଆକାଶରୁ ବାୟୁ, ବାୟୁରୁ ଅଗ୍ନି, ଅଗ୍ନିରୁ ଜଳ, ଜଳରୁ ପୃଥିବୀ, ପୃଥିବୀରୁ ଔଷଧି, ଔଷଧିରୁ ଅନ୍ନ, ଅନ୍ନରୁ ବୀର୍ଯ୍ୟ ଓ ବୀର୍ଯ୍ୟରୁ ପୁରୁଷ ଉତ୍ପନ୍ନ ହୁଏ । ସୃଷ୍ଟିଚକ୍ର ସମ୍ବନ୍ଧରେ ବେଦର ସିଦ୍ଧାନ୍ତ ଆଧୁନିକ ବିଜ୍ଞାନ ଠାରୁ ଅଧିକ ମାର୍ମିକ ଓ ତାତ୍ତ୍ୱିକ ।

ବୈଦିକ ସିଦ୍ଧାନ୍ତାନୁଯାୟୀ ସୃଷ୍ଟିର ନିମିତ୍ତ କାରଣ 'ଈଶ୍ୱର' ଓ ଉପାଦାନ କାରଣ 'ପ୍ରକୃତି' । ଈଶ୍ୱର, ଜୀବ ଓ ପ୍ରକୃତି—ଏହି ତିନି ଅନାଦି । ଈଶ୍ୱର ସର୍ବଜ୍ଞ, ଜୀବ ଅଳ୍ପଜ୍ଞ ଓ ପ୍ରକୃତି ଜଡ଼, ଅଜ୍ଞ । ପ୍ରକୃତି ନିଷ୍କ୍ରିୟ, ଈଶ୍ୱର ଓ ଜୀବ ଚେତନ । ପରଂତୁ ଈଶ୍ୱର ସର୍ବବ୍ୟାପକ ଓ ଜୀବ ଦେହଧାରୀ । ଜୀବଠାରେ ଦୁଃଖ, ସୁଖ, ପ୍ରଯତ୍ନାଦି ଥାଏ । ଈଶ୍ୱର ଏଥିରେ ନିର୍ବିକାର । କର୍ମ କରିବାରେ ଜୀବ ସ୍ୱତନ୍ତ୍ର ଓ ଫଳ ପାଇବାରେ ପରତନ୍ତ୍ର । କର୍ମାନୁଯାୟୀ ଜୀବକୁ ଉଚିତ ଫଳ ମିଳେ, କର୍ମାନୁଯାୟୀ ସେ ନୀଚ ବା ଉଚ୍ଚ ଯୋନିରେ ପ୍ରବେଶ କରେ । ଏହାହିଁ ଜୀବଙ୍କ ଅବତାରବାଦ । ଈଶ୍ୱରଙ୍କ ଠାରେ ଅବତାର କଳ୍ପନା ନିତାନ୍ତ

ଅଲୌକିକ । କର୍ମଫଳ ପାଇ ମନୁଷ୍ୟ ପଶୁ ହୋଇପାରେ, ପଶୁ ମନୁଷ୍ୟ ହୋଇପାରେ । ଏହା ବେଦର କର୍ମଫଳ ସିଦ୍ଧାନ୍ତ ।

ବର୍ତ୍ତମାନର ସୃଷ୍ଟି ଅନାଦି ଓ ଅନନ୍ତ ନୁହେ । ଏହାର ଆଦି ଓ ଅନ୍ତ ଅଛି । ପରନ୍ତୁ ସୃଷ୍ଟି ପ୍ରଳୟର ଚକ୍ର ଅନାଦି ଓ ଅନନ୍ତ । ସୃଷ୍ଟିର ଉପାଦାନ କାରଣ ପ୍ରକୃତି ଯେତେବେଳେ କାରଣ ରୂପରୁ କାର୍ଯ୍ୟରୂପକୁ ଆସେ ସେତେବେଳେ ହୁଏ ସୃଷ୍ଟି । ଆଲଂକାରିକ ଭାଷାରେ ଏହା ବ୍ରହ୍ମଦିନ । କାର୍ଯ୍ୟ ରୂପରୁ କାରଣ ରୂପକୁ ବଦଳିବାବେଳେ ପ୍ରଳୟ ହୁଏ, ଏହା ବ୍ରହ୍ମରାତ୍ରି । ସୃଷ୍ଟି ଓ ପ୍ରଳୟ କାଳର ନିର୍ଦ୍ଦିଷ୍ଟ ସମୟ ରହିଛି ।

ବୈଦିକ ସୃଷ୍ଟିବାଦର ଏହି ବୈଜ୍ଞାନିକ ପଦ୍ଧତିକୁ ହୃଦୟଂଗମ କରି ପ୍ରସିଦ୍ଧ ବୈଜ୍ଞାନିକ ଅଲିଭର୍ ଲଜ୍ କହିଛନ୍ତି— 'ଧର୍ମ ଓ ପୂର୍ଣ୍ଣ ବିଜ୍ଞାନର କ୍ଷେତ୍ର ଏକ †।' ଯେଉଁ ବୈଜ୍ଞାନିକ ଦଳେ ବାଇବେଲ୍‌ର କେତେକ ଅଯୌକ୍ତିକ ତଥ୍ୟକୁ ଅସ୍ୱୀକାର କରି 'ଧର୍ମ ଓ ଈଶ୍ୱର' ଉପରୁ ବିଶ୍ୱାସ ହରାଇଥିଲେ, ତାର ଉତ୍ତରାଧିକାରୀମାନେ ଦୀର୍ଘବର୍ଷ ପରେ ବେଦର ପରମ ସଂପତ୍ତିକୁ ପୁନରପି ପାଇ ତାହାକୁ ପରମବିଜ୍ଞାନମୟ ଓ ଯୁକ୍ତିବାଦୀ ଦର୍ଶନ ବୋଲି ଆଲିଂଗନ କଲେଣି । ବୈଦିକ ଶାସ୍ତ୍ରରେ କୁହାଯାଇଛି— ଦର୍ଶନ, ଶ୍ରବଣ, ମନନ ଓ ନିଦିଧ୍ୟାସନ ଦ୍ୱାରା ଆତ୍ମାର ପୂର୍ଣ୍ଣ ପରିଚୟ

---

† *The Region of Religion and a Completed Science are one—Sir Oliver Lodge.*

ମିଳେ ❋ । ଅତ୍ମା ସହ ପରିଚିତ ହେବାପରେ ମନୁଷ୍ୟ ପରମ-ଆତ୍ମାଙ୍କ ସାନ୍ନିଧ୍ୟ ପାଇବା ପାଇଁ ଯୋଗ୍ୟ ହୁଏ । 'ଦର୍ଶନ' ଓ 'ଶ୍ରବଣ'ଧୁଁ ଭୌତିକ ବିଜ୍ଞାନ । ଏହି ଭୌତିକ ବିଜ୍ଞାନର ଅନୁଭୂତ ରୂପ ଅଟେ 'ମନନ' । 'ମନନ'ର ଅନୁଭୂତ ରୂପ ଅଟେ ନିଦଧ୍ୟାସନ । ଏସବୁର ମିଳନ କ୍ଷେତ୍ର ରୂପେ ବେଦ ନିତ୍ୟ ନୂତନ, ସନାତନ ।

## ବୈଦିକ ସାମ୍ୟବାଦ ଏକ ଅଦୃଷ୍ଟ ଆଦେଶ

ବେଦରେ ଯେଉଁ ସାମ୍ୟବାଦ ଛପି ହୋଇ ରହିଛି ତାହା ସୃଷ୍ଟିର କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଯୁଗର 'ପୁଂଜିବାଦ' ବିରୁଦ୍ଧରେ ସାମୟିକ ବିପ୍ଳବ ନୁହେ । ବୈଦିକ ସାମ୍ୟବାଦ ମନୁଷ୍ୟର କେବଳ ସାମାଜିକ ସ୍ଥିତିରେ ସାମୟିକ ସଂଶୋଧନ ଲାଗି ଉଦ୍ଦିଷ୍ଟ ନୁହେ କି କେବଳ ମନୁଷ୍ୟ ଗୋଷ୍ଠୀ ମଧ୍ୟରେ ଅବଦ୍ଧ ନୁହେ । ତାହା ମନୁଷ୍ୟର ବୈୟକ୍ତିକ, ସାମାଜିକ ଓ ସାର୍ବଭୌମ ସାମ୍ୟ ପାଇଁ । ବୈଦିକ ସାମ୍ୟବାଦ ମନୁଷ୍ୟ ମଧ୍ୟରେ ସୀମିତ ନରହି 'ସର୍ବଭୂତ'—ସର୍ବପ୍ରାଣୀ ମଧ୍ୟକୁ ଗଂଭୀର ହୋଇ ଉଠେ—

ମିତ୍ରସ୍ୟାହଂ ଚକ୍ଷୁଷା ସର୍ବାଣି ଭୂତାନି
ସମୀକ୍ଷେମିତ୍ରସ୍ୟ ଚକ୍ଷୁଷା ସମୀକ୍ଷାମହେ । (ଯଜୁ ୩୬,୧୮)

ଅର୍ଥାତ—ହେ ସର୍ବସୁହୃଦୀଶ୍ୱର, ସଂସାରର ସମସ୍ତ ପ୍ରାଣୀ ମୋତେ ମିତ୍ରଚକ୍ଷୁରେ ଦେଖନ୍ତୁ ଓ ମୁଁ ସମସ୍ତ ପ୍ରାଣୀଙ୍କୁ ମିତ୍ରଚକ୍ଷୁରେ ଦେଖିବି ।

---

❋ ଅତ୍ମା ବା ଅରେ ଦ୍ରଷ୍ଟବ୍ୟଃ ଶ୍ରୋତବ୍ୟୋ ମନ୍ତବ୍ୟୋ ନିଦିଧ୍ୟାସିତବ୍ୟୋ ମୈତ୍ରେୟ୍ୟାତ୍ମନୋ ବା ଅରେ ଦର୍ଶନେନ ଶ୍ରବଣେନ ମତ୍ୟା ବିଜ୍ଞାନେନେଦଂ ସର୍ବଂ ବିଦିତଂ । (ବୃହଦାରଣ୍ୟକ ଉପନିଷଦ ୨,୪,୫)

ବେଦର ସାମ୍ୟଗୀତ ଏକ ଅତୁଳ୍ୟ ଆଦେଶ । ଏହା ସର୍ବତୋମୁଖୀ, ସାର୍ବଜନୀନ । ଏହା ହିଂସାପୂର୍ଣ୍ଣ ବା ଆକ୍ରୋଶମୂଳକ ନୁହେ । ପ୍ରେମ ଓ ଶ୍ରଦ୍ଧା ମଧ୍ୟରେ ଏହା ଓତପ୍ରୋତ । ଅଥର୍ବ ବେଦରେ ଅଛି—

ସମାନୀ ପ୍ରପା ସହ ବୋଽନ୍ନଭାଗଃ ସମାନେ ଯୋକ୍ତ୍ରେ ସହବୋ ଯୁନଜ୍ମି ।
ସମ୍ୟଞ୍ଚୋଽଗ୍ନିଂ ସପର୍ଯତାରା ନାଭିମିବାଭିତଃ ॥ (ଅଥର୍ବ ୩, ୩୦, ୬)

ଅର୍ଥ—ମନୁଷ୍ୟ, ତୁମ୍ଭମାନଙ୍କର ପାନ ଓ ଭୋଜନର ସ୍ଥଳ ଏକ ହେଉ । ଗୋଟିଏ ଅକ୍ରମ ଉଦ୍ଦେଶ୍ୟ ପାଇଁ ତୁମ୍ଭମାନଙ୍କୁ ମୁଁ ଏକତ୍ରିତ କରୁଅଛି । ଗୋଟିଏ ଚକ୍ରର ସମସ୍ତ ଅର ମଧ୍ୟସ୍ଥିତ ନାଭି ସହ ସଂଲଗ୍ନ ହୋଇ ରହିଥିବା ପରି ତୁମେ ରହିଥାଅ ।

ପୁଣି ଅଛି—

ସମାନଂ ଚେତୋ ଅଭି ସଂବିଶଧ୍ୱମ୍ । (ଅଥର୍ବ ୬, ୬୪, ୨)

ଅର୍ଥ—ସମାନ ମନରେ ପ୍ରବେଶ କରିଯାଅ ।

ଅନ୍ୟୋ ଅନ୍ୟଂ ଅଭିହର୍ଯତ ବତ୍ସଂ ଜାତମିବାଘ୍ନ୍ୟା (ଅଥର୍ବ ୩,୩,୭୧)

ଅର୍ଥ—ପରସ୍ପର ଏହିପରି ବ୍ୟବହାର କର ଯେପରି ଗାଈ ତାର ନବଜାତ ବତ୍ସ ସହ ବ୍ୟବହାର କରେ ।

ଋକ୍‌ବେଦରେ ଅଛି—

ସଂ ଗଚ୍ଛଧ୍ୱଂ ସଂବଦଧ୍ୱଂ ସଂବୋ ମନାଂସି ଜାନତାମ୍ ।
(ଋକ୍ ୧୦, ୧୯୧, ୧)

ଅର୍ଥ—ମନୁଷ୍ୟ, ତୁମ୍ଭେମାନେ ମିଳିକରି ଏକ ଲକ୍ଷ୍ୟରେ ଚାଲ (*Common March*), ମିଳିକରି ଏକ ଲକ୍ଷ୍ୟରେ ବୋଲ (*Common Slogan*) ଓ ମିଳିକରି ବକ୍ତୃତା କର (*Common Platform*) ।

ସମାନୀ ବ ଆକୂତିଃ ସମାନା ହୃଦୟାନି ବଃ ।
ସମାନମସ୍ତୁ ବୋ ମନୋ ଯଥା ବଃ ସୁସହାସତି ॥
(ଋକ୍ ୧୦, ୧୯୧, ୩)

ଅର୍ଥ—ମନୁଷ୍ୟ, ତୁମ ସମସ୍ତଙ୍କ ସଂକଳ୍ପ ସମାନ ହେଉ। ହୃଦୟ ଓ ମନ ସମାନ ହେଉ। ଏକାଠି ବସି ତୁମେ ସବୁ ବିଚାର କର ଓ ପରସ୍ପରର ସହଯୋଗ କର।

ଅଜ୍ୟେଷ୍ଠାସୋ ଅକନିଷ୍ଠାସ ଏତେ ସଂଭ୍ରାତରୋ ବାବୃଧୁଃ ସୌଭଗାୟ ।
ଯୁବା ପିତା ସ୍ୱପା ରୁଦ୍ର ଏଷାଂ ସୁଦୁଘା ପୃଶ୍ନିଃ ସୁଦିନା ମରୁଦ୍‌ଭ୍ୟଃ ॥
(ଋକ୍ ୫, ୬୦, ୫)

ଅର୍ଥ—ଏମାନଙ୍କ ମଧ୍ୟରେ କେହି ଶ୍ରେଷ୍ଠ କେହି ବଡ଼ ନାହିଁ। ସବୁ ମନୁଷ୍ୟ ଭାଇ ଭଉଣୀ ଯେହେତୁ ପରମେଶ୍ୱର ଏ ସମସ୍ତଙ୍କ ପିତା ଓ ପୃଥିବୀ ମାତା। ଏହି ଭାବନା ରଖି କାର୍ଯ୍ୟ କଲେ ମନୁଷ୍ୟଙ୍କ ଅଭ୍ୟୁଦୟ ହୁଏ।

ଉପରେ ବୈଦିକ ସାମ୍ୟବାଦର ଯେଉଁ କେତୋଟି ଘୋଷଣା ଉଲ୍ଲେଖ କରାଯାଇଛି ତାହାର ସ୍ୱରୂପ ବିସ୍ତୃତ ଓ ପ୍ରଶାନ୍ତ। କୌଣସି ରାଜନୈତିକ ସାମ୍ୟବାଦର ଧ୍ୱନି ସାମୟିକ ରୂପରେ କେତୋଟି ରାଜ୍ୟରେ ଆର୍ଥିକ ସାମ୍ୟ ଆଣିପାରେ। ପରନ୍ତୁ ତାହା ସାମୟିକ ଓ ଆଂଚଳିକ ମାତ୍ର। ପୁନଶ୍ଚ ଆର୍ଥିକ-ସାମ୍ୟ ସାମ୍ୟର ପୂର୍ଣ୍ଣ ରୂପ ନୁହେ। ପୁଞ୍ଜି ଓ ଶ୍ରମ ମଧ୍ୟରେ ଆଜି ଯେଉଁ କୃତ୍ରିମ ବୈମନସ୍ୟ ସୃଷ୍ଟି ହୋଇଛି, ତାହା ସାମୟିକ ଓ ଏ ଯୁଗର ଉପଜ। ଏକଥା କାର୍ଲମାର୍କସ୍ ତାହାଙ୍କ

ପ୍ରଣୀତ ପୁଂଜି (*Capital*) ନାମକ ଗ୍ରନ୍ଥରେ ସ୍ୱୀକାର କରିଛନ୍ତି । ଶାଶ୍ୱତ ସାମ୍ୟବାଦ ପାଇଁ ପ୍ରେମ ଓ ଶ୍ରଦ୍ଧା ଆବଶ୍ୟକ । 'ଲୁହ ଓ ରକ୍ତ'ର ଆହ୍ୱାନ ବଦଳରେ 'ସତ୍ୟ ଓ ପ୍ରେମ'ର ଅନୁଭବ ଆବଶ୍ୟକ । ପାର୍ଥିବ ଧନର ମାଧ୍ୟମରେ ଏହାର ସନାତନ ସମାଧାନ ହୋଇ ନପାରେ । ଆଜି ଯେଉଁ 'ଜାତୀୟତାବାଦ'ର ବାତ୍ୟା ପ୍ରତ୍ୟେକ ଦେଶରେ ବହୁଛି, ତାହାର ଅନ୍ତିମ ଧ୍ୟେୟ ନିଜ ଦେଶର ଅଭ୍ୟୁଦୟରେ ହିଁ ସୀମିତ ହୋଇ ପଡୁଛି । ପରନ୍ତୁ ବେଦର ବର୍ଣ୍ଣାଶ୍ରମ ବିଧି 'ଅନ୍ତର୍ଜାତୀୟ ଭାବନା'ର ସୋପାନ । ବେଦର ଭାଷା—'ମାତା ଭୂମିଃ ପୁତ୍ରୋଽହଂ ପୃଥିବ୍ୟାଃ'—ଏହି ଧରିତ୍ରୀ ଆମର ମାତା ଓ ଆମେ ଧରିତ୍ରୀର ପୁତ୍ର ।

ବୈଦିକ ସାମ୍ୟବାଦର ବିସ୍ତୃତ ରୂପ ବର୍ଣ୍ଣନା କରିବା ବର୍ତ୍ତମାନର ଉଦ୍ଦେଶ୍ୟ ନୁହେ । ତେବେ ବର୍ତ୍ତମାନ ଏତିକି ସୂଚନା ଦିଆଯାଇ-ପାରେଯେ ବୈଦିକ ଆଶ୍ରମ ବ୍ୟବସ୍ଥା ବୈଦିକ ସାମ୍ୟବାଦର ଆଧାର-ଶିଳା । ପ୍ରତ୍ୟେକ ମନୁଷ୍ୟ ବ୍ରହ୍ମଚର୍ଯ୍ୟ, ଗୃହସ୍ଥ, ବାନପ୍ରସ୍ଥ ଓ ସନ୍ୟାସ ଏହି ଚାରି ଆଶ୍ରମର ଯଥାବିଧି ପାଳନ କଲେ ବୈୟକ୍ତିକ, ସାମାଜିକ, ରାଷ୍ଟ୍ରୀୟ ଓ ଅନ୍ତଃରାଷ୍ଟ୍ରୀୟ ଶାନ୍ତି ଆପେ ଆପେ ପ୍ରତିଷ୍ଠିତ ହୋଇଯିବ । ବ୍ରହ୍ମଚର୍ଯ୍ୟ, ବାନପ୍ରସ୍ଥ ଓ ସନ୍ୟାସ ଜୀବନରେ ନିଷ୍କାମ କର୍ତ୍ତବ୍ୟ ସାଧିତ ହେଉ ଥିବାରୁ ଓ ଧନ ସହ ସମ୍ବନ୍ଧ ରହୁ ନଥିବାରୁ ଏହି ତିନି ଆଶ୍ରମରେ ସାମ୍ୟବାଦର ଚରମତା ପ୍ରକାଶ ପାଏ । ରାଷ୍ଟ୍ର ବ୍ରହ୍ମଚର୍ଯ୍ୟାଶ୍ରମ ପାଇଁ ବ୍ୟବସ୍ଥା କରେ । ଏହା ହିଁ ଅବୈତନିକ ବାଧ୍ୟତାମୂଳକ ଶିକ୍ଷା । ବାନପ୍ରସ୍ଥ ଓ ସନ୍ୟାସାଶ୍ରମରେ ମନୁଷ୍ୟ ସାମାଜିକ ସେବା କରେ । ଏହି ତିନି ଆଶ୍ରମ ଯଥାବିଧି ପ୍ରତିପାଳିତ ହେଲେ ସଂସାରରେ ଆଦର୍ଶ ବିଦ୍ୟାର୍ଥୀ ଓ ନିର୍ଭୀକ ସ୍ୱେଚ୍ଛାସେବକଙ୍କ ସଂଖ୍ୟା ଆଜିର ପରି ଦୁର୍ଲ୍ଲଭ ହୁଅନ୍ତା ନାହିଁ ।

ମଧ୍ୟବର୍ତ୍ତୀ ଗୃହସ୍ଥାଶ୍ରମରେ ଧନ, ଜନ, ପରିବାର ଆଦି ସହ ଜୀବନ-ଯାତ୍ରା ନିର୍ବାହ କରିବାବେଳେ ବେଦର ଆଦେଶ ରହିଛି—'ସ୍ୱଧୟା ପରିହିତା'—ନିଜ ଭାଗରେ ସଂତୁଷ୍ଟ ରହ, 'ମା ଗୃଧଃ କସ୍ୟସ୍ୱିଦ୍ଧନମ୍'—ପରର ଧନ ପ୍ରତି ଲୋଲୁପ ଦୃଷ୍ଟି ଦିଅ ନାହିଁ । ଏହି ରୂପେ 'ଚତୁଷ୍ପଦୀହି ନିଃଶ୍ରେଣୀ, ବ୍ରହ୍ମଣୋଷା ପ୍ରତିଷ୍ଠିତା'—(ମହାଭାରତ)-ଆଶ୍ରମ ଚତୁଷ୍ଟୟର ନିଃଶ୍ରେଣୀରେ ମନୁଷ୍ୟ ବ୍ରହ୍ମଙ୍କ ଆଡ଼କୁ ଗତିକରେ ।

ବେଦର ସାମ୍ୟବାଦ ଏକ ଐଶ୍ୱରିକ ସଂଦେଶ । ସାମ୍ୟବାଦର ଏହି ସନାତନ ଓ ଆତ୍ମିକ ରୂପ ଆଦି ସୃଷ୍ଟି ବେଳେ ଅପରିଚିତ ଗୋଷ୍ଠୀ ମଧ୍ୟରେ ଭ୍ରାତୃତ୍ୱ ଓ ଭଗିନୀତ୍ୱର ପ୍ରେରଣା ଦିଏ ।

## ବେଦ ସଂପ୍ରଦାୟବାଦୀ ନୁହେ—ବେଦର ଧର୍ମ ହିଁ ଧର୍ମ

ଧର୍ମ ପ୍ରତି ବିତୃଷ୍ଣା ଆଜିକାଲି ଏକ 'ଫେସନ୍' ହୋଇ ପଡ଼ିଛି । ଏହାର କାରଣ ହେଉଛି ଆଦି ଧର୍ମରେ—ବେଦର ଧର୍ମରେ ବହୁ ବିକୃତି ଆସି ଯାଇଛି । ଏହି ବିକୃତ ରୂପମାନ ଏକ ୨ 'ଧର୍ମ' ନାମରେ କଥିତ ହେଉଛନ୍ତି । ଏହି ଅଧ୍ୟାୟର ଆରଂଭରେ ପ୍ରତିଶ୍ରୁତି ଦିଆ ଯାଇଥିଲା ଯେ ଏହି ସବୁ ପରବର୍ତ୍ତୀ ଧାରଣାମାନଙ୍କୁ 'ଧର୍ମ' ନାମରେ ନାମିତ କରାଯିବ କି ନାହିଁ ଏହି ଅଧ୍ୟାୟର ଏକ ପରବର୍ତ୍ତୀ ଅନୁଚ୍ଛେଦରେ ତାହା ଆଲୋଚନା କରାଯିବ ।

ଇଂରାଜୀ ଭାଷାର 'ରିଲିଜନ୍' (*Religion*) ଶବ୍ଦ 'ଧର୍ମ' ଶବ୍ଦର ପର୍ଯ୍ୟାୟବାଚୀ ନୁହେ । ଏହା ପନ୍ଥ, ସଂପ୍ରଦାୟ ବା ମଜହବ୍ ଶବ୍ଦ-

ମାନଙ୍କର ପର୍ଯ୍ୟାୟବାଚୀ । ପୂର୍ବରୁ କୁହା ଯାଇଛିଯେ ଧର୍ମରେ ବିକୃତ ଅସିବାବେଳେ ଧର୍ମ-ସଂଶୋଧକମାନେ ଜନ୍ମ ଗ୍ରହଣ କରି ଧର୍ମର ସଂଶୋଧନ କରନ୍ତି । ଏହି ଧର୍ମାତ୍ମାମାନଙ୍କ ମଧ୍ୟରୁ ଯେଉଁମାନେ ଉତ୍କୃଷ୍ଟ ସେମାନେ ନିଜକୁ ବିଶିଷ୍ଟ ମନୁଷ୍ୟ ଜାତିର ଏକ 'ଏକକ' ବୋଲି ମନେ କରନ୍ତି—ନିଜକୁ ନିତ୍ୟ ସନାତନ ଧର୍ମର ଅନୁଗାମୀ ବୋଲି ଭାବନ୍ତି—'ଧର୍ମର ନିର୍ମାତା' ନଭାବି 'ଧର୍ମର ସଂଶୋଧକ' ବୋଲି ପରିଚୟ ଦିଅନ୍ତି । ଅପରପକ୍ଷେ ଏହି ଧର୍ମାତ୍ମାମାନଙ୍କ ମଧ୍ୟରୁ ଅନ୍ୟ କେତେକେ ନିଜକୁ 'ଈଶ୍ୱର ଦୂତ' ବୋଲି ସଂବୋଧନ କରନ୍ତି—ନିଜକୁ ଏକ ୨ ଧର୍ମର ସଂସ୍ଥାପକ ବୋଲି ପ୍ରଚାର କରନ୍ତି । ଏମାନଙ୍କ ଅନୁଗାମୀମାନେ ପରବର୍ତ୍ତୀ କାଳରେ ଈଶ୍ୱରଙ୍କ ସ୍ଥାନରେ ଏମାନଙ୍କୁ ପୂଜା କରିବା ଆରମ୍ଭ କରି ଦିଅନ୍ତି । ଏଥିରେ ଗୋଟିଏ ୨ ରିଲିଜନ୍ ବା ସଂପ୍ରଦାୟ ସୃଷ୍ଟି ହୁଏ ।

ମହର୍ଷି ମନୁ 'ଧର୍ମ' ଶବ୍ଦର ବ୍ୟାଖ୍ୟା କରିଛନ୍ତି —

ଧୃତିଃ କ୍ଷମା ଦମୋଽସ୍ତେୟଂ, ଶୌଚମିନ୍ଦ୍ରିୟ ନିଗ୍ରହଃ ।
ଧୀର୍ବିଦ୍ୟା ସତ୍ୟମକ୍ରୋଧ ଦଶକଂ ଧର୍ମ ଲକ୍ଷଣମ୍ ॥ ମନୁ (୬,୯)

ଅର୍ଥାତ୍—ଧୈର୍ଯ୍ୟ, କ୍ଷମା, ମନର ସଂଯମ, ଚୋରି ତ୍ୟାଗ, ଶୌଚ, ଇନ୍ଦ୍ରିୟ ନିଗ୍ରହ, ବୁଦ୍ଧି, ବିଦ୍ୟା, ସତ୍ୟ ଓ ଅକ୍ରୋଧ—ଏହି ଦଶ ଧର୍ମର ଲକ୍ଷଣ ଅଟନ୍ତି ।

ଧର୍ମ ସଂବନ୍ଧରେ ମହର୍ଷି ମନୁଙ୍କ ଯେଉଁ ମନ୍ତବ୍ୟ ଉପରେ ଦିଆଗଲା, ସଂସାରର ପ୍ରଚଳିତ ସମସ୍ତ ଧର୍ମ ସେଥିରେ ଏକମତ ନୁହନ୍ତି କି ? ସୃଷ୍ଟି ଆରମ୍ଭବେଳେ ମନୁଷ୍ୟର ଅନୈଥୁନୀ ଜନ୍ମ ସଙ୍ଗେ ୨ ପରମାତ୍ମା ମନୁଷ୍ୟ

ଠାରେ ବେଦର ଧର୍ମ ପ୍ରକାଶ କରିବା ପରେ, ତାହାର ଅନୁକରଣ ନକରି ବିଭିନ୍ନ କୃତ୍ରିମ ଧର୍ମମାନଙ୍କର ପ୍ରଚାର କରିବାରେ ଫଳ କଣ ?

ବେଦର ଧର୍ମରୁ ଜାତ ଜରୁଦସ୍ତି, ଇହୁଦୀ, ଖ୍ରୀଷ୍ଟିଅନ, ବୌଦ୍ଧ, ମୁସଲମାନ ଆଦି ସଂପ୍ରଦାୟ, ପନ୍ଥ ବା ରିଲିଜନ୍ କୋଟିରେ ରହନ୍ତି। ବେଦର ଧର୍ମହିଁ ଧର୍ମ, ଅନ୍ୟ ସବୁ ମଜହବ୍ ବା ସମ୍ପ୍ରଦାୟ । ସଂପ୍ରଦାୟ ପ୍ରବର୍ତ୍ତନ ପାଇଁ ଈଶ୍ୱର ଓ ମନୁଷ୍ୟ ମଧ୍ୟରେ ଏକ ପ୍ରତିନିଧି, ଈଶ୍ୱର ଦୂତ (*Agent*) ଆବଶ୍ୟକ । ପରଂତୁ ଧର୍ମର ସଂପାଦନ ପାଇଁ କୌଣସି ମଧ୍ୟସ୍ଥ ଆବଶ୍ୟକ ହୁଏ ନାହିଁ । ସଂପ୍ରଦାୟ ଗଠନ ଲାଗି ବହୁ ଅନ୍ଧବିଶ୍ୱାସ—ଚମତ୍କାର-ମାନଙ୍କର ପ୍ରଚାର କରିବାକୁ ହୁଏ । ଧର୍ମ ପ୍ରଚାରରେ ଏସବୁ ଅନାବଶ୍ୟକ। ସଂପ୍ରଦାୟ ପ୍ରବର୍ତ୍ତନ ପାଇଁ ଲିଂଗ ବା ଚିହ୍ନର ଆବଶ୍ୟକ, କିଂତୁ ଧର୍ମର ଧାରଣ ପାଇଁ 'ନଲିଙ୍ଗଂ ଧର୍ମ ଲକ୍ଷଣମ୍' । ସଂପ୍ରଦାୟ ପରିବର୍ଦ୍ଧନ ଲାଗି ବୈଷ୍ଣବ କହିପାରେ—'ପାଗଲ ହାତୀ ଅନୁଧାବନ କଲେ ବି ଅଣଷ୍ୟାର୍ଥେ ଶିବାଳୟରେ ପ୍ରବେଶ କରନା ।' ଶୈବ ବୈଷ୍ଣବକୁ ଘୃଣା କରିପାରେ । ମୁସଲମାନ କହିପାରେ —'ମିନକାଲା ଲା ଇଲ୍‌ହା ଇଲ୍ଲି ଲା ଫଦଖଲୁଲ୍-ଜନାଃ ବ ଇଂଜନଃ। ବ ଇ ସରକାଃ' ଅର୍ଥାତ୍—ଲାଇଲା ଇଲ୍ଲ ଇଲ୍ଲା କହିବା ମୁସଲମାନ ବ୍ୟଭିଚାରୀ ଓ ଚୋର ହେଲେବି ବହିସ୍ତକୁ ଯିବେ । ଏହି ବିଶ୍ୱାସରେ ପ୍ରେରିତ ହୋଇ ସ୍ୱର୍ଗୀୟ ମୌଲନା ମହମ୍ମଦ ଅଲ୍ଲି ଥରେ କହିଥିଲେ—'ମହାତ୍ମା ଗାନ୍ଧି ସଦାଚାର ଦୃଷ୍ଟିରୁ ଜଗତକୋଟିର ମହାତ୍ମା । ପରଂତୁ ବଡ଼ ଦୁଃଖର କଥାସେ ନରକ (ଦୋଜଖ)କୁ ଯିବେ ଯେହେତୁ ସେ ମୁସଲମାନ ନୁହନ୍ତି † ।' ସଂପ୍ରଦାୟବାଦୀ ହିଂଦୁ କହିପାରେ ଗଙ୍ଗାସ୍ନାନ

---

† ପଣ୍ଡିତ ଜ୍ଞାନଚନ୍ଦ୍ର ଆର୍ଯ୍ୟ କୃତ 'ଧର୍ମ ଔର ଉସ୍‌କୀ ଆବଶ୍ୟକତା' ଦ୍ରଷ୍ଟବ୍ୟ।

କଲେ ବା ତୁଳସୀ ବୃକ୍ଷ ମୂଳେ ଜଳ ଦେଲେ ସିଧା ମୁକ୍ତି ମିଳିଯାଏ । ଖ୍ରୀଷ୍ଟିଆନ କହିପାରେ—'ଧର୍ମଗ୍ରନ୍ଥ ଲିଖିତ ସୃଷ୍ଟିର ପୃଥିବୀକୁ ଗତିଶୀଳ ବୋଲି କହୁଥିବା ବୈଜ୍ଞାନିକମାନେ ଧର୍ମ ଓ ଦେଶଦ୍ରୋହୀ ।' ପୌରାଣିକ କହିପାରେ—'କଳି ଯୁଗରେ ପାପ ଓ ଦୁର୍ନୀତି ବଢ଼ିବା ସ୍ୱାଭାବିକ ।' ପରନ୍ତୁ ଧର୍ମ ଏସବୁ ଉକ୍ତିର ବାହାରେ ଓ ଉର୍ଦ୍ଧରେ ।

ଦଳବାଦୀ ମନୁଷ୍ୟର ଧାରଣା ଅଟେ 'ସଂପ୍ରଦାୟ', ମୁକ୍ତ ମନୁଷ୍ୟର 'ଧର୍ମ' । ସାର୍ବଜନୀନ ସତ୍ୟର ପ୍ରକାଶକ ରୂପେ ବେଦର ଧର୍ମ ହିଁ ଧର୍ମ । ବେଦ ସକଳ ମନୁଷ୍ୟଙ୍କ ସଂପତ୍ତି—ଏହା କୌଣସି ଗୋଷ୍ଠୀ, ସଂପ୍ରଦାୟ ବା ଦଳର ସଂପତ୍ତି ନୁହେ । ବେଦର ଯେଉଁଠାରେ ଉପଦେଶ ରହିଛି ସେଠାରେ ସକଳ ମନୁଷ୍ୟ ଜାତି ଉଦ୍ଦିଷ୍ଟ । ବେଦର ଗୀତ—'କୃଣ୍ୱନ୍ତୋ ବିଶ୍ୱମାର୍ଯ୍ୟମ୍'—ଅଖିଳ-ମାନବ ଆର୍ଯ୍ୟ ବା ଶ୍ରେଷ୍ଠ ହୁଅନ୍ତୁ । ମହାମୁନି କଣାଦଙ୍କ ଭାଷାରେ ଯାହା ଧର୍ମ *—ଅଭ୍ୟୁଦୟ (ଲୋକୋନ୍ନତି) ଓ ନିଃଶ୍ରେୟସ (ମୋକ୍ଷ)ର ପନ୍ଥା—ତାହା ବେଦରେ ହିଁ ପ୍ରାପ୍ୟ । ବେଦର ଲୌକିକ ରୂପ ଭୌତିକ ବିଜ୍ଞାନ ଲୋକୋନ୍ନତିର ଆଧାର । ପରଲୌକିକ ରୂପ ଆଧ୍ୟାତ୍ମିକ ବିଜ୍ଞାନ ମୋକ୍ଷର ପନ୍ଥା ।

## ଧର୍ମର ସର୍ଜନା ଈଶ୍ୱରକୃତ

ସଂସାରରେ ପ୍ରଚଳିତ ସମସ୍ତ ମତ ବା ସଂପ୍ରଦାୟ ଜଣେ ୨ ସଂସ୍ଥାପକଙ୍କ ଦ୍ୱାରା ସଂପାଦିତ । ପରନ୍ତୁ ଏହି ସବୁ ସଂପ୍ରଦାୟ କ୍ରମଶଃ

---

* ଯତୋଽଭ୍ୟୁଦୟ ନିଃଶ୍ରେୟସସିଦ୍ଧିଃ ସଃ ଧର୍ମ—ବୈଶେଷିକ ଦର୍ଶନ ।

ବକୃତ ରୂପ ହୋଇ ଯେଉଁ ଆଦି ବୈଦିକ ଧର୍ମରୁ ଜାତ, ସେହି ଧର୍ମର ସଂସ୍ଥାପକ ରୂପରେ କୌଣସି ମନୁଷ୍ୟର ନାମ ଅଜ୍ଞାତ ଓ ଅଶ୍ରୁତ । ବ୍ରହ୍ମାଙ୍କ ଠାରୁ ଜୈମିନ ଯାଏ ପ୍ରତ୍ୟେକ ବୈଦିକ ଋଷି ନିଜ ନିଜକୁ ବୈଦିକ ଧର୍ମର ପୋଷକ ବୋଲି ମାନି ନେଇ ବେଦକୁ ଆଦିସୃଷ୍ଟି ବେଳେ ଈଶ୍ୱର ପ୍ରକାଶିତ ବୋଲି ଗ୍ରହଣ କରିଛନ୍ତି । ଯେଉଁ ପଣ୍ଡିତମାନେ ପ୍ରାଚୀନ ଋଷିମୁନିମାନଙ୍କୁ ବେଦଧର୍ମର ରଚୟିତା ବୋଲି ମାନୁଛନ୍ତି ସେମାନଙ୍କର ସକଳ ସଂଦେହକୁ ଏହି ଗ୍ରନ୍ଥର ତୃତୀୟ ଅଧ୍ୟାୟରେ ମୋଚନ କରାଯାଇଛି । ଋଷି ବେଦର ଅନ୍ତଃଦ୍ରଷ୍ଟା—ସେ ବେଦର ସ୍ରଷ୍ଟା ନୁହନ୍ତି ।

ଯେଉଁ ରୂପେ ମୁସଲମାନ ଓ ଖ୍ରୀଷ୍ଟିଆନ ମତ ଇହୁଦୀ ମତରୁ, ଇହୁଦୀ ମତ ଜରୁଦସ୍ତି ମତରୁ, ଜରୁଦସ୍ତି ଓ ବୌଦ୍ଧ ମତ ବୈଦିକ ଧର୍ମରୁ ଜାତ ସେହି ରୂପେ ବୈଦିକ ଧର୍ମ ଅନ୍ୟ କୌଣସି ଧର୍ମରୁ ଜନ୍ମଲାଭ କରିବା କଥା କାହାରିକୁ ଜଣାନୁହେ । ଅଧ୍ୟାପକ ମେକ୍ସ୍ ମୂଲେର ଲେଖିଛନ୍ତି—'ବୈଦିକ ଧର୍ମ କେବଳ ଏକ ମାତ୍ର ଧର୍ମ ଯାହାର ଉପରେ କୌଣସି ବାହ୍ୟ ପ୍ରଭାବ ପ୍ରକ୍ଷିପ୍ତ ନୁହେ † ।'

କୌଣସି ମାନୁଷିକ ପ୍ରେରଣା ଦ୍ୱାରା ଯେଉଁ ରୂପେ ମନୁଷ୍ୟର ପ୍ରଥମ ଜ୍ଞାନ, ପ୍ରଥମ ବାଣୀ ଓ ଭାଷା ସ୍ଫୁରିତ ନୁହେ, ସେହି ରୂପେ ମନୁଷ୍ୟର ପ୍ରଥମ ଧର୍ମ ମାନୁଷୀ ପ୍ରେରଣାରେ ପ୍ରକାଶିତ ନୁହେ ।

ଖ୍ରୀଷ୍ଟିଆନ ଜଗତର ପ୍ରସିଦ୍ଧ ପାଦ୍ରୀ ମୋରିସ୍ ଫିଲିପ୍ସ ଲେଖିଛନ୍ତି- 'ଏହା ସ୍ପଷ୍ଟ ଯେ ପ୍ରାଚୀନ ବୈଦିକ ଧର୍ମର ମୂଳ ନୀତିକୁ ଅମ୍ଭେମାନେ

---

† *Vide India: What Can It Teach Us By Maxmuller*

ଯେତେଦୂର ଅନୁଶୀଳନ କରୁ ସେତେ ଶୁଦ୍ଧ ଓ ସରଳ ଈଶ୍ବରଙ୍କ ବିଷୟରେ ପାଇପାରୁଁ । ସମସ୍ତ ସ୍ରୋତରେ ଯେତେ ଦୂର ନିମ୍ନକୁ ଗତ କରୁ ସେତେ ଅପଭ୍ରଷ୍ଟ ଓ ଅବଶୁଦ୍ଧ ରୂପ ପାଇଥାଉ । ତେଣୁ ବୈଦିକ ଋଷିମାନଙ୍କ ଈଶ୍ବର ଓ ପରଲୋକ ବିଷୟର କୌଣସି ସଂସାରିକ ଅନୁଭବରୁ ପ୍ରାପ୍ତ ହୋଇଥିବା ସଂଭବ ନୁହେ ✱ ।’

ତେବେ ଧର୍ମର ଆଦି ସ୍ରୋତ ‘ବେଦ’ର ପ୍ରକାଶକ କିଏ ? ସେ ନିଶ୍ଚୟ ଜ୍ଞାନ ଓ ବାଣୀର ଆଦି ସ୍ରୋତର ପ୍ରକାଶକ ‘ପୂର୍ବେଷାମପି ଗୁରୁଃ ।’

---

✱ *Vide The Teachings of The Vedas By Maurice Philips.*

—ସପ୍ତମ ଅଧ୍ୟାୟ—

## ବେଦର କାଳ ନିର୍ଣ୍ଣୟ

ବେଦର କାଳ ସମ୍ବନ୍ଧରେ ବୈଦିକ ସିଦ୍ଧାନ୍ତ ଏକାଧିକ ବାର ଆଲୋଚିତ ହୋଇଛି । ପ୍ରତି ସୃଷ୍ଟିର ମନୁଷ୍ୟୋତ୍ପତ୍ତି ବେଳେ ବେଦ ସାକ୍ଷାତକୃତଧର୍ମା ଋଷିଙ୍କ ଠାରେ ପରମାତ୍ମାଙ୍କ ପ୍ରେରଣାରେ ପ୍ରକାଶିତ ହୁଏ । ସୃଷ୍ଟି ଚକ୍ର ଅନାଦି ଓ ଅନନ୍ତ । ସୁତରାଂ ବେଦ ପ୍ରକାଶର ଚକ୍ର ମଧ୍ୟ ଅନାଦି ଓ ଅନନ୍ତ । ଅବଶ୍ୟ ସ୍ଥୂଳ ଦୃଷ୍ଟିରେ ପ୍ରଚଳିତ ସୃଷ୍ଟି ପାଇଁ ବେଦର କାଳ ନିର୍ଣ୍ଣୟ କରି ଯାଇପାରେ । ଏହି କାଳ ମନୁଷ୍ୟର ଅମୈଥୁନୀ ସୃଷ୍ଟିର କାଳ ସହ ସମାନ । ଅର୍ଥାତ ଆଦି ମନୁଷ୍ୟର ଉତ୍ପତ୍ତି ଯେତେବେଳେ, ବେଦ ପ୍ରକାଶ ବି ଠିକ୍ ସେତିକି ବେଳେ । ବେଦର ଏହି କାଳ ନିରୂପଣ ସମ୍ବନ୍ଧରେ ମତାନୈକ୍ୟ ପ୍ରାଚୀନ ନୁହେ । ଆଧୁନିକ କେତେକ ପଣ୍ଡିତ

ବେଦ ମଂତ୍ରର ଋଷିଙ୍କୁ ମଂତ୍ର ଦ୍ରଷ୍ଟା ରୂପେ ନମାନି ମଂତ୍ର ସ୍ରଷ୍ଟା ରୂପେ ମାନିବା ଫଳରେ ଏହି ଅନୈକ୍ୟ ସୃଷ୍ଟି ହୋଇଛି । ବେଦ ମଂତ୍ରର ଋଷିଯେ ମଂତ୍ରସ୍ରଷ୍ଟା ନୁହନ୍ତି ଏହା ତୃତୀୟ ଅଧ୍ୟାୟରେ ଆଲୋଚିତ ହୋଇଛି ।

## ସୃଷ୍ଟି କାଳ ଓ ମନୁଷ୍ୟୋତ୍ପତ୍ତି କାଳ

ତାହାହେଲେ ବେଦୋତ୍ପତ୍ତି ବା ମନୁଷ୍ୟୋତ୍ପତ୍ତି କାଳ କେବେ ? ଏହା ନିର୍ବିବାଦଯେ ସଂସାରର ସୃଷ୍ଟି ଓ ସଂସାରର ସୃଷ୍ଟି ପୂର୍ବରୁ ଆକାଶ ବାୟୁ, ଅଗ୍ନି, ଜଳାଦିର ସୃଷ୍ଟି । ପ୍ରଚଳିତ ସୃଷ୍ଟି ଉତ୍ପତ୍ତିର କାଳ ପ୍ରାୟ ଦୁଇଶହ କୋଟି ବର୍ଷରୁ କିଛି କମ୍ । ଏହାର ସର୍ବଶେଷ ବିବରଣୀ ପରେ ଦିଆଯିବ । ତେବେ ଏହି କାଳ ମନୁଷ୍ୟୋତ୍ପତ୍ତିର କାଳ ନୁହେ । ପ୍ରଳୟ ପରେ ପରମାଣୁମାନଙ୍କ ମଧ୍ୟରେ ସଂଘାତ ହୋଇ ଯେତେବେଳେ 'ସୃଷ୍ଟି' କାର୍ଯ୍ୟ ଆରଂଭ ହୁଏ, ସେହି ସମୟ ଠାରୁ ସୃଷ୍ଟିର କାଳ ଗଣାଯାଇ ହୁଏ ।

ଏହି କାଳ ଠାରୁ ସୂର୍ଯ୍ୟ, ଚନ୍ଦ୍ରାଦି ସମସ୍ତ ନାକ୍ଷତ୍ରିକ ଜଗତର ସୃଷ୍ଟି ହେବା ପର୍ଯ୍ୟନ୍ତର ସମୟକୁ 'ସ୍ୱାୟଂଭୁବ ମନୁ' କୁହାଯାଏ । ସେହିପରି ପୃଥିବୀ ସୃଷ୍ଟିର ମନୁକୁ 'ସ୍ୱାରୋଚିଷ ମନୁ' କୁହାଯାଏ । ତୃତୀୟ ମନୁ 'ଔତ୍ତମି'ରେ ପୃଥିବୀରୁ ଚନ୍ଦ୍ର, ଚତୁର୍ଥ 'ତାମସ'ରେ ପୃଥିବୀରୁ ସ୍ଥଳ ଭାଗ, ପଂଚମ 'ରୈବତ'ରେ ବନସ୍ପତି, ଷଷ୍ଠ 'ଚାକ୍ଷୁଷ'ରେ ପଶୁ ଆଦି ଜୀବ ଓ ବର୍ତ୍ତମାନ 'ବୈବସ୍ୱତ' ମନୁ ଆରଂଭରେ ମନୁଷ୍ୟ ସୃଷ୍ଟି ହୁଅନ୍ତି ।

ଗୋଟିଏ ନୂତନ ଗୃହରେ ବାସ କରିବା ପୂର୍ବରୁ ସ୍ନାନ ଗୃହ, ପାକଶାଳା ଓ ଅନ୍ୟାନ୍ୟ ଗୃହୋପଯୋଗୀ ଦ୍ରବ୍ୟର ବ୍ୟବସ୍ଥା କରି

ଘାଲବା ଘରେ ସେଥିରେ ବାସ କରାଯାଏ । ସେହିପରି ବାୟୁ, ଅଗ୍ନି, ଜଳ ବନସ୍ପତି ଆଦି ଅବଶ୍ୟକୀୟ ପଦାର୍ଥର ସୃଷ୍ଟି ପରେ ମନୁଷ୍ୟ ସୃଷ୍ଟି ହୁଏ । ସୃଷ୍ଟିର ଏହି କ୍ରମ ବିଜ୍ଞାନ ସମ୍ମତ । ଆଧୁନିକ ବୈଜ୍ଞାନିକମାନେ ଏହି ପଦ୍ଧତିକୁ ସମର୍ଥନ କରୁଛନ୍ତି । ଜୀବଶ୍ରେଷ୍ଠ ମନୁଷ୍ୟର ସୃଷ୍ଟି ପୂର୍ବରୁ ପରମାତ୍ମା ତାହାର ସକଳ ଅବଶ୍ୟକୀୟ ପଦାର୍ଥ ସୃଷ୍ଟି କରିଥାନ୍ତି । ପୁଣି ମନୁଷ୍ୟର ଅନ୍ତିମ ଉଦ୍ଦେଶ୍ୟ ମୁକ୍ତିର ସାଧନ ପାଇଁ ତାହାକୁ ପୁନର୍ଜନ୍ମ ଚକ୍ରରେ ଘୂରାଇ ବହୁବାର ସୁଯୋଗ ଦିଅନ୍ତି ।

ସ୍ୱାୟମ୍ଭୁବ ମନୁର ସତାଇଶ ଚତୁର୍ଯୁଗୀର ବର୍ତ୍ତମାନ ଅତିବାହିତ ହେଲାଣି । ଅଠାଇଶ ଚତୁର୍ଯୁଗୀର ତିନି ଯୁଗ ଯାଇ ଚତୁର୍ଥ କଳିଯୁଗ ବର୍ତ୍ତମାନ ଚାଲୁଛି । ଏଣୁ ଏହି କଳ୍ପର ମନୁଷ୍ୟୋତ୍ପତ୍ତି କାଳର ହିସାବ ହେଉଛି—

| | | |
|---|---|---|
| ସତାଇଶ ଚତୁର୍ଯୁଗୀର ସମୟ | ୧୧୬୬୪୦୦୦୦୦ | ବର୍ଷ |
| ଅଷ୍ଟାବିଂଶତି ଚତୁର୍ଯୁଗୀର ସତ୍ୟଯୁଗ | ୧୭୨୮୦୦୦ | ,, |
| ତ୍ରେତାଯୁଗ | ୧୨୯୬୦୦୦ | ,, |
| ଦ୍ୱାପରଯୁଗ | ୮୬୪୦୦୦ | ,, |
| କଳିଯୁଗ (ଆଜକୁ ଭୋଗ) | ୫୦୫୯ | ,, |
| | ୧୨୦୫୩୩୦୫୯ | ବର୍ଷ |

ମନେ ରଖିବାକୁ ହେବ ଯେ ମନୁଷ୍ୟୋତ୍ପତ୍ତି କାଳର ଯେଉଁ ହିସାବ ଉପରେ ଦିଆଗଲା, ତାହା ପ୍ରଚଳିତ ସୃଷ୍ଟି ପାଇଁ । ସୃଷ୍ଟିଚକ୍ର ଅନାଦି

ବା ସୃଷ୍ଟି ପ୍ରଳୟ ଚକ୍ରର ଆଦି ନାହିଁ । ତେଣୁ ଏହି ସବୁ କାଳ କେବଳ ବର୍ତ୍ତମାନର କଳ୍ପ ବା ସୃଷ୍ଟି ପାଇଁ ଗଣନା କରାଯାଇ ପାରେ । ମନୁଷ୍ୟୋତ୍ପତ୍ତିର ଉପରୋକ୍ତ କାଳ ବେଦୋତ୍ପତ୍ତିର କାଳ କାରଣ ମନୁଷ୍ୟ ସୃଷ୍ଟିବେଳେ ତାଠାରେ ଆଦିଜ୍ଞାନ ଓ ବାଣୀ ବେଦର ପ୍ରକାଶ ହୁଏ ।

## ସାଂପ୍ରଦାୟିକ ମନୁଷ୍ୟୋତ୍ପତ୍ତି କାଳ

ମନୁଷ୍ୟୋତ୍ପତ୍ତିର ଉପରୋକ୍ତ କାଳ ବୈଦିକଧର୍ମ ସମ୍ମତ । ଏହାକୁ ଧାରର୍ମୀ ଓ ବୌଦ୍ଧ ମତ ସ୍ୱୀକାର କରନ୍ତି । ପରନ୍ତୁ ଇହୁଦୀ, ଖ୍ରୀଷ୍ଟିଆନ ଓ ମୁସଲମାନ ମତ ସାଂପ୍ରଦାୟିକ ବିଶ୍ୱାସ ଉପରେ ମନୁଷ୍ୟସୃଷ୍ଟିର କାଳ ନିର୍ଦ୍ଧାରଣ କରିଛନ୍ତି । ବାଇବେଲ୍ ଅନୁସାରେ ସଂସାରର ପ୍ରଥମ ପୁରୁଷ ଏଡେମ୍‌ଙ୍କ ଠାରୁ ଇବ୍ରାହିମଙ୍କ ପର୍ଯ୍ୟନ୍ତ ୨୨ ପୁରୁଷର କାଳ ୩୫୭୨ ବର୍ଷ । ଡ଼ାଃ ମ୍ଲିଗେଲ୍ ଆଦି ପଣ୍ଡିତମାନଙ୍କ ମତରେ ଇବ୍ରାହିମଙ୍କ ସମୟ ଖ୍ରୀ. ପୂ ୧୯୦୦ । ସୁତରାଂ ଏଡେମ୍‌ଙ୍କ ସମୟ ଆଜିଠାରୁ ୭୪୩୦ ବର୍ଷ (୩୫୭୨+୧୯୦୦+୧୯୫୮) ହେଲେ । ଆଉ କେତେକ ଖ୍ରୀଷ୍ଟିଆନ ପଣ୍ଡିତଙ୍କ ମତରେ ଏଡେମ୍‌ଙ୍କ ଜନ୍ମ ଖ୍ରୀ. ପୂ ୪୦୦୪ ରେ ବା ଆଜିଠାରୁ ୫୯୬୨-ବର୍ଷ ହେଲେ । ଏହି ଦୁଇଟିରୁ ପୁରାତନ ସମୟକୁ ଗ୍ରହଣ କଲେ ବି ସଂସାରର ସର୍ବ ପ୍ରଥମ ପୁରୁଷଙ୍କ କାଳ ୭୪୩୦ ବର୍ଷ ତଳର ବୋଲି ମାନିବାକୁ ହେଉଛି । ଉପରୋକ୍ତ ସାଂପ୍ରଦାୟିକ ବିଶ୍ୱାସକୁ ଭିତ୍ତି କରି ଆର୍ଚବିଶପ୍ ଅସର୍ ସଂସାରର ଯେଉଁ ତିଥିକ୍ରମ ନିର୍ଣ୍ଣୟ କରିଛନ୍ତି, ତାହା ଖ୍ରୀଷ୍ଟିଆନ ଜଗତର ଶିରୋଧାର୍ଯ୍ୟ । ଧର୍ମଯାଜକମାନଙ୍କ ମତରେ ସଂସାରର ଅନ୍ୟ ସକଳ ଧର୍ମ, ଧର୍ମଗ୍ରନ୍ଥ ଓ ସଂସ୍କୃତି ଏଡେମ୍‌ଙ୍କ ପରକାଳୀନ ।

ୟୁରୋପରେ ଏହି କେତେବର୍ଷତଳେ ଖ୍ରୀଷ୍ଟିଆନ ଧର୍ମଯାଜକ ଓ ବୈଜ୍ଞାନିକଙ୍କ ମଧ୍ୟରେ ଯେଉଁ ମନୋମାଳିନ୍ୟ ସୃଷ୍ଟି ହୋଇଥିଲା ତାହାର ସୂଚନା ଚତୁର୍ଥ ଅଧ୍ୟାୟରେ ଦିଆଯାଇଛି । ଏହି ଅଶୋଭନୀୟ ପରିସ୍ଥିତି ପଛରେ ଧର୍ମଯାଜକମାନଙ୍କର କେତେକ ସାଂପ୍ରଦାୟିକ ବିଶ୍ୱାସ ହିଁ ପ୍ରଧାନତଃ ଦାୟୀ, ଏକଥା ବି ସେଠାରେ ସ୍ପଷ୍ଟୀକରଣ କରାଯାଇଛି । ଧର୍ମଯାଜକମାନେ ସୃଷ୍ଟିକାଳକୁ ସାତ ବା ଆଠ ହଜାର ବର୍ଷ ମଧ୍ୟରେ ସୀମିତ କରୁଥିବାବେଳେ ବୈଜ୍ଞାନିକମାନେ ତାହାକୁ କୋଟିଏ ବର୍ଷ ତଳକୁ ନେବାପାଇଁ ପ୍ରମାଣ ଦେଖାଇଛନ୍ତି । ଫଳରେ ସଂପ୍ରଦାୟବାଦୀଙ୍କ ମନରେ ଲୋକବିଶ୍ୱାସ ହରାଇବା ଭୟ ଘନୀଭୂତ ହୋଇ ଉଠିଛି । ସମାଲୋଚକ ପେସ୍ ୟୁରୋପର ଏହି ବିଷମ ପରିସ୍ଥିତି ବର୍ଣ୍ଣନା କରିବା-ବେଳେ ଲେଖିଛନ୍ତି—‘ମନୁଷ୍ୟର ଇତିହାସ ଆମ ବାଇବେଲ୍ ଲିଖିତ ତଥ୍ୟ ମଧ୍ୟରେ ସୀମାବଦ୍ଧ ହୋଇ ରହିଥିଲା । × × × × ସଂସାରର ସୃଷ୍ଟି ଖ୍ରୀ. ପୂ ୪୦୦୪ ବର୍ଷ ବା ତନ୍ନିକଟ ସମୟରେ ଘଟିଥିଲା ବୋଲି ଯେଉଁ ଲୋକଙ୍କ ବିଶ୍ୱାସ ରହିଥିଲା, ସେମାନଙ୍କ ଠାରେ ମନୁଷ୍ୟର ଅଦିମତା ଏକ ଲକ୍ଷ ବର୍ଷର ବୋଲି କଳ୍ପନା କରିବା ଯେଉଁପରି ଦୁସାଧ୍ୟ ସେହିପରି ଅବିଶ୍ୱାସଯୋଗ୍ୟ ମନେ ହେଲା † ।’

---

† *But as far as man was concerned, his history was limited by the dates in the margines of our Bible. ×××× To a generation which had been brought up to believe that in 4004 B.C. or thereabouts, the world was being created, the idea that man himself went back to 100,000 years ago was both incredible and inconceivable. (Vide journal of the Royal Anthropological Institute—Vol 60—Antiquity of civilised man.)*

ମନୁଷ୍ୟ ସୃଷ୍ଟି ଓ ବେଦୋତ୍ପତ୍ତିର କାଳ କପର ଏଡ୍ରେନ୍‌ଙ୍କ କାଳଠାରୁ ଠାରୁ ଅତ୍ୟନ୍ତ ପୁରାତନ, ଏହି ବିଷୟ ପରେ ବିଶଦ୍ ଭାବରେ ଆଲୋଚିତ ହେବ । ମହାରାଜ ଚନ୍ଦ୍ରଗୁପ୍ତଙ୍କ ରାଜସଭାକୁ ଆସିଥିବା ଗ୍ରୀକ୍ ରାଜଦୂତ ମେଗାସ୍ଥିନିସ୍‌ଙ୍କ ବିବରଣୀରୁ ଭାରତୀୟ ରାଜପରଂପରାର ଯେଉଁ ଅଶିଂକ ବଂଶାବଳୀ ଉପଲବ୍ଧ ହୁଏ, କେବଳ ତାହାର ଧାରାବାହିକ ସମୟ ଏଡେନ୍‌ଙ୍କ ସମୟ ଠାରୁ ବହୁ ପ୍ରାଚୀନ । କଳ୍ପିତ ଏଡ୍ରେନ୍‌ଙ୍କ ନିରୂପିତ ସମୟ ଯଦି ନିଶ୍ଚିତ, ତାହାହେଲେ ସେହି କାଳ ପ୍ରଚଳିତ ସୃଷ୍ଟିର ଛଅ ମନୁ, ସତାଇଶ ଚତୁର୍ଯୁଗୀ ଅତୀତ ହେବାପରେ ଅଠାଇଶ ଚତୁର୍ଯୁଗୀର ସତ୍ୟ, ତ୍ରେତା ଯୁଗାନନ୍ତର ଦ୍ୱାପରର ଶେଷାର୍ଦ୍ଧରେ ! ଅର୍ଥାତ୍ ଏହି କାଳ ମହାଭାରତ ସମରର ପ୍ରାୟ ଦୁଇ ହଜାର ବର୍ଷତଳେ ।

## ବେଦ ଓ ପାଶ୍ଚାତ୍ୟ ସମାଲୋଚକ

ବେଦାନୁଶୀଳନରେ ପାଶ୍ଚାତ୍ୟ ଲେଖକମାନଙ୍କ ଅଗ୍ରହ ଓ ବେଦ ସଂବନ୍ଧରେ ସେମାନଙ୍କ ମତକୁ ଆଲୋଚନା କରିବା ଆବଶ୍ୟକ । ବିଶେଷତଃ ସଂସାରରେ ଆଜି ପାଶ୍ଚାତ୍ୟ ଲେଖକମାନଙ୍କର ମଂତବ୍ୟକୁ ଅଧିକ ଗୁରୁତ୍ୱ ଦିଆଯାଉ ଥିବାବେଳେ, ଏପରିକି ପ୍ରସିଦ୍ଧ ୨ ଭାରତୀୟ ପଣ୍ଡିତମାନେ ବି ବେଦ, ଉପନିଷଦ, ଦର୍ଶନ ଶାସ୍ତ୍ର ଆଦି ଗ୍ରଂଥର ମୂଳ ଲେଖାମାନ ନପଢି ପାଶ୍ଚାତ୍ୟ ଭାଷାର ଅନୁବାଦ ପଢୁଥିବା ସମୟରେ ସେଦେଶର ଲେଖକମାନଙ୍କ ମତ ଓ ମନୋଭାବକୁ ଆଲୋଚନା କରିବା ବିଶେଷ ପ୍ରୟୋଜନ ।

ପ୍ରଥମତଃ ପାଶ୍ଚାତ୍ୟ ସମାଲୋଚକମାନେ ପ୍ରାଚୀନ ବୈଦିକ ସାହିତ୍ୟର ସାର୍ବଭୌମତାକୁ ଗ୍ରହଣ ନକରି ସେସବୁକୁ 'ଭାରତୀୟ ଶାସ୍ତ୍ର'

ରୂପେ ସଂକୀର୍ଣ୍ଣ ଦୃଷ୍ଟିକୋଣରୁ ଆଲୋଚନା କରନ୍ତିନ୍ତି । ଷଷ୍ଠ ଅଧ୍ୟାୟରେ ବେଦର ସାର୍ବଜନୀନ ଲୌକିକ ଓ ପରଲୌକିକ ଶିକ୍ଷାର ଦିକ୍ ଦର୍ଶନ କରାଯାଇଛି । ବେଦର କେଉଁ ସ୍ଥଳରେ କୌଣସି ନୀତି ଭାରତୀୟ, ଇଉରୋପୀୟ ବା ଚୀନଦେଶୀୟ ଲୋକଙ୍କ ପାଇଁ ଉଦ୍ଦିଷ୍ଟ ନୁହେ । ବେଦର ଧର୍ମ ମନୁଷ୍ୟର ଧର୍ମ । ବେଦ ସକଳ ମନୁଷ୍ୟଙ୍କୁ ଆର୍ଯ୍ୟ ହେବାପାଇଁ ଉପଦେଶ ଦିଏ । ଆର୍ଯ୍ୟର ଅର୍ଥ ପରମେଶ୍ୱର ଓ ପରମେଶ୍ୱରଙ୍କ ଆଜ୍ଞାକାରୀ ସନ୍ତାନ ରୂପେ ମନୁଷ୍ୟ 'ଆର୍ଯ୍ୟ' । ବଶିଷ୍ଠ ସ୍ମୃତିରେ ଏହି ଶବ୍ଦର ଅର୍ଥ କରାଯାଇଛି—'ଯେ କର୍ତ୍ତବ୍ୟ କର୍ମର ଆଚରଣ କରେ ସେ ଆର୍ଯ୍ୟ † ।' ଯୋଗୀ ଅରବିନ୍ଦ 'ଆର୍ଯ୍ୟ' ଶବ୍ଦ ସମ୍ବନ୍ଧେ କହିଛନ୍ତି—'ମନୁଷ୍ୟ ଇତିହାସରେ ଏହାଠାରୁ ଉତ୍ତମ ଶବ୍ଦ ଆଉ କିଛି ନାହିଁ ❊ ।' ବେଦର ସକଳ ଶିକ୍ଷା ମନୁଷ୍ୟଙ୍କୁ ଆର୍ଯ୍ୟ ରୂପେ ଗଢିବା ପାଇଁ—ବେଦ ମନୁଷ୍ୟଙ୍କୁ 'ଅମୃତସ୍ୟ ପୁତ୍ରାଃ' ଓ 'ଆର୍ଯ୍ୟ' ରୂପେ ସଂବୋଧନ କରେ । ଏସବୁ ସତ୍ତ୍ୱେ ପାଶ୍ଚାତ୍ୟ ଲେଖକ ଗଣ ବେଦାଦି ଶାସ୍ତ୍ରର ଆଲୋଚନା କଲାବେଳେ ଏସବୁକୁ 'ଭାରତୀୟ ଶାସ୍ତ୍ର' ଓ 'ଆର୍ଯ୍ୟ' ଶବ୍ଦକୁ ଏକ ନାମବାଚକ, ସଂକୀର୍ଣ୍ଣ ଜାତି ବା ସଂପ୍ରଦାୟ ରୂପେ ଗ୍ରହଣ କରି ସେସବୁର ପକ୍ଷପାତୀ ଆଲୋଚନା କରିଥାନ୍ତି ।

---

† କର୍ତ୍ତବ୍ୟମାଚରନ୍ କାର୍ଯ୍ୟଂ, ଅକର୍ତ୍ତବ୍ୟମନାଚରନ୍ । ତିଷ୍ଠତି ପ୍ରକୃତାଗ୍ରରେ ସ ତୁ ଆର୍ଯ୍ୟ ଇତି ସ୍ମୃତଃ—ବଶିଷ୍ଠ ସ୍ମୃତି ।

❊ *There is no word in human speech that has a nobler history—Sri Aurobindo*

ଏହି ଲେଖକମାନଙ୍କ ମନରେ ସଂକୀର୍ଣ୍ଣ ଜାତୀୟତା ସଙ୍ଗେ ୨ ନୀଚ ଧର୍ମାନ୍ଧତା ମଧ୍ୟ ରହିଛି । ବେଦାଦି ଶାସ୍ତ୍ରକୁ ଏମାନେ 'ହିନ୍ଦୁ' ନାମକ ଏକ ସଂପ୍ରଦାୟର ଧର୍ମଶାସ୍ତ୍ର ରୂପେ ବର୍ଣ୍ଣନା କରିଛନ୍ତି । ଏପରିକି ସେହି ଦେଶମାନଙ୍କର ଉଚ୍ଚରୁ ଉଚ୍ଚ ବୈଜ୍ଞାନିକ ଓ ଶାସ୍ତ୍ରଜ୍ଞମାନେ ଏହି ଦୋଷରୁ ମୁକ୍ତି ପାଇ ନାହାନ୍ତି । ବେଦଜ୍ଞାନରେ ଉଦ୍‌ବୁଦ୍ଧ ହୋଇ ପଡିଥିବା ଅଧ୍ୟାପକ ମେକ୍‌ସମୁଲେର୍ ନିଜ ପୁତ୍ର ପାଖକୁ ଏକ ପତ୍ରରେ ଲେଖିଥିଲେ-- 'କେଉଁ ଧର୍ମ ଗ୍ରନ୍ଥ ସଂସାରର ସମସ୍ତଙ୍କ ଠାରୁ ଉତ୍କୃଷ୍ଟ କହି ପାରିବାକି? × × × ମୋ ମତରେ ଏହା ବାଇବେଲ୍‌ର 'ନୂତନ ପ୍ରତିଜ୍ଞା' । ଏହା-ପରେ କୋରାନ୍‌କୁ ରଖା ଯାଇପାରେ ଯାହାର ଅଧିକ ସମ୍ବନ୍ଧୀ ଶିକ୍ଷା 'ନୂତନ ପ୍ରତିଜ୍ଞା'ର ଏକ ରୂପାନ୍ତର ବୋଲି କୁହାଯାଇ ପାରେ । ତାପରେ ପୁରାତନ ପ୍ରତିଜ୍ଞା, ଦାକ୍ଷିଣାତ୍ୟ ବୌଦ୍ଧ ତ୍ରିପିଟକ, ବେଦ ଓ ଜେଂଦାବସ୍ତାର ସ୍ଥାନ ଅଛି †।'

ଭଗବତ ଗୀତା ସମ୍ବନ୍ଧରେ ଜର୍ମାନ୍ ପଣ୍ଡିତ ହମ୍ବୋଲ୍‌ଟ ଲେଖିଥିଲେ ଏହା 'ସଂସାରର ଗଂଭୀର ଓ ଉଚ୍ଚତମ ଶିକ୍ଷା ଅଟେ ※ ।' ଏହି ସଂତବ୍ୟ

---

† *Would you say that any one sacred book is superior to all others in the world? × × × I say the New Testament. After that, I should place the Koran which, in its moral teachings, is hardly more than a later edition of the New Testamant. Then would follow, × × × the Old Testament, the Southern Budhist Tripitaka, the Veda and the Avesta.* ( ପଣ୍ଡିତ ଭଗବଦ୍ଦତ୍ତ ଙ୍କ ପ୍ରଣୀତ 'ଭାରତ୍‌ବର୍ଷକା ବୃହତ୍ ଇତିହାସ'-ଗ୍ରନ୍ଥରୁ ଉଦ୍ଧୃତ )

※ *It is perhaps the deepest and loftiest thing the world has to show.* ( do do do )

ପତ ପାଶ୍ଚାତ୍ୟ ସମାଲୋଚକମାନେ ହପ୍‌କିନ୍‌ସଙ୍କୁ ବହୁ ନିନ୍ଦା କରିଥିଲେ । ଖ୍ରୀଷ୍ଟୀୟ ଶାସ୍ତ୍ରଠାରୁ ଭିନ୍ନ ଅନ୍ୟ ଏକ ଶାସ୍ତ୍ରକୁ ଏପରି ଉଚ୍ଚ ଆସନ ଦେବା ଏମାନଙ୍କୁ ଅପ୍ରୀତିକର ବୋଧହେଲା । ଅଧ୍ୟାପକ ବେବର ଓଲଟି ଗୀତା ଓ ମହାଭାରତ ଉପରେ କ୍ରୁଦ୍ଧ ହୋଇ ପଡ଼ିଲେ । ସେ ଲେଖିଲେ— 'କୃଷ୍ଣମତର ବିଶିଷ୍ଟ ରଙ୍ଗ ଯାହାକି ସମଗ୍ର ମହାଭାରତରେ ଦେଖିବାକୁ ମିଳେ, ସେ ସଙ୍ଗରେ ଖ୍ରୀଷ୍ଟିଆନ କଥାନକ ଓ ପାଶ୍ଚାତ୍ୟ ପ୍ରଭାବ ନିର୍ଭୁଲରେ ଉପସ୍ଥିତ ରହିଛି + ।' ପାଠକେ, ଏହି ଉକ୍ତିର ସତ୍ୟାସତ୍ୟ ନିର୍ଣ୍ଣୟ କରନ୍ତୁ । ପାଂଚ ହଜାର ବର୍ଷ ତଳର ମହାଭାରତ ଉପରେ ନବୀନ ଖ୍ରୀଷ୍ଟିଆନ ମତ ଓ ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବ କେଉଁ ରୂପେ ପ୍ରତିଫଳିତ ହୋଇଛି, ତାହା ପଣ୍ଡିତପ୍ରବର ଅଧ୍ୟାପକ ବେବରଙ୍କୁ ଗୋଚର ।

ଚନ୍ଦନନଗରର ପ୍ରଧାନ ବିଚାରପତି ଫରାସୀ ପଣ୍ଡିତ ଲୁଇ ଜାକୋଲିଅଟ୍ ସେଠାରେ ଅବସ୍ଥାନ କରୁଥିବାବେଳେ 'ଭାରତରେ ବାଇବଲ୍' ( *La Bible Dans Linde* ) ନାମକ ଗ୍ରନ୍ଥ ରଚନା କରିଥିଲେ । ଏହି ଗ୍ରନ୍ଥରେ ସେ ଭାରତବର୍ଷକୁ 'ମନୁଷ୍ୟର ଜନ୍ମସ୍ଥଳୀ' ବୋଲି ସମ୍ବୋଧନ କରି ପ୍ରାଚୀନ ଶାସ୍ତ୍ରମାନଙ୍କର ଜୟଗୀତ ଗାନ କରିଥିଲେ । ଏହାର ଇଂରାଜୀ ଅନୁବାଦ ହେବାପରେ ସମଗ୍ର ୟୁରୋପରେ ଏହା

+ *The peculiar colouring of the krishna sect which prevades the whole book is noteworthy; christian legendry matter and other western influences are unmistakably present.- vide the History of Sanskrit Literature, popular edition, 1914.*

ବିରୁଦ୍ଧରେ ଅଭିଯାନ ଆରମ୍ଭ ହେଲା । ଇହୁଦୀ ଓ ଖ୍ରିଷ୍ଟିଆନ ପଣ୍ଡିତମାନେ ବୈଦିକ ଶାସ୍ତ୍ରମାନଙ୍କ ବିଜୟ ଗାନରେ ଅସନ୍ତୁଷ୍ଟ ହେଲେ । ମେକ୍ସମୂଲେର୍ ଲେଖିଲେ—'ଏହି ଲେଖକ ଭାରତୀୟ ବ୍ରାହ୍ମଣଙ୍କ ଦ୍ୱାରା ପ୍ରତାରିତ ହୋଇ ଏପରି ଲେଖିଛନ୍ତି † ।'

ଉପରେ ଯେଉଁ ଦୁଇ ତିନୋଟି ଘଟଣାର ଉଲ୍ଲେଖ କରାଯାଇଛି ସେଥିରୁ ପାଶ୍ଚାତ୍ୟ ଲେଖକମାନଙ୍କ ଧର୍ମାନ୍ଧ ଭାବ ପ୍ରତିଫଳିତ ହେଉଛି । ଏଥିହେତୁ ପ୍ରାଚୀନ ଶାସ୍ତ୍ରାର୍ଥରେ ଏମାନଙ୍କ ଉଦ୍ୟମ ପକ୍ଷପାତୀ ଓ ଅସଫଳ ହୋଇ ପଡ଼ିଛି ।

ବୈଦିକ ଶାସ୍ତ୍ରାର୍ଥରେ ଏହି ଲେଖକମାନଙ୍କ ବିଫଳତାର ଦ୍ୱିତୀୟ କାରଣ ଆଲୋଚନା କରାଯାଉ । ପ୍ରାୟ ଅଷ୍ଟାଦଶ ଶତାବ୍ଦୀ ପରେ କେତେକ ୟୁରୋପୀୟ ପଣ୍ଡିତ ବୈଦିକ ସାହିତ୍ୟ ଆଲୋଚନା ପାଇଁ ଭାରତବର୍ଷକୁ ଆସିଛନ୍ତି । ଏମାନଙ୍କ ମଧ୍ୟରୁ ପ୍ରାୟ ସମସ୍ତେ ଭାରତ ଭ୍ରମଣ କାଳରେ ବିଦେଶୀୟ ଇଂରେଜ ସରକାରଙ୍କ ଅତିଥିରେ ସକଳ ଭ୍ରମଣ ଓ ଅଧ୍ୟୟନ କାର୍ଯ୍ୟ ସମାପ୍ତ କରନ୍ତି । ଭାରତବର୍ଷର ରାଜନୈତିକ ସ୍ୱାଧୀନତା ଅପହରଣ କଲାଠାରୁ ଇଂରେଜ ସରକାରଙ୍କ ନୀତି ହୋଇଥିଲା ଯେ ଭାରତୀୟଙ୍କ ମନରେ କୌଣସି ମତେ ଆତ୍ମଗୌରବ ଓ ଆତ୍ମ ପ୍ରତିଷ୍ଠାର ସୁଯୋଗ ଦିଆଯିବ ନାହିଁ । ଏ ଦେଶର ଜନସାଧାରଣଙ୍କ ମନରେ ଥରେ ଆତ୍ମାଭିମାନର ଭାବ ଉଠିଲେ, ବିଦେଶୀୟ

---

† *The author seems to have been taken in by the Brahmins in India— Maxmuller.*

ସ୍ୱଜାତି ବିରୁଦ୍ଧରେ ଏମାନେ ଖଡ୍‌ଗହସ୍ତ ହୋଇ ଉଠିବେ । ଆମ୍ଭମାନଙ୍କୁ ଚିରଦିନ ପାଇଁ ଭୂମିସାତ୍ କରିବାକୁ ହେଲେ ଭାରତୀୟଙ୍କ ମନରେ ପାଶ୍ଚାତ୍ୟ ସଂସ୍କୃତିର ଶ୍ରେଷ୍ଠତା ଓ ଭାରତୀୟ ସଂସ୍କୃତିର ହୀନତାକୁ ପ୍ରଚାର ଓ ପ୍ରସାର କରିବା ଆବଶ୍ୟକ ।

କୌଣସି ଦେଶର ସଂସ୍କୃତିକୁ ନାଶ କରିବାକୁ ହେଲେ ସେ ଦେଶର ଶିକ୍ଷାପଦ୍ଧତିକୁ ସର୍ବାଦୌ ନାଶ କରିବାକୁ ହେବ । କୂଟନୀତିଜ୍ଞ ମେକାଲେ ଏଥିପାଇଁ ଶିକ୍ଷାର ଆଦର୍ଶ ନିର୍ଦ୍ଧାରିତ କରିଥିଲେ ଯେ ଭାରତରେ ଏପରି ଏକ ଗୋଷ୍ଠୀ ସଂଗଠନ କରିବା ଆବଶ୍ୟକ ଯାହାଙ୍କ ରକ୍ତ ଓ ରଂଗରେ ଭାରତୀୟ ପରନ୍ତୁ ରୁଚି, ସମ୍ମତି, ସଦାଚାର ଓ ବୁଦ୍ଧିରେ ଇଂରେଜ ହେବା ଆବଶ୍ୟକ * । ଏହା ଥିଲା ଇଂରେଜ ସ୍ୱାଜତ୍ୱରେ ଶାସନର ଶିକ୍ଷାନୀତି । ଭାରତ ଭ୍ରମଣରେ ଯେଉଁ ପାଶ୍ଚାତ୍ୟ ପଣ୍ଡିତମାନେ ଆସୁଥିଲେ, ସେମାନଙ୍କୁ ଏହି ନୀତି କଳାବଳ କୌଶଳରେ ବୁଝାଇ ଦିଆ-ଯାଉଥିଲା । ସ୍ୱଦେଶରୁ ଯେଉଁ ପଣ୍ଡିତମାନେ ବେଦାଦି ଶାସ୍ତ୍ରକୁ 'ଭାରତୀୟ ଶାସ୍ତ୍ର' ବୋଲି ବୁଝି ସଂକୀର୍ଣ୍ଣ ମନରେ ଆସୁଥିଲେ, ଭାରତ ଭୂମିରେ ପହଂଚିବା ମାତ୍ରେ ଇଂରେଜ ସରକାର ସେମାନଙ୍କୁ ଉପରୋକ୍ତ କୂଟନୀତିର ଶିକ୍ଷା ଦିଆଉଥିଲେ । ଫଳରେ ଏମାନଙ୍କ ପକ୍ଷରେ ନିରପେକ୍ଷ ଆଲୋଚନା କରିବା ଅସଂଭବ ହୋଇ ପଡୁଥିଲା ।

ଉପରୋକ୍ତ ଦୁଇଟି ପ୍ରଭାବରୁ ଯେଉଁମାନେ ବା କିଛି ମୁକ୍ତ ରହୁଥିଲେ, ସେମାନଙ୍କ ନିରପେକ୍ଷ ଆଲୋଚନା ଉପରେ ସମଗ୍ର ପାଶ୍ଚାତ୍ୟ

---

* *Indian in blood and colour, but English in taste, in opinion, in morals and in intellect. (Vide C. H. I Vol. VI)*

ଜଗତର କଟାକ୍ଷ ହେଉଥିଲା । ଏହାର କେତୋଟି ଉଦାହରଣ ଉପରେ ଉଦ୍ଧାର କରି ଯାଇଛି । ତୃତୀୟତଃ ଏହି ସମାଲୋଚକମାନେ ସଂସ୍କୃତ ସାହିତ୍ୟ ଓ ଭାରତୀୟ ଇତିହାସରେ ଅନଭିଜ୍ଞ ବା ଅଳ୍ପଜ୍ଞ ଥିବାରୁ ପ୍ରାଚୀନ ଶାସ୍ତ୍ରାଲୋଚନାରେ ଅସଫଳ ହେଉଥିବା ସ୍ୱାଭାବିକ । ଏମାନଙ୍କ ମଧ୍ୟରୁ ଅନେକେ ସାଧାରଣ ଲୌକିକ ସଂସ୍କୃତ ଲେଖିବାରେ ଓ ଅର୍ଥ କରିବାରେ ମହାଭ୍ରମ ସୃଷ୍ଟି କରିଛନ୍ତି । ବୈଦିକ ଶବ୍ଦମାନଙ୍କ ଯୌଗିକ ଓ ବ୍ୟାପକ ଅର୍ଥ କରିବା ସରଣୀରେ ଏମାନେ ପ୍ରାୟଶଃ ଅନଭିଜ୍ଞ ରହିଛନ୍ତି । କୌଣସି ମୂଳ ଗ୍ରନ୍ଥରୁ ଭାଷ୍ୟ ନକରି ଏମାନେ ପ୍ରଚଳିତ ଭାଷ୍ୟମାନଙ୍କର ଅନୁବାଦ ମାତ୍ର କରିଛନ୍ତି ।

ମଧ୍ୟ କାଳୀନ ଭାଷ୍ୟକାରମାନେ ବେଦାଦି ଶାସ୍ତ୍ରମାନଙ୍କର ବହୁ ବିଭ୍ରମ ଅର୍ଥ କରିଛନ୍ତି ଓ ବହୁ ଶାସ୍ତ୍ରରେ କପୋଳକଳ୍ପିତ ବାକ୍ୟମାନ ପ୍ରକ୍ଷେପ କରିଛନ୍ତି । ପାଶ୍ଚାତ୍ୟ ସମାଲୋଚକମାନେ ପ୍ରାୟଶଃ ଏହି ସବୁର ଅଧ୍ୟୟନ ଓ ଅନୁବାଦ କରିଥିବା ହେତୁ ଏମାନେ ବୈଦିକ ବାଙ୍ମୟର ଶୁଦ୍ଧରୂପ ଦର୍ଶନ କରିପାରି ନାହାନ୍ତି । ବେଦରେ ବର୍ଣ୍ଣିତ ଇନ୍ଦ୍ର, ଅଗ୍ନି, ବାୟୁ, ବିଷ୍ଣୁ ଆଦି ପରମେଶ୍ୱରଙ୍କ ବିଭିନ୍ନ ନାମକୁ ଭିନ୍ନ ୨ ଈଶ୍ୱର ବୋଲି ପ୍ରକାଶ କରି ଏମାନେ ବେଦର ସତ୍ୟ ଜ୍ଞାନକୁ ପ୍ରାଚୀନ ଭାରତୀୟଙ୍କ ଈଶ୍ୱର ବିଶ୍ୱାସର ନିକୃଷ୍ଟ ପଦ୍ଧତି ନାମରେ ଅପଳାପ କରିଛନ୍ତି । ମହା-ଭାରତ ସମର ପରେ ୨ ପ୍ରାଚୀନ ଆର୍ଯ୍ୟ ସାହିତ୍ୟ ମାନଙ୍କରେ ଯେଉଁ ବିକଳାଂଗ ସୃଷ୍ଟି ହେଲା, ସେ ସବୁକୁ ସହନଶୀଳତା ଓ ସହାନୁଭୂତି ସହ ସଂସ୍କାର କରିବା ପରିବର୍ତ୍ତେ ଏହି ସମାଲୋଚକମାନେ ସେ ସବୁରେ ଦୁରୁପଯୋଗ କରିଛନ୍ତି । ଯେଉଁମାନେ ବେଦାନୁଶୀଳନ କରିଛନ୍ତି ସେମାନେ ବ୍ରାହ୍ମଣ ଗ୍ରନ୍ଥ, ଉପନିଷଦ ଆଦିରେ ଅନଭିଜ୍ଞ ରହିଛନ୍ତି ।

ସେହିପରି ଯେଉଁମାନେ ବ୍ରାହ୍ମଣ ଗ୍ରନ୍ଥାଦିର ଅଧ୍ୟୟନ କରନ୍ତି ବେଦାଦିରେ ଅଜ୍ଞ ରହନ୍ତି । ତେଣେ ଏମାନେ ଶାସ୍ତ୍ର ସ୍ୱାଧ୍ୟାୟରେ ପାରମ୍ପରିକ ସଂସ୍କାରରୁ ଯୁଗ ଯୁଗ ଧରି ବଂଚିତ ରହନ୍ତି ଓ ଏଣେ ଅଳ୍ପ ସମୟ ଓ ସୁଯୋଗର ବ୍ୟବହାରରେ ଶାସ୍ତ୍ରାଲୋଚନା ନାମରେ ବିଭିନ୍ନ କାଳ୍ପନିକ କଥାର ବର୍ଣ୍ଣନା କରିଛନ୍ତି ।

ସଂକୀର୍ଣ୍ଣ ଜାତୀୟ ଓ ଧର୍ମୀୟ ଭାବ, ବ୍ରିଟିଶ୍ ଷଡଯନ୍ତ୍ରର କୁପ୍ରଭାବ ଓ ସର୍ବୋପରି ଅଳ୍ପ ଜ୍ଞାନ କାରଣରୁ ଯେଉଁ ପାଶ୍ଚାତ୍ୟ ସମାଲୋଚକମାନେ ପ୍ରାଚୀନ ଶାସ୍ତ୍ରମାନଙ୍କ ସମ୍ବନ୍ଧେ ପକ୍ଷପାତୀ ଆଲୋଚନା କରନ୍ତି, ସେମାନଙ୍କ ମନ୍ତବ୍ୟ ଗ୍ରହଣୀୟ ନୁହେ । ମନୁଷ୍ୟୋତ୍ପତ୍ତି ବେଳର ପ୍ରକାଶିତ ଆଦି-ଜ୍ଞାନ ବେଦକୁ ମେକସ୍‌ମୁଲରେ ଖ୍ରୀ: ପୂ ୧୨୦୦; ବିଲ୍‌ସନ୍, ଗ୍ରିଫିଥ ସ୍ନୋଡ଼ର ଆଦି ଖ୍ରୀ:ପୂ ୨୦୦୦ ବର୍ଷ; ବିଣ୍ଟର୍‌ନିଟଜ୍ ଖ୍ରୀ.ପୂ ୨୫୦୦ ବର୍ଷ, ଜେକୋବ ଖ୍ରୀ.ପୂ ୩୦୦୦ ବର୍ଷର ବୋଲି ଗ୍ରହଣ କରିଛନ୍ତି । ପାଶ୍ଚାତ୍ୟ ସମାଲୋଚକମାନଙ୍କ ଏହି ସବୁ ମତକୁ ସମୀକ୍ଷା କରିବା ଲାଗି କୌଣସି ଆବଶ୍ୟକତା ନାହିଁ ଯେହେତୁ ଏମାନଙ୍କ ମଧ୍ୟରୁ କେହିହେଲେ ବେଦର କାଳ ନିର୍ଣ୍ଣୟ କରିବା ବେଳେ କୌଣସି କାରଣ ଦର୍ଶାଇ ନାହାନ୍ତି । କାରଣ ନଦର୍ଶାଇ ବି କେତେକେ ନିଜ ନିଜ ମତକୁ ବାରଂବାର ପରିବର୍ତ୍ତନ କରିଛନ୍ତି । ଏମାନଙ୍କ ଏକମାତ୍ର ବିଶ୍ୱାସଯେ ଏଡ୍ରମ୍‌ଙ୍କ ବେଳେ ସଂସାରର ସୃଷ୍ଟି । ସଂସାରର ସମସ୍ତ ଘଟଣା ଏଡ୍ରମ୍‌ଙ୍କ ପରବର୍ତ୍ତୀ । ଏଣୁ ବେଦ ମଧ୍ୟ ଏକ ପରବର୍ତ୍ତୀ ରଚନା ।

ଚନ୍ଦ୍ରଗୁପ୍ତଙ୍କ ରାଜସଭାରେ ଥିବା ଗ୍ରୀକ୍‌ଦୂତ ମେଗାସ୍ଥିନିସ୍‌ଙ୍କ ଲେଖାରୁ ପ୍ଲିନି ଲେଖିଛନ୍ତି—'ବେଚସ୍‌ଙ୍କ ଠାରୁ ଆଲେକଜାଣ୍ଡର

ପର୍ଯ୍ୟନ୍ତ ୧୫୪ ରାଜା ୬୪୫୧ ବର୍ଷ ୩ ମାସ ରାଜତ୍ୱ କରିଥିଲେ ✻ ।' ଅଲେକ୍‌ଜାଣ୍ଡରଙ୍କ ମୃତ୍ୟୁ ଖ୍ରୀଃପୂ ୩୨୩ରେ । ସୁତରାଂ ୮୭୩୨ ବର୍ଷର (୬୪୫୧+୩୨୩+୧୯୫୮) ଗ୍ରୀକ ରାଜ-ପରଂପରାର ଇତିହାସ ଉପଲବ୍ଧ । ଏପରି ସ୍ଥଳେ ୭୪୦୦ ବର୍ଷ ତଳେ ସଂସାରର ସୃଷ୍ଟି ଓ ତିନି ଚାରି ହଜାର ବର୍ଷ ତଳେ ବେଦର ରଚନା ବୋଲି କହିବା ହାସ୍ୟାସ୍ପଦ ଅଟେ ।

ଯୁଧିଷ୍ଠିର ମହାରାଜାଙ୍କ ଠାରୁ ଶେଷ ହିନ୍ଦୁ ରାଜା ଯଶପାଲଙ୍କ ପର୍ଯ୍ୟନ୍ତ ୧୨୪ ରାଜାଙ୍କ ୪୧୫୭ ବର୍ଷ ୯ ମାସ ୧୪ ଦିନର ରାଜବଂଶ ପରଂପରା ଶୃଙ୍ଖଳ ରୂପରେ ବିଦ୍ୟମାନ ‡ । ଯଶପାଲଙ୍କ ପରେ ମୁସଲମାନ ରାଜତ୍ୱ ଆରଂଭ ହେଲା । ଏହି ରୂପେ ଆଜି ଠାରୁ ଏହି ଚତୁର୍ଯୁଗୀର କଳି-ଦ୍ୱାପର ସନ୍ଧିକାଳ ମହାଭାରତ ସମରକୁ ପାଂଚହଜାରରୁ ଊର୍ଦ୍ଧ୍ୱ ବର୍ଷରେ ରଖା ଯାଇପାରେ + । ମହାଭାରତରେ ତତ୍ପୂର୍ବକାଳୀନ ରାମାୟଣ

---

✻ *From the days of father Bacchus to Alexander the Great, their kings are reconed at 154 whose reigns extend over 6451 years and 3 months.—Pliny.*

‡ ସ୍ୱାମୀ ଦୟାନନ୍ଦ କୃତ ସତ୍ୟାର୍ଥ ପ୍ରକାଶ, ଏକାଦଶ ସମୁଲ୍ଲାସ ଦ୍ରଷ୍ଟବ୍ୟ ।

× କଳି ସଂବତ ଓ ବିକ୍ରମ ସଂବତ ମଧ୍ୟରେ ଅନ୍ତର ୩୦୪୪ ବର୍ଷ । ସୁତରାଂ ଏହି ବର୍ଷ ବିକ୍ରମ ସଂବତ ୨୦୧୫ ରେ କଳିସଂବତ ଅଟେ ୫୦୫୯ ।

କଥା ଅଛେ । ରାମାୟଣ ଏହି ଚତୁର୍ଯୁଗୀର ତ୍ରେତା ଯୁଗ ଶେଷରେ ଅର୍ଥାତ୍ ରାମାୟଣ ଓ ମହାଭାରତ ମଧ୍ୟରେ ପ୍ରାୟ ୯ ଲକ୍ଷ ବର୍ଷର ବ୍ୟବଧାନ । ରାମାୟଣରେ ସୃଷ୍ଟ୍ୟାଦ୍ୟର ବେଦଜ୍ଞାନ କଥା ବାରଂବାର ବର୍ଣ୍ଣିତ ହୋଇଛି । ଏପରି ସ୍ଥଳେ ବେଦର କାଳକୁ ତିନି, ଚାରି ହଜାର ବର୍ଷ ତଳର ବୋଲି ନିରୂପଣ କରିବା ସତ୍ୟର ଅପଳାପ ଛଡ଼ା ଆଉ କଣ ହୋଇପାରେ ?

## ସୃଷ୍ଟି କାଳ ସମ୍ବନ୍ଧେ ଆଧୁନିକ ବିଜ୍ଞାନ

ସାଂପ୍ରଦାୟିକ ବିଶ୍ୱାସ ବଶତଃ ଯେଉଁ ପାଶ୍ଚାତ୍ୟ ଭୂମିର ଲୋକେ ସୃଷ୍ଟିକାଳକୁ ଛଅ, ସାତ ହଜାର ବର୍ଷ ମଧ୍ୟରେ ସୀମାବଦ୍ଧ କରି ବସିଥିଲେ, ସୁଭାଗ୍ୟକୁ ସେହି ପାଶ୍ଚାତ୍ୟ ଦେଶମାନଙ୍କରେ ବିଗତ ଦୁଇ ଶହ ବର୍ଷ ମଧ୍ୟରେ ଭୌତିକ ବିଜ୍ଞାନର ବିଶେଷ ଅଭ୍ୟୁଦୟ ହୋଇ ଯାଇଛି । ବିଜ୍ଞାନର ଗବେଷଣା ଫଳରେ ସଂସାରର ଆୟୁ ଉପରୋକ୍ତ ସାଂପ୍ରଦାୟିକ କାଳ-ଠାରୁ ବହୁ ପଛକୁ ହଟି ଯାଇଛି ।

ବିଭିନ୍ନ ପ୍ରକାର ପରୀକ୍ଷଣ ଦ୍ୱାରା ବୈଜ୍ଞାନିକମାନେ ସୃଷ୍ଟି ଉତ୍ପତ୍ତିର କାଳକୁ ନିର୍ଣ୍ଣୟ କରିବା ପାଇଁ ଉଦ୍ୟମ କରିଛନ୍ତି । ସୂର୍ଯ୍ୟ ତାପକୁ ଗବେଷଣା କରି କେହି ୨ ସୃଷ୍ଟିର ଆୟୁକୁ ଦେଢ କୋଟିରୁ ଦୁଇ କୋଟି ବର୍ଷ ମଧ୍ୟରେ ରଖିଛନ୍ତି । ଭୂତାପକୁ ପରୀକ୍ଷଣ କରି ଆଉ କେତେକେ ଏହାକୁ ଛଅ କୋଟି ବର୍ଷ ପର୍ଯ୍ୟନ୍ତ ନେଇଛନ୍ତି । ସମୁଦ୍ର ଜଳର କ୍ଷାରତା ଉପରେ ଗବେଷଣା କରିବା ଦ୍ୱାରା ଏହି କାଳ ଦଶ କୋଟି ବର୍ଷ ଯାଏଁ ଯାଏ । ଭୂଗର୍ଭ ଶାସ୍ତ୍ରୀମାନଙ୍କ ଅନୁଶୀଳନ ଫଳରେ ସଂସାରର ଆୟୁ

ଦଶ କୋଟିରୁ ପନ୍ଦର କୋଟି ବର୍ଷ ଯାଏଁ ଗତ କରେ । ତେଜସ୍କ୍ରିୟ ପଦାର୍ଥ (*Radio active*) ର ମାଧ୍ୟମରେ ଏହି ଅବଧିକୁ ସତଚରିଶ କୋଟି ବୋଲି ବୈଜ୍ଞାନିକମାନେ ନିର୍ଣ୍ଣୟ କରିଛନ୍ତି । 'ପୃଥିବୀର ଆୟୁ' ନାମକ ଏକ ଗ୍ରନ୍ଥରେ ଆର୍ଥର ହୋମ୍ସ ନାମକ ଜଣେ ବୈଜ୍ଞାନିକ ଏସବୁର ଆଲୋଚନା କରିଛନ୍ତି ।

ଉପରୋକ୍ତ ଗବେଷଣାମାନଙ୍କ ସଂପର୍କରେ ପୂର୍ବୋକ୍ତ ବୈଜ୍ଞାନିକ ପ୍ରକାଶ କରିଛନ୍ତି—'ପୃଥିବୀର ଆୟୁ ସମ୍ବନ୍ଧରେ ଯେଉଁ ସବୁ ମତମାନଙ୍କର ପ୍ରଚଳନ ଅଛି, ତନ୍ମଧ୍ୟରୁ ଭୂଗର୍ଭ ଓ ତେଜସ୍କ୍ରିୟ ପଦାର୍ଥ ସମ୍ବନ୍ଧୀୟ ଗବେଷଣା ବିଭିନ୍ନ ସମାଲୋଚନାର ସମ୍ମୁଖୀନ ହୋଇ ପାରିଛନ୍ତି । ଅନ୍ୟ ସକଳ ମତ କୌଣସି ନା କୌଣସି ମୌଳିକ ଦୋଷ ଉପରେ ଅଧିଷ୍ଠିତ ଥିବାରୁ ସେମାନଙ୍କୁ ବିନା ଆଲୋଚନାରେ ଅଗ୍ରାହ୍ୟ କରି ଯାଇପାରେ †!'

ଏହି ସବୁ ଭିନ୍ନ ଭିନ୍ନ ମତମାନଙ୍କୁ ଅଧ୍ୟୟନ କରିବା ପରେ କେତୋଟି ପରିଣାମରେ ପହଂଚିବାକୁ ହୁଏ । ପ୍ରଥମତଃ ପୃଥିବୀ ଉପୃତ୍ତିର

---

† *Of the various methods which have been devised to solve the problem of the earth's age, only two, the geological and the radio-active, have successfully withstood the force of destructive criticism. The other arguments may be dismissed without further discussion, as in every case their cogency has been vitiated by the detection of a fundamental error.— The Age of the Earth By Arthur Holmes.*

କାଳ ଗୋଟିଏ ନିର୍ଦ୍ଦିଷ୍ଟ ହୋଇଥିବା ସ୍ଥଳେ ଏପରି ବିଭିନ୍ନ ସମୟମାନ ପ୍ରକାଶ କରିବା ଅର୍ଥ, ଏମାନଙ୍କରୁ କେଉଁଟି ହେଲେ ଠିକ୍ ନୁହେ । ଦ୍ୱିତୀୟତଃ ବିଭିନ୍ନ ଗବେଷଣାର ପନ୍ଥାକୁ ଆଲୋଚନା କଲେ ଜଣାଯାଏଯେ ଯେଉଁ ପନ୍ଥା ଯେତେ ଅଧିକ ସଂଭାବନା ଓ ଦୋଷମୁକ୍ତ, ତାହା ପୃଥିବୀର ଆୟୁ ସମ୍ବନ୍ଧେ ସେତେ ଉଣା ସମୟ ପ୍ରକାଶ କରେ । ଉଦାହରଣ ସ୍ୱରୂପ ସୂର୍ଯ୍ୟତାପ ସମ୍ବନ୍ଧୀ ଗବେଷଣା ଭୂତାପ ଠାରୁ, ଭୂତାପ ସମ୍ବନ୍ଧୀ ଗବେଷଣା ସମୁଦ୍ର ଜଳର କ୍ଷାରତା ଠାରୁ, କ୍ଷାରତା ଉପରେ ଗବେଷଣା ଭୂଶାସ୍ତ୍ର ଠାରୁ ଅଧିକ ବିଶ୍ୱାସ ଯୋଗ୍ୟ ନୁହେ ।

ଆର୍ଥର୍ ହୋମ୍‌ସଙ୍କ ମତ ଏହିପେ ଭୂଗର୍ଭ ଶାସ୍ତ୍ର ଓ ତେଜସ୍କ୍ରିୟ ପଦାର୍ଥ ଉପରେ ଆଲୋଚନା ପୂର୍ଣ୍ଣ ରୂପେ ଠିକ୍ ନହେଲେ ବି ଅନ୍ୟ ସମସ୍ତ ଗବେଷଣା ଠାରୁ ଅଧିକ ପ୍ରମାଣପୂର୍ଣ୍ଣ । ପରନ୍ତୁ ଭୂଗର୍ଭର ସର୍ବ ନିମ୍ନ ସ୍ତରର ସ୍ଥଳ ନିର୍ଦ୍ଧାରଣ, ବାର୍ଷିକ ସ୍ତର ପରିବର୍ତ୍ତନର ଅନିଶ୍ଚିତତା, ଭୂଗର୍ଭର ବିଭିନ୍ନ ସ୍ତରର ବିଭିନ୍ନ ଗୁଣ ଆଦି ଅସ୍ଥିର ବସ୍ତୁ ଉପରେ ନିର୍ଭର କରି କୌଣସି ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ପହଂଚିବା କଷ୍ଟସାଧ୍ୟ । ଏଣୁ ଏହି ଲେଖକ ଲେଖିଛନ୍ତି—'ଭୂଗର୍ଭ କାଳକୁ ନିଶ୍ଚିତ ରୂପରେ ଗ୍ରହଣ କରିବା ସନ୍ଦେହଶୂନ୍ୟ ନୁହେ * ।' ତେଜସ୍କ୍ରିୟ ଦ୍ରବ୍ୟ ଉପରେ ଯେଉଁ ଗବେଷଣା କରି ପୃଥିବୀର ଆୟୁକୁ ସତୋତରଶ କୋଟି ବର୍ଷ ବୋଲି କୁହା ଯାଉଛି, ସେ ପନ୍ଥା ପୁରାତନ । ବର୍ତ୍ତମାନ ଅନ୍ତଃରଶ୍ମୀୟ କ୍ଷେପଣାସ୍ତ୍ର ଓ ବିଭିନ୍ନ ମରଣାସ୍ତ୍ରର ଆବିଷ୍କାର ପାଇଁ ତେଜସ୍କ୍ରିୟ ଶକ୍ତିର ଗବେଷଣା

---

* *The geological period is difficult to establish with certainty—The Age of the Earth By Arthur Holmes.*

କରାଯାଉଛି । ଆଧୁନିକ ଉପାୟରେ ଏହି ଶକ୍ତିର ସାହାଯ୍ୟରେ ଅନୁଶୀଳନ କଲେ ପୃଥିବୀର ଆୟୁ ଅତ୍ୟନ୍ତ ପୁରାତନ ବୋଲି ପ୍ରମାଣିତ ହୋଇପାରେ ।

ପୃଥିବୀର ଆୟୁର ଦୀର୍ଘତା ସଙ୍ଗେ ସଙ୍ଗେ ମନୁଷ୍ୟୋତ୍ପତ୍ତି କାଳର ପ୍ରାଚୀନତା ବି ବଢ଼ିଯିବା ସୁନିଶ୍ଚିତ । ହର୍ମସ୍ ବର୍ଥ ଇତିହାସର ଲେଖକ ଏହି କାଳକୁ ଏକ ଲକ୍ଷ ବର୍ଷ ବୋଲି ସ୍ୱୀକାର କରନ୍ତି । ବହୁ ବିକାଶବାଦୀ ମଧ୍ୟ ବିକାଶ ତଥ୍ୟ ଅନୁସାରେ ଏହାକୁ ଦଶଲକ୍ଷ ବର୍ଷରୁ ଊର୍ଦ୍ଧ୍ୱ ବୋଲି ସ୍ୱୀକାର କରନ୍ତି । ଏହି କେତେଦିନ ତଳେ ପ୍ରକାଶ ପାଇଛି ଯେ ସ୍ମିଥ୍ ସୋନିଏନ୍ ଇନ୍ଷ୍ଟିଚ୍ୟୁସନ୍‌ର ବୈଜ୍ଞାନିକମାନେ କୋଲୋରାଡୋ ଦେଶରେ ସୋହଳ କୋଟି ବର୍ଷ ତଳେ ଉଦ୍ଭିଦ ଥିବା କଥା ଆବିଷ୍କାର କରନ୍ତି । ଦଶ ବାର କୋଟି ବର୍ଷ ତଳେ ଅନ୍ୟାନ୍ୟ ପ୍ରାଣୀମାନଙ୍କ ଜୀବନ ଥିବା କଥା ଏମାନେ ପ୍ରମାଣ ପାଇଛନ୍ତି ।

ବୈଜ୍ଞାନିକ ଗବେଷଣାର ବିଭିନ୍ନ ଫଳକୁ ଏକତ୍ରିତ କରି ପରୀକ୍ଷା କଲେ ଦେଖାଯିବ ଯେ ଗବେଷଣାର ବୃଦ୍ଧି ସଙ୍ଗେ ସଙ୍ଗେ ପୃଥିବୀ ଓ ମନୁଷ୍ୟ ଉତ୍ପତ୍ତିର କାଳ ଧୀରେ ଧୀରେ ବଢ଼ି ଚାଲିଛି । ବିଜ୍ଞାନର ଗବେଷଣା ଅସମ୍ପୂର୍ଣ୍ଣ ହୋଇଥିବାରୁ, ଏହି କାଳ ଅଧିକ ଦୂରକୁ ଯାଇ ସର୍ବଶେଷରେ ବୈଦିକ କାଳମାନଙ୍କ ସହ ମିଶିଯିବା ସମ୍ଭବପର । ଏଣୁ ମନୁଷ୍ୟର ସର୍ବପ୍ରଥମ ଜ୍ଞାନ ରୂପେ ବେଦର କାଳ ପାଶ୍ଚାତ୍ୟ ସାମ୍ପ୍ରଦାୟିକ କାଳର ବହୁ ପଛକୁ ଚାଲିଯାଏ ।

ପାଶ୍ଚାତ୍ୟ ଦାର୍ଶନିକ ଓ ସମାଲୋଚକମାନଙ୍କ ଗୋଟିଏ କୌଶଳକୁ ଏଠାରେ ଖୋଲିଦେବା ଉଚିତ ମନେହୁଏ । ଏମାନେ ଖ୍ରୀଷ୍ଟିଆନ ଧର୍ମ-ଯାଜକମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ବେଳେ ବେଳେ ସୃଷ୍ଟ୍ୟୁତ୍ପତ୍ତି ସମ୍ବନ୍ଧରେ ସଙ୍କୀର୍ଣ୍ଣ ସାମ୍ପ୍ରଦାୟିକ ମତକୁ ମାନି ନିଅନ୍ତି । ପୁଣି ବେଳେ ବେଳେ ଆଧୁନିକ ବିଜ୍ଞାନର ପ୍ରମାଣପୁଷ୍ଟ ଦୀର୍ଘାତଦୀର୍ଘ ପ୍ରାଚୀନ କାଳଗୁଡ଼ିକୁ ସ୍ୱୀକାର କରନ୍ତି । ମୋଟ ଉପରେ ଏମାନେ ସୁବିଧାବାଦୀ, 'ଏ ଘର ପିଉସୀ, ସେ ଘର ମାଉସୀ' ନୀତି ଖେଳନ୍ତି । ଏଭଳି ଜଣେ ଦାର୍ଶନିକ ଓ କଳିଙ୍ଗ ପୁରସ୍କାର ପ୍ରାପ୍ତ ଅଧ୍ୟାପକ ହକ୍‌ସଲେ ତାହାଙ୍କ ଭାରତ ଭ୍ରମଣ କାଳରେ ପାଟନା ବିଶ୍ୱବିଦ୍ୟାଳୟରେ ବକ୍ତୃତା ଦେଇଥିଲେ । ବକ୍ତୃତାର ବିଷୟ ଥିଲା 'ମନୁଷ୍ୟ ଚିନ୍ତାଧାରାର କ୍ରମ ବିକାଶ †' । ବେଦକୁ ମନୁଷ୍ୟ ଚିନ୍ତାଧାରାର ପ୍ରଥମ ଉତ୍ସ ବୋଲି ଆମ୍ଭେମାନେ ଗ୍ରହଣ କରିବା ସ୍ଥଳେ ଓ ପାଶ୍ଚାତ୍ୟ ପଣ୍ଡିତମାନେ ଏହାକୁ ଅନ୍ୟୂନରେ 'ମନୁଷ୍ୟର ପ୍ରଥମ ଗ୍ରନ୍ଥ' ବୋଲି ସ୍ୱୀକାର କରିଥିବା ସ୍ଥଳେ—ମନୁଷ୍ୟ ଚିନ୍ତାଧାରାର କ୍ରମ ବିକାଶ ପରି ଏକ ବ୍ୟାପକ ବିଷୟର ଆଲୋଚନା କରିବାବେଳେ ଉପରୋକ୍ତ ଅଧ୍ୟାପକ ମହାଶୟ ବେଦର ନାମ ମାତ୍ର ଉଚ୍ଚାରଣ କରି ନଥିଲେ । ଏ ସମ୍ବନ୍ଧରେ ପ୍ରଶ୍ନ ହେବାରୁ ସେ କେବଳ ସ୍ମିତହାସ୍ୟ କରିଥିଲେ । ଏହା ପଛରେ ଅକ୍ଷମତା ଥିଲା କି ଅଜ୍ଞତା ଥିଲା ତାହା ତାହାଙ୍କୁହିଁ ଗୋଚର । ପରନ୍ତୁ ସଭା ଶେଷରେ ସେ କେତେକଙ୍କ ଆଗରେ କୁଆଡ଼େ ପ୍ରକାଶ କରିଥିଲେ ଯେ ସେ ବେଦ ପଢ଼ି ନାହାନ୍ତି । ଏପରି ସ୍ଥଳେ ସେ ଏଭଳି ବ୍ୟାପକ ବିଷୟ ସମ୍ବନ୍ଧେ ଆଲୋଚନା କରିବା ଉଚିତ କି ନୁହେଁ ତାହା ପାଠକେ ବିଚାର କରନ୍ତୁ ।

---

† *Evolution of Human Thought*

## କାଳ ଓ ଯୁଗ ସମ୍ବନ୍ଧେ ବେଦର ମନ୍ତବ୍ୟ

ନଗର କାଳ ସମ୍ବନ୍ଧରେ ବେଦରେ ଯେଉଁ ସ୍ପଷ୍ଟୋକ୍ତି ରହିଛି, ତାହା ଦ୍ୱିତୀୟ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି । କାଳ ଓ ଯୁଗ ସମ୍ବନ୍ଧରେ ବେଦର ସକଳ ସୂଚନା ପ୍ରତ୍ୟେକ କଳ୍ପ ବା ସୃଷ୍ଟି ପାଇଁ ପ୍ରଯୁଜ୍ୟ । ପ୍ରତ୍ୟେକ କଳ୍ପରେ ସୃଷ୍ଟିର ନିୟମ ସମାନ, ଯେହେତୁ ସ୍ରଷ୍ଟା ଅଭ୍ରାନ୍ତ ନିୟାମକ ଅଟନ୍ତି । ସୃଷ୍ଟି ଓ ପ୍ରଳୟର ପଦ୍ଧତି ସନାତନ ସତ୍ୟ । ଏଥିରେ କଦାପି ବ୍ୟତିକ୍ରମ ନଥାଏ । ଋକ୍ ବେଦରେ ଅଛି—

ସୂର୍ଯ୍ୟାଚନ୍ଦ୍ରମସୌ ଧାତା ଯଥାପୂର୍ବମକଳ୍ପୟତ୍ ।
ଦିବଂଚ ପୃଥିବୀ ଚାନ୍ତରିକ୍ଷ ମଥୋସ୍ୱଃ । (ଋକ୍ ୧୦, ୧୯, ୩)

ଅର୍ଥାତ୍—ଅନ୍ତରୀକ୍ଷ, ସୂର୍ଯ୍ୟ, ଚନ୍ଦ୍ର, ପ୍ରକାଶମାନ ଓ ପ୍ରକାଶରହିତ ଲୋକ 'ଯଥାପୂର୍ବଂ' ବା ପୂର୍ବକଳ୍ପ ପରି ସୃଷ୍ଟ ହୁଏ ।

ପୁଣି ଅଛି—'ଯା ଔଷଧୀଃ ପୂର୍ବଜାତା ଦେବେଭ୍ୟସ୍ତ୍ରିଯୁଗଂ ପୁରା'-(ଋକ୍ ୧୦, ୯୭, ୧) ଅର୍ଥାତ୍ ଯେଉଁ ଔଷଧି ବା ବନସ୍ପତି ଭୂତ, ଭବିଷ୍ୟତ୍-ମାନ ଓ ଭବିଷ୍ୟତ୍ ତିନି କାଳରେ ପଣ୍ଡିତଙ୍କ ଦ୍ୱାରା ଜ୍ଞାତ ହୁଏ । ଏଥିରୁ ଜଣାଯାଏ ଯେ ବନସ୍ପତି ଜଗତରେ ତିନି କାଳରେ ବ୍ୟତିକ୍ରମକାର ଘଟେ ନାହିଁ । ପ୍ରତ୍ୟେକ ବୃକ୍ଷ ଓ ଶସ୍ୟ ସେମାନଙ୍କ ସ୍ୱରୂପ ଓ ଗୁଣଗତ ସ୍ୱାତନ୍ତ୍ର୍ୟ ରଖନ୍ତି । ଅବଶ୍ୟ କାଳ ଓ ସ୍ଥଳ ବିଶେଷରେ ସେମାନଙ୍କ ମଧ୍ୟରେ ସାଧାରଣ ସ୍ୱାଦୁ ଆଦି କିଛିଟା ପାର୍ଥକ୍ୟ ଘଟିପାରେ ।

ପୂର୍ବୋକ୍ତ ଶ୍ଳୋକରେ ସ୍ପଷ୍ଟ କୁହାଯାଇଛି — 'ଅଭବତ୍ ପୁନଃ' । ସୃଷ୍ଟି-ଚକ୍ର (Cycle) ସଦୈବ ପୁନଃ ପୁନଃ ଚଳେ । ଅଘମର୍ଷଣ ମନ୍ତ୍ରରେ 'ଯଥାପୂର୍ବମକଳ୍ପୟତ୍' ରେ ଏହି ଚକ୍ରକୁ ପ୍ରକାଶ କରାଯାଇଛି । ଏହି ଚକ୍ରକୁ ଅନୁଭବ କରି ପାଶ୍ଚାତ୍ୟ ପଣ୍ଡିତ ଷ୍ଟ୍ରେଞ୍ଜ୍ ଲେଖିଛନ୍ତି — 'ପ୍ରଳୟ ଓ ସୃଷ୍ଟି ଚକ୍ର ସମ୍ବନ୍ଧୀ ହିନ୍ଦୁ ସିଦ୍ଧାନ୍ତ ଯାହାକୁ ଆମ୍ଭେମାନେ କାଳ୍ପନିକ ବୋଲି ମନେକରି ଆସୁଥିଲେ, ଯୁକ୍ତିର ଆଧାର ଉପରେ ପ୍ରତିଷ୍ଠିତ ବୋଲି ସିଦ୍ଧ ହୁଏ । ନିଃସନ୍ଦେହରେ ଏହି ସିଦ୍ଧାନ୍ତ ସହ ବର୍ତ୍ତମାନକାଳୀନ ୟୁରୋପର ଜ୍ଞାନ ଏକମତ ହୋଇଯାଏ । ସେହି ଜ୍ଞାନ ହେଉଛି ଯେ କାଳାନ୍ତରରେ ପୃଥିବୀ ହିମଯୁଗ ପ୍ରଭାବରୁ ମୃତରୂପ ବନ୍ଧ୍ୟା ହୋଇ ପଡ଼େ ଓ କାଳାନ୍ତରରେ ଉଷ୍ଣ କଟିବନ୍ଧର ପ୍ରଭାବରୁ ଶସ୍ୟଶ୍ୟାମା ହୋଇ ଉଠେ* ।'

---

* *The Hindu doctrine of the recurrent dissolutions and creations of the earth which we are accustomed to attribute to mere fancy, may prove to be based upon solid foundations. Certainly it consists very remarkably with the phenomenon of which, only in modern times, we have become conscious in Europe, namely that the earth has at periods received the death stroke of glacial sterility and at others has revived and been clothed with the exuberant products of tropical fertility. (The Development of Creation on the Earth By T. L. Strange.)*

ବିଜ୍ଞାନର 'ଦର୍ଶନ' ଓ 'ଶ୍ରବଣ' ସାହାଯ୍ୟରେ ଯେଉଁ ଜ୍ଞାନ ଉନ୍ନତି କାଳାନ୍ତରରେ ଅପୂର୍ଣ୍ଣ ରୂପରେ ଉପଲବ୍ଧ ହୁଏ, ତାହା ଆଦି ଅତୀନ୍ଦ୍ରିୟ ଯୋଗୀଙ୍କର ଜ୍ଞାନ ବେଦରୁ 'ନିଦିଧ୍ୟାସନ' ଦ୍ୱାରା ପୂର୍ଣ୍ଣ ରୂପେ ଅନୁଭୂତ ହୋଇ ପାରେ । ଆଧୁନିକ ବିଜ୍ଞାନର ପରୀକ୍ଷଣ ଦ୍ୱାରା ଧୀରେ ଧୀରେ ସମସ୍ତ ବୈଦିକ ସିଦ୍ଧାନ୍ତକୁ ଗ୍ରହଣ କରି ନେଉଥିବାରୁ ବୈଜ୍ଞାନିକ ପାର୍ଶ୍ୱବର୍ତ୍ତୀ ଚିତ୍ତ ବେଦ ଆଡ଼େ ଶୀଘ୍ରାତିଶୀଘ୍ର ଆକୃଷ୍ଟ ହେବେ ବୋଲି ଆଶା କରାଯାଏ । ମନ୍ୱନ୍ତରର ସନ୍ଧି ବା କଳ୍ପାନ୍ତରେ ପ୍ରଳୟକୁ ଭୂତାତ୍ତ୍ୱିକ ହିମଯୁଗ *(Glacial Period)* ବୋଲି ନାମିତ କରନ୍ତି । ସୃଷ୍ଟି ପ୍ରଳୟର ଅବିରାମ ଗତିକୁ ସେ ଚକ୍ର *(Cycle)* ରୂପରେ ଅନୁଭବ କରନ୍ତି ।

ସୃଷ୍ଟି ବିଜ୍ଞାନର ସିଦ୍ଧାନ୍ତକୁ ଆଲଙ୍କାରିକ ରୂପରେ କୁହାଯାଇଛି—

କସ୍ମିନ୍ ସ୍କମ୍ଭଃ ପ୍ରବିଶ୍ୟ ଭୂତଂ କସ୍ମିନ୍ ଭବିଷ୍ୟଦନ୍ୱାଶୟେଽସ୍ୟ ।
ଏକଂ ଯଦଙ୍ଗମକୃଣୋତ୍ ସହସ୍ରଧା କସ୍ମିନ୍ ସ୍କମ୍ଭଃ ପ୍ରବିଶ୍ୟ ତତ୍ର ॥
(ଅଥର୍ବ ୧୦, ୭, ୯)

ଅର୍ଥାତ୍ ଭୂତ-ଭବିଷ୍ୟ କାଳରୂପୀ ଗୃହ ଏକ ସହସ୍ର ସ୍ତମ୍ଭ ଉପରେ ପ୍ରତିଷ୍ଠିତ । ଏଠାରେ ଆଲଙ୍କାରିକ ଭାଷାରେ କଳ୍ପର ଏକ ହଜାର ଚତୁର୍ଯୁଗୀର ବର୍ଣ୍ଣନା କରାଯାଇଛି । କଳ୍ପର ବର୍ଷ ସଂଖ୍ୟା ଅଥର୍ବ ବେଦର ଅନ୍ୟ ଏକ ମନ୍ତ୍ରରେ ସୂଚିତ ହୋଇଛି—

ଶତଂତେ ଅଯୁତଂ ହାୟନାନ୍ ଦ୍ୱେ ଯୁଗେ ତ୍ରୀଣି ଚତ୍ୱାରି କୃଣ୍ମଃ—
(ଅଥର୍ବ ୮, ୨, ୨୧) ଅର୍ଥାତ୍ ଏକଶତ ଅୟୁତ ପର୍ବରେ ଦୁଇ, ତିନି, ଚାରି

ସଂଖ୍ୟା ଯୋଗ କଲେ କଳ୍ପକାଳର ବର୍ଷ ହୁଏ । ଏକ ଅଯୁତ ଦଶ ହଜାର, ଏକ ଶତ ଅଯୁତ ଦଶ ଲକ୍ଷ । ଏହାର ସଂକେତ ସାତ ଶୂନ୍ୟ । 'ଅଙ୍କାନାଂ ବାମତୋ ଗତିଃ' ନ୍ୟାୟରେ ଏଥିରେ ଦୁଇ, ତିନି ଓ ଚାରି ଯୋଗ କଲେ ହୁଏ ୪୩୨୦୦୦୦୦୦୦ । ଏହା ଗୋଟିଏ କଳ୍ପର ବର୍ଷ ସଂଖ୍ୟା । ପୂର୍ବ ମଂତ୍ର ଅନୁସାରେ ଏକ କଳ୍ପରେ ଏକ ହଜାର ଚତୁର୍ଯୁଗୀ ହୁଏ । ଚତୁର୍ଯୁଗୀ ଚାରି ଯୁଗର ସମାହାର । ଯଜୁର୍ବେଦ (୩୦, ୧୮) ରେ ଏହି ଚାରି ଯୁଗର ନାମ ଅଛି—

କୃତାୟାଦିନବଦର୍ଶଂ ତ୍ରେତାୟୈ କଳ୍ପିନଂ ଦ୍ୱାପରାୟାଧିକଳ୍ପିନମ୍ ଅସ୍କନ୍ଦାୟ ସଭାସ୍ଥାଣୁମ୍ ।

ଏହାର ଅର୍ଥ ଚାରି ଯୁଗର ନାମ କୃତ (ସତ୍ୟ), ତ୍ରେତା, ଦ୍ୱାପର ଓ ଅସ୍କନ୍ଦ (କଳି) । ମନୁଷ୍ୟୋପୃତ୍ତଦେଲେ ଆଦାଙ୍କାନର ବିଭିନ୍ନ ସଙ୍କେତ ମଧ୍ୟରେ ଏହା ଅନ୍ୟତମ । ପ୍ରତି କଳ୍ପରେ ଯୁଗ ବିଭାଗ ସମାନ । ଏଠାରେ ମନେ ରଖିବା ଉଚିତ ଯେ ବୈଦିକ ଯୁଗବିଭାଗ ସହ ଧର୍ମାଧର୍ମର ସମ୍ପର୍କ ନାହିଁ । ବୈଦିକ ସିଦ୍ଧାନ୍ତାନୁଯାୟୀ କର୍ମଫଳ ତଥ୍ୟ ଅଭ୍ରାନ୍ତ ହୋଇଥିବାରୁ ଜୀବ ଯେଭଳି କର୍ମ କରେ ସେଭଳି ଫଳ ପାଏ । ଜୀବ ଉପରେ ସତ୍ୟ, କଳି ଆଦି ନିର୍ଜୀବ ଯୁଗମାନଙ୍କର ପ୍ରଭାବ ସମ୍ଭବ ନୁହେ । ତ୍ରେତା ଯୁଗରେ ରାମ ଓ ରାବଣ ଉଭୟେ ଜନ୍ମିଥିଲେ, ସୀତା ଓ ସୂର୍ପଣଖା ଉଭୟେ ଜନ୍ମିଥିଲେ । ଦ୍ୱାପରରେ ଯୁଧିଷ୍ଠିର ଓ ଦୁର୍ଯୋଧନ ଉଭୟେ ଜନ୍ମିଥିଲେ । ବର୍ତ୍ତମାନ କଳିଯୁଗରେ ମନୁଷ୍ୟ ବିଭିନ୍ନ ଦୁରାଚାରରେ ପ୍ରବେଶ କରି ନିଜ ଦୋଷରୁ କୁଫଳ ଭୋଗୁଛି । ଏହାକୁ କଳିଯୁଗର କୁପ୍ରଭାବ ବୋଲି ଭାବିବା ଅମୂଳନୁଷ୍ଠି ଛଡ଼ା ଆଉ କିଛି ନୁହେ ।

ଯେ ଯାହା ହେଉ ବୈଦିକ ପଦ୍ଧତିର ଯୁଗ  ଗଣନା ଓ ଦୀର୍ଘବର୍ଷ ବିଶିଷ୍ଟ ଯୁଗମାନଙ୍କୁ ଆଧୁନିକ ବୈଜ୍ଞାନିକମାନେ ସ୍ୱୀକାର କରି ଆସିଲେଣି।

ଏହି ସମ୍ବନ୍ଧରେ ଉପରୋକ୍ତ ପାଶ୍ଚାତ୍ୟ ପଣ୍ଡିତ ଷ୍ଟ୍ରେଞ୍ଜ୍ ଲେଖିଛନ୍ତି— 'ପ୍ରାଚୀନ ଆର୍ଯ୍ୟଗଣ କେଉଁ ଉପାୟରୁ ଦୀର୍ଘଯୁଗ ବିଶିଷ୍ଟ ସୃଷ୍ଟି ଓ ପ୍ରଳୟ ଚକ୍ରର ଉପଲବ୍ଧି କରିଥିଲେ, ତାହା ଅବଧାରଣ କରିବା କଷ୍ଟସାଧ୍ୟ ପରନ୍ତୁ ଆମ୍ଭେମାନେ ବର୍ତ୍ତମାନ କାଳରେ ସେହି ଅନୁରୂପ ତଥ୍ୟର ଅଭ୍ରାନ୍ତ ସଙ୍କେତ ଅନୁଭବ କରୁଛୁଁ*।'

ଷ୍ଟ୍ରେଞ୍ଜ୍ ଓ ଅନ୍ୟାନ୍ୟ ପାଶ୍ଚାତ୍ୟ ପଣ୍ଡିତଗଣ ବେଦର ବିଭିନ୍ନ ବିସ୍ତୀର୍ଣ୍ଣ ସିଦ୍ଧାନ୍ତକୁ ଅନୁଭବ କରୁଥିଲେ ମଧ୍ୟ, ସେମାନେ ବେଦ ସହ ପ୍ରତ୍ୟକ୍ଷ ପରିଚିତ ହୋଇପାରି ନଥିବାରୁ ନିଜ ନିଜ କ୍ଷେତ୍ରରେ ବହୁଦୂର ଅଗ୍ରସର ହୋଇ ପାରି ନାହାନ୍ତି। ଭୌତିକ ବିଜ୍ଞାନରେ ଅଗ୍ରସର ହେବା ବେଳକୁ ଆତ୍ମିକ ବିଜ୍ଞାନର ବିସ୍ମରଣ କରିବା ହେତୁ ବିଜ୍ଞାନର ସଦୁପଯୋଗ ହୋଇ ପାରୁନାହିଁ। ପ୍ରକୃତରେ ପାଶ୍ଚାତ୍ୟ ଦେଶମାନଙ୍କରେ ବେଦର ସକଳ ସୂତ୍ର ସ୍ପଷ୍ଟ ହୋଇ ନଥିଲେ ସଂସାରର ଏହି ସାମୟିକ ବିକଟ ପରିସ୍ଥିତି ଉପସ୍ଥିତ ହୋଇ ନଥାନ୍ତା।

---

* *The ancient Aryans, drawing from what sources of information open to them, it is difficult to judge, have pictured to themselves constant dissolutions and recreations, occupying lengthened ages and we in modern times, discern the unmistakable traces of the like passage of events. (The Development of Creation on the Earth By T. L. Strange)*

# ଜ୍ୟୋତିଷ ଓ ଯୁଗ ଗଣନା

ବେଦରେ ଯୁଗ ସମ୍ବନ୍ଧୀୟ ଯେଉଁ ସଙ୍କେତ ରହିଛି, ଜ୍ୟୋତିଷକାରମାନେ ତାହାର ବିସ୍ତୀର୍ଣ୍ଣ ଆଲୋଚନା ଓ ଜ୍ଞାନ କରିଛନ୍ତି । ଗଣିତ ସାହାଯ୍ୟରେ କେତେକ ସ୍ଥିର କରିଛନ୍ତି ଯେ କଳ୍ପାରମ୍ଭବେଳେ ସୂର୍ଯ୍ୟାଦି ସପ୍ତଗ୍ରହ ଏକାଠି ରହନ୍ତି । ଅନ୍ୟ କେତେକଙ୍କ ମତରେ କଳିଯୁଗ ଆରମ୍ଭରେ ଏ ସମସ୍ତ ଗ୍ରହ ଏକାଠି ରହନ୍ତି । ଦୁଇ କଳି କାଳରେ ଏକ ଦ୍ୱାପର, ତିନି କଳିରେ ଏକ ତ୍ରେତା ଓ ଚାରିରେ ଏକ ସତ୍ୟଯୁଗ ହୁଏ । ଅର୍ଥାତ୍ ଏକ ମହାଯୁଗର ସମୟ ଦଶ କଳିଯୁଗ ସହ ସମାନ । ପ୍ରତ୍ୟେକ କଳ୍ପ ସତ୍ୟଯୁଗରେ ଆରମ୍ଭ ହୁଏ ବା ମହାଯୁଗର ଦଶ କଳିଯୁଗରୁ ପ୍ରଥମ କଳିଯୁଗରେ ଆରମ୍ଭ ହୁଏ । ଏହି ଦୃଷ୍ଟିରୁ କଳ୍ପାରମ୍ଭ ସହ କଳିଯୁଗ ଆରମ୍ଭ ସମାନ । ତେଣୁ ଗ୍ରହଯୋଗ ସମ୍ବନ୍ଧ ଜ୍ୟୋତିଷକାରମାନେ ଯେଉଁ ଦୁଇଟି ମତ ପ୍ରକାଶ କରନ୍ତି, ସେ ଦୁଇହେଁ ଏକ ଓ ସମାନ । ଲେଖିବାର ତାତ୍ପର୍ଯ୍ୟ ଏହିଯେ, ଜ୍ୟୋତିଷକାରମାନେ ବେଦୋକ୍ତ ଯୁଗ ସୂଚନାକୁ ଗଣିତ ଶାସ୍ତ୍ର ଦ୍ୱାରା ଶୁଦ୍ଧ ଗଣନା କରି ଆସିଛନ୍ତି ।

ପ୍ରସିଦ୍ଧ ୟୁରୋପୀୟ ଜ୍ୟୋତିଷୀ ବେଲି ଏହି ସବୁ ଗଣନାର ପରୀକ୍ଷା କରି ଏଗୁଡ଼ିକୁ ଶୁଦ୍ଧ, ସ୍ପଷ୍ଟ ଓ ପ୍ରକୃତ ବୋଲି ସ୍ୱୀକାର କରିଛନ୍ତି । କଳିଯୁଗ ଆରମ୍ଭରେ ସପ୍ତଗ୍ରହ ଯୋଗର ତଥ୍ୟକୁ ପାଶ୍ଚାତ୍ୟ ଜ୍ୟୋତିଷୀଗଣ ଗ୍ରହଣ କରିବା ସଙ୍ଗେ ସଙ୍ଗେ ସ୍ୱୀକାର କରିଛନ୍ତି ଯେ—'ବ୍ରାହ୍ମଣମାନଙ୍କର ଗଣନା ଆମ୍ଭମାନଙ୍କର ଜ୍ୟୋତିଷ ସମ୍ବନ୍ଧୀୟ ଅଙ୍କପତ୍ର ସହ ଏପରି ପୂର୍ଣ୍ଣ ରୂପେ ଏକମତ ହୋଇଯାଏ ଯେ, ସମ୍ଭବତଃ ପ୍ରତ୍ୟକ୍ଷ ଦର୍ଶନ

ଦ୍ୱାରା ସେମାନେ ଏହି ଜ୍ଞାନ ପାଇଛନ୍ତି† । ' ଏହାର ତାତ୍ପର୍ଯ୍ୟ ଏହି ଯେ କଳ୍ପ ଓ ଯୁଗ ସମ୍ବନ୍ଧୀୟ ଧାର୍ଦ୍ଧ ବର୍ତ୍ତମାନଙ୍କର ଗଣନା ଶୁଦ୍ଧ ଓ ସତ୍ୟ । ପୁନଶ୍ଚ ଏହି ସବୁ ଗଣନା ସୃଷ୍ଟି ଆରଂଭରୁ ପ୍ରତ୍ୟକ୍ଷ ଦର୍ଶନ ଦ୍ୱାରା ପ୍ରାପ୍ତ ହେବାଭଳି ଅନୁଭୂତ ହୁଏ ।

ବେଦରେ କଳ୍ପ ଓ ଯୁଗ ସମ୍ବନ୍ଧୀୟ ଯେଉଁ ସଂକେତ ରହିଛି, ସେ ସବୁକୁ ମନୁସ୍ମୃତି, ସୂର୍ଯ୍ୟସିଦ୍ଧାନ୍ତ ଆଦି ପୁରାତନ ଗ୍ରନ୍ଥମାନଙ୍କରେ ପ୍ରକାଶ କରି ଦିଆଯାଇଛି । ଏହି ରୂପେ ସୂର୍ଯ୍ୟସିଦ୍ଧାନ୍ତରେ ଅଛି—

ତଦ୍ ଦ୍ୱାଦଶସହସ୍ରାଣି ଚତୁର୍ଯୁଗମୁଦାହୃତମ୍ ।
ସୂର୍ଯ୍ୟାବ୍ଦ ସଂଖ୍ୟୟା ଦ୍ୱିତ୍ରି ସାଗରୈରଯୁତାହତୈଃ ॥ (୧, ୧୫)

ସଂଧ୍ୟାସଂଧ୍ୟାଂଶ ସହିତଂ ବିଜ୍ଞେୟଂ ତଚ୍ଚତୁର୍ଯୁଗମ୍ ।
କୃତାଦୀନାଂ ବ୍ୟବସ୍ଥେୟଂ ଧର୍ମପାଦବ୍ୟବସ୍ଥୟା ॥ (୧, ୧୬)

ଯୁଗସ୍ୟ ଦଶମୋଭାଗଶ୍ଚତୁସ୍ତ୍ରିଦ୍ୱ୍ୟେକସଙ୍ଗୁଣଃ ।
କ୍ରମାତ୍କୃତଯୁଗାଦୀନାଂ ଷଷ୍ଠାଂଶଃ ସନ୍ଧ୍ୟୟୋଃ ସ୍ୱକଃ ॥ (୧୭)

---

† *The calculation of Brahmins is so exactly confirmea by our own astronomical tables that nothing but actual observation could have given so correspondent a result.* ( *Theogony of the Hindus By Count Bjornstgerna* )

ଯୁଗାନାଂ ସପ୍ତତିଃ ସୈକା ମନ୍ୱନ୍ତରମିହୋଚ୍ୟତେ ।
କୃତାବ୍ଦ ସଂଖ୍ୟା ତସ୍ୟାନ୍ତେ ସନ୍ଧି ପ୍ରୋକ୍ତୋ ଜଲପ୍ଲବଃ ॥ (୧୮)

ସସନ୍ଧୟସ୍ତେ ମନବଃ କଲ୍ପେ ଜ୍ଞେୟାଶ୍ଚତୁର୍ଦ୍ଦଶ ।
କୃତ ପ୍ରମାଣଃ କଲ୍ପାଦୌ ସନ୍ଧିଃ ପଂଚଦଶଃ ସ୍ମୃତଃ ॥ (୧୯)

ଇତ୍ଥଂ ଯୁଗସହସ୍ରେଣ ଭୂତସଂହାରକାରକଃ ।
କଲ୍ପୋବ୍ରାହ୍ମମହଃ ପ୍ରୋକ୍ତଂ ଶର୍ବରୀ ତସ୍ୟ ତାବତୀ ॥ (୨୦)

ପରମାୟୁଃ ଶତଂ ତସ୍ୟ ତୟାହୋରାତ୍ରସଂଖ୍ୟୟା ।
ଆୟୁଷୋଽର୍ଦ୍ଧମିତଂ ତସ୍ୟ ଶେଷ କଲ୍ପୋଽୟମାଦିମଃ ॥ (୨୧)

କଲ୍ପାଦସ୍ମାଚ୍ଚ ମନବଃ ଷଡ୍ବ୍ୟତୀତାଃ ସସନ୍ଧୟଃ ।
ବୈବସ୍ୱତସ୍ୟ ଚ ମନୋର୍ଯୁଗାନାଂ ତ୍ରିଘନୋ ଗତଃ ॥ (୨୨)

ଅଷ୍ଟାବିଂଶାଦ୍ୟୁଗାଦସ୍ମାଦ୍ୟାତମେତତ୍କୃତଂ ଯୁଗମ୍ ।
ଅତଃ କାଲଂ ପ୍ରସଂଖ୍ୟାୟ ସଂଖ୍ୟାମେକତ୍ର ପିଣ୍ଡୟେତ୍ ॥ (୨୩)

**ଅର୍ଥ** — ପୂର୍ବୋକ୍ତ ବାର ହଜାର ଦିବ୍ୟ ବର୍ଷରେ ଏକ ଚତୁର୍ଯୁଗୀ ହୁଏ, ଯାହା ୪୩୨୦୦୦୦ ସୌରବର୍ଷ ସହ ସମାନ (୧୫)। ଉକ୍ତ ଚତୁର୍ଯୁଗୀୟ ପ୍ରମାଣ ସନ୍ଧ୍ୟା ଓ ସନ୍ଧ୍ୟାଂଶ ସହ ଅଛି। ଚତୁର୍ଯୁଗୀର ସତ୍ୟ, ତ୍ରେତା, ଦ୍ୱାପର ଓ କଳି କାଳକ୍ରମରେ ଚାରି, ତିନି, ଦୁଇ ଓ ଏକ ଅଂଶ (୧୬)।

ମହାଯୁଗ ବା ଚତୁର୍ଯୁଗୀର ଦଶମ ଭାଗକୁ ଚାରି, ତିନି, ଦୁଇ ଓ ଏକରେ ଗୁଣନ କଲେ ଯଥାକ୍ରମେ ସତ୍ୟ, ତ୍ରେତା, ଦ୍ୱାପର ଓ କଳିର ବର୍ଷ ପରିମାଣ ହୁଏ । ପ୍ରତ୍ୟେକ ଯୁଗର ଏକ ଷଷ୍ଠାଂଶ ସନ୍ଧ୍ୟା ଓ ସନ୍ଧ୍ୟାଂଶରେ ବ୍ୟତୀତ ହୁଏ । ଏହି ଷଷ୍ଠାଂଶର ଦୁଇ ଭାଗରୁ ଗୋଟିଏ ଭାଗ ଆଦିସନ୍ଧ୍ୟା ଓ ଅନ୍ୟ ଭାଗ ଅନ୍ତସନ୍ଧ୍ୟା ( ୧୭ ) । ପୂର୍ବୋକ୍ତ ଏକସ୍ତ୍ରୋର ଚତୁ-ର୍ଯୁଗୀରେ ଏକ ମନ୍ୱନ୍ତର ହୁଏ । ମନ୍ୱନ୍ତର ଅନ୍ତରେ ସତ୍ୟଯୁଗ ସମାନ ( ବା ୪୮୦୦ ଦିବ୍ୟବର୍ଷ ବା ୧୭୨୮୦୦୦ ସୌରବର୍ଷ ) ପରିମାଣ ବିଶିଷ୍ଟ ସନ୍ଧି ହୁଏ । ଏହି ସନ୍ଧି ସମୟରେ ସମସ୍ତ ପୃଥିବୀ ଜଳାପ୍ଳୁତ ହୋଇଯାଏ ( ୧୮ ) । ଚଉଦ ମନ୍ୱନ୍ତରରେ ଏକ କଳ୍ପ ହୁଏ । ଏଥିରେ ଚଉଦ ଅନ୍ତସନ୍ଧି ଓ ଏକ ଆଦିସନ୍ଧି ରହେ । ଅର୍ଥାତ୍ ଗୋଟିଏ କଳ୍ପରେ ଚଉଦ ମନ୍ୱନ୍ତର ଓ ପନ୍ଦର ସନ୍ଧି ହୁଏ ( ୧୯ ) । ପୂର୍ବୋକ୍ତ ରୀତିରେ ଏକ ସହସ୍ର ଚତୁର୍ଯୁଗୀରେ ଏକ କଳ୍ପ ହୁଏ । ଏହା ଅନ୍ତରେ ସମସ୍ତ ପ୍ରାଣୀ ନାଶ ଯାନ୍ତି । ଏକ କଳ୍ପରେ ଏକ ବ୍ରାହ୍ମଦିନ ହୁଏ, ଏହାପରେ ସେହି ପରିମାଣ ବିଶିଷ୍ଟ ବ୍ରାହ୍ମରାତ୍ରି ହୁଏ । ବ୍ରାହ୍ମଦିନ ଓ ବ୍ରାହ୍ମରାତ୍ରିରେ ବ୍ରାହ୍ମଅହୋରାତ୍ର ହୁଏ ( ୨୦ ) । ସୃଷ୍ଟିର ଆୟୁ ଶହେ ବ୍ରାହ୍ମବର୍ଷ । ଏହି ଆୟୁର ଅର୍ଦ୍ଧାଂଶ ଗତ ହେଲାଣି ଓ ଅବଶିଷ୍ଟ ଅର୍ଦ୍ଧାଂଶର କଳ୍ପରୁ ଏହି କଳ୍ପ ପ୍ରଥମ । ଅର୍ଥାତ୍ ଶହେ ବର୍ଷରୁ ପଚାଶ ଅତୀତ ହୋଇ ଏକାବନ ଚାଲିଛି ( ୨୧ ) । ବର୍ତ୍ତମାନ କଳ୍ପର ଛଅ ମନ୍ୱନ୍ତର ସନ୍ଧି ସହ ଅତୀତ ହେଲାଣି । ସପ୍ତମ ବୈବସ୍ୱତ ମନୁର ଏକସ୍ତ୍ରୋର ଚତୁର୍ଯୁଗୀରୁ ସତାଇଶ ଚତୁର୍ଯୁଗୀ ସଂପୂର୍ଣ୍ଣ ଗତ ହେଲାଣି ( ୨୨ ) । ଅଠାଇଶ ଚତୁ-ର୍ଯୁଗୀର ସତ୍ୟଯୁଗ ପୂର୍ଣ୍ଣ ଗତ ହେଲାଣି । କାଳ ଗଣନା କରିବାକୁ ହେଲେ ଆରମ୍ଭରୁ ବର୍ତ୍ତମାନ ପର୍ଯ୍ୟନ୍ତ ବର୍ଷକୁ ଯୋଗ କରିବାକୁ ହେବ ( ୨୩ ) ।

ଗୋଟିଏ କଳ୍ପରେ ଚଉଦ ମନ୍ୱନ୍ତର ଓ ପନ୍ଦର ସନ୍ଧି ମିଶି ଏକ ସହସ୍ର ମହାଯୁଗ ବା ଚତୁର୍ଯୁଗୀ ହୁଏ । ମହାଯୁଗର ଏକ ଦଶମାଂଶର ପରିମାଣ ୪୩୨୦୦୦ ସୌର ବର୍ଷ । ଏହାର ଦୁଇଗୁଣ ଦ୍ୱାପର ୮୬୪୦୦୦ ସୌରବର୍ଷ । ତ୍ରେତା ତିନିଗୁଣ ୧୨୯୬୦୦୦ ଓ ସତ୍ୟ ଚତୁର୍ଗୁଣ ବା ୧୭୨୮୦୦୦ ସୌରବର୍ଷ । ଏ ସବୁକୁ ଯୋଗ କଲେ ଏକ ମହାଯୁଗର ବର୍ଷ ସଂଖ୍ୟା ୪୩୨୦୦୦୦ ସୌରବର୍ଷ । ଏକ କଳ୍ପରେ ଏକହଜାର ମହାଯୁଗ । ସୁତରାଂ ମହାଯୁଗର ବର୍ଷ ସଂଖ୍ୟାକୁ ଏକହଜାରରେ ଗୁଣନ କରି ତାହା ସହ ପନ୍ଦର ସନ୍ଧିର କାଳ ( ଏକ ସନ୍ଧି ଏକ ସତ୍ୟ ଯୁଗର କାଳ ସହ ସମାନ ) ଯୋଗ କଲେ ଚାରିଶତ ବତିଶ କୋଟି ବର୍ଷ ହୁଏ । ଏହା ଏକ କଳ୍ପ ବା ବ୍ରହ୍ମଦିନର ସମୟ । ଠିକ୍ ଏତିକି ସମୟ ଏକ ବ୍ରହ୍ମରାତ୍ରି ବା ପ୍ରଳୟର କାଳ ।

ସୂର୍ଯ୍ୟସିଦ୍ଧାନ୍ତର ପ୍ରଥମ ଅଧ୍ୟାୟରେ ଉପରୋକ୍ତ ଶ୍ଳୋକ ମାନଙ୍କ ମଧ୍ୟରୁ ୨୧, ୨୨ ଓ ୨୩ ପାଠକଲେ ଅନୁମିତ ହୁଏ ଯେ, ଏହି ଗ୍ରନ୍ଥର ରଚନା କାଳ ପ୍ରଚଳିତ ଚତୁର୍ଯୁଗୀର ସତ୍ୟଯୁଗ ଶେଷରେ ବା ତ୍ରେତା ଆରଂଭରେ । ଏହି ରୂପେ ଏହା ପ୍ରାୟ ଏକୋଇଶ ଲକ୍ଷରୁ ଊର୍ଦ୍ଧ୍ୱ ବର୍ଷର ପୁରାତନ ଗ୍ରନ୍ଥ । କଳ୍ପର ଦୀର୍ଘକାଳ ଦୃଷ୍ଟିରୁ ଏହା ଅବଶ୍ୟ ନୂତନ । ପରଂତୁ ମନେ ରଖିବା ଉଚିତ ଯେ, ଏକୋଇଶ ଲକ୍ଷ ବର୍ଷର ଏହି ନୂତନ ସୂର୍ଯ୍ୟସିଦ୍ଧାନ୍ତ ପୂର୍ବରୁ ଅନ୍ୟ ଏକ ସୂର୍ଯ୍ୟସିଦ୍ଧାନ୍ତର ଅସ୍ତିତ୍ୱ ଥିଲା । ପଣ୍ଡିତମାନେ ଏହା ନିର୍ଦ୍ଧାର୍ଯ୍ୟରୂପେ ସ୍ଥିର କରିଛନ୍ତି । ଋକ ବେଦର

ସହସ୍ରାଧିକ ଶାଖାମାନଙ୍କ ନାମ ବିଭିନ୍ନ ପୁରାତନ ଶାସ୍ତ୍ରମାନଙ୍କରେ ଉଲ୍ଲେଖ ଥିଲେ ବି ବର୍ତ୍ତମାନ ତନ୍ମଧ୍ୟରୁ ଅଳ୍ପ କେତୋଟି ମାତ୍ର ପ୍ରାପ୍ତ ହେଉଛି । ସୃଷ୍ଟିର ଦୀର୍ଘକାଳ ମଧ୍ୟରେ ବହୁ ଗ୍ରନ୍ଥ ଏପରି ଲୁପ୍ତ ହୋଇ ଯାଇଛି । ସୂର୍ଯ୍ୟସିଦ୍ଧାନ୍ତର ଉପରୋକ୍ତ ଶ୍ଳୋକମାନଙ୍କ ସନାତନ ତତ୍ତ୍ୱ ଗୁଡିକ ପୁରାତନ ସୂର୍ଯ୍ୟସିଦ୍ଧାନ୍ତରୁ ଗୃହୀତ । ଏହାପରି ସମସ୍ତ ସନାତନ ତତ୍ତ୍ୱ ଗୁଡିକ ସର୍ବାଦୌ ବେଦରୁ ଗୃହୀତ । ସୁତରାଂ ଯୁଗ ସମ୍ବନ୍ଧୀୟ ଉପରୋକ୍ତ ସମସ୍ତ ତଥ୍ୟ ସତ୍ୟ ଅଟେ ।

## ମହର୍ଷି ମନୁଙ୍କ ସାକ୍ଷ୍ୟ

ଛାନ୍ଦୋଗ୍ୟ ବ୍ରାହ୍ମଣରେ ଲେଖା ଅଛି — 'ମହର୍ଷି ମନୁ ଯାହାକିଛି କହି ଯାଇଛନ୍ତି ତାହା ଔଷଧିମାନଙ୍କର ଔଷଧି † ।' ସୁତରାଂ ଯୁଗ ସମ୍ବନ୍ଧରେ ମହର୍ଷିମନୁଙ୍କ ମନ୍ତବ୍ୟ ଆଲୋଚନୀୟ—

ଚତ୍ୱାର୍ଯ୍ୟାହୁଃ ସହସ୍ରାଣି ବର୍ଷାଣାଂ ତୁ କୃତଂ ଯୁଗମ୍ ।
ତସ୍ୟ ତାବଚ୍ଛତୀ ସନ୍ଧ୍ୟା ସନ୍ଧ୍ୟାଂଶଶ୍ଚ ତଥାବିଧଃ ।। (ମନୁ ୧,୬୯)

ଇତରେଷୁ ସସନ୍ଧ୍ୟେଷୁ ସସନ୍ଧ୍ୟାଂଶେଷୁ ଚ ତ୍ରିଷୁ ।
ଏକାପାୟେନ ବର୍ତ୍ତନ୍ତେ ସହସ୍ରାଣି ଶତାନି ଚ ।। (୭୦)

---

† ଯଦ୍ୱୈ କିଂଚନ ମନୁରବଦତ୍ ତଦ୍ଭେଷଜଂ ଭେଷଜତାୟାଃ ।
(ଛାନ୍ଦୋଗ୍ୟ ବ୍ରାହ୍ମଣ)

ଯଦେତତ୍ପ୍ରକ୍ରିସଂଖ୍ୟାତମାଦାବେବ ଚତୁର୍ଯୁଗମ୍ ।
ଏତଦ୍ଦ୍ୱାଦଶସାହସ୍ରଂ ଦେବାନାଂ ଯୁଗମୁଚ୍ୟତେ ॥ ( ୭୧ )

ଦୈବିକାନାଂ ଯୁଗାନାଂ ତୁ ସହସ୍ର ପରିସଂଖ୍ୟୟା ।
ବ୍ରାହ୍ମମେକମହର୍ଜ୍ଞେୟଂ ତାବତୀଂ ରାତ୍ରିମେବ ଚ ॥ ( ୭୨ )

ଅର୍ଥ—ଚାରି ହଜାର ଦୈବବର୍ଷକୁ (ଏକ ଦୈବବର୍ଷ ମନୁଷ୍ୟଙ୍କ ୩୬୦ ବର୍ଷ ସହ ସମାନ) ସତ୍ୟଯୁଗ କହନ୍ତି । ଏହାର ଆଦିସଂଧିର ସମୟ ଚାରିଶତ ଦୈବବର୍ଷ ଓ ଅନ୍ତସଂଧି (ସଂଧ୍ୟାଂଶ)ର ସମୟ ଚାରିଶତ ଦୈବବର୍ଷ । ଏହିରୂପେ କୃତଯୁଗର ମୋଟ କାଳ ୪୮୦୦ ଦୈବବର୍ଷ ୭୯ ) ।

ଅନ୍ୟ ତିନି ଯା ତ୍ରେତା, ଦ୍ୱାପର ଓ କଳିର ସମୟ ଏବଂ ସେ ସବୁର ସଂଧ୍ୟା ଓ ସଂଧ୍ୟାଂଶର ସମୟ ଯଥାକ୍ରମେ ସହସ୍ର ଓ ଶତ ସ୍ଥାନରେ ଏକ ଏକ ସଂଖ୍ୟା ନ୍ୟୂନ ହୋଇ ଗଲେ । ଅର୍ଥାତ୍ ସେମାନଙ୍କର ସମୟ ଯଥାକ୍ରମେ ୩୬୦୦, ୨୪୦୦ ଓ ୧୨୦୦ ଦୈବବର୍ଷ ଅଟେ (୭୦) ।

ଏହି ସବୁ ଦୈବବର୍ଷକୁ ୩୬୦ ରେ ଗୁଣନ କଲେ ମନୁଷ୍ୟଙ୍କ ସୌରବର୍ଷର ସଂଖ୍ୟା ଅସେ ଯାହାକି ପୂର୍ବୋକ୍ତ ସମୟ ସଙ୍ଗେ ସମାନ ହୋଇଯାଏ । ବାର ହଜାର ଦୈବବର୍ଷରେ (୪୮୦୦ + ୩୬୦୦ + ୨୪୦୦ + ୧୨୦୦) ଏକ ଦୈବଯୁଗ ହୁଏ (୭୧) ।

ଦୈବ ସହସ୍ର ଯୁଗରେ ଏକ ବ୍ରାହ୍ମ ଦିନ ଓ ଅନ୍ୟ ଏକ ସହସ୍ର ଯୁଗରେ ବ୍ରାହ୍ମ ରାତ୍ରି ହୁଏ । ଅର୍ଥାତ୍ ୧୨୦୦୦ × ୧୦୦୦ × ୩୬୦ = ୪୩୨ କୋଟି ସୌରବର୍ଷରେ ଏକ କଳ୍ପ ହୁଏ ( ୭୨ ) ।

## ପ୍ରଳୟର ମୀମାଂସା

ମନୁସ୍ମୃତିରେ ଅଛି--

ତଦ୍ୱୈ ଯୁଗ ସହସ୍ରାନ୍ତଂ ବ୍ରାହ୍ମଂ ପୁଣ୍ୟ ମହର୍ବିଦୁଃ ।
ରାତ୍ରିଂ ଚ ତାବତୀମେବ ତେଽହୋରାତ୍ର ବିଦୋଜନାଃ ॥ (ମନୁ ୧,୭୩)

ତସ୍ୟ ସୋଽହର୍ନିଶସ୍ୟାନ୍ତେ ପ୍ରସୁପ୍ତଃ ପ୍ରତି ବୁଦ୍ଧ୍ୟତେ ।
ପ୍ରତି ବୁଦ୍ଧଶ୍ଚ ସୃଜତି ମନଃ ସଦ ସଦାତ୍ମକମ୍ ॥ ( ୭୪ )

ଅର୍ଥ— ସହସ୍ର ଦୈବଯୁଗର ଅନ୍ତରେ ବ୍ରାହ୍ମଦିନ ସମାପ୍ତ ହୁଏ । ଠିକ ସେତିକି ସମୟରେ ବ୍ରାହ୍ମରାତ୍ରି ହୁଏ ( ୭୩ ) । ପୂର୍ବୋକ୍ତ ଅହୋରାତ୍ରର ଅନ୍ତରେ ସେ ଶୟନରୁ ଓ ଜାଗ୍ରତ ହୁଏ । ଜାଗ୍ରତ ହୋଇ ସଂକଳ୍ପ ବିକଳ୍ପାତ୍ମକ ମନ ଉତ୍ପନ୍ନ କରେ ( ୭୪ ) ।

ଏହିଠାରେ ସୃଷ୍ଟି ପ୍ରଳୟର ମୀମାଂସା କରାଯାଇଛି । ସୂର୍ଯ୍ୟସିଦ୍ଧାନ୍ତରେ ଯେଉଁ ପ୍ରଳୟ କାଳକୁ 'ଅହ୍ନ' ଓ 'କଳ୍ପଭବଃ' ରୂପେ କୁହାଯାଇଛି, ମନୁସ୍ମୃତିରେ ତାହାକୁ 'ରାତ୍ରି' ଓ 'ପ୍ରସୁପ୍ତଃ' ବୋଲି ବର୍ଣ୍ଣନା କରାଯାଇଛି । ବେଦରେ 'ତମ' ଓ 'ରାତ୍ରି' ଶବ୍ଦରେ ଏହାର ସୂଚନା ଦିଆଯାଇଛି ।

ଆଧୁନିକ ଭୂତାତ୍ତ୍ୱିକମାନେ ଏହାକୁ ହିମଯୁଗ ( *Glacial age* ) ବୋଲି ନାମିତ କରୁଛନ୍ତି ।

ଶର୍ବରୀ ଯେପରି ଦିବସର ଉପଯୋଗୀ ଓ ପରିପୂରକ ଅଙ୍ଗ, ସେହିପରି ପ୍ରଳୟ ମଧ୍ୟ ସୃଷ୍ଟିର ସହାୟକ ଅଙ୍ଗ । କୌଣସି ଜମିରେ ପ୍ରତ୍ୟେକ ବର୍ଷ ଧାରାବାହିକ ରୂପେ ଶସ୍ୟାଦି ଆମଦାନୀ କଲେ, ତାହାର ଉତ୍ପାଦିକା ଶକ୍ତି କମିଯାଏ । ତେଣୁ ମଝିରେ ୨ ଜମିକୁ ଉପଯୋଗ କରାଯାଏ ନାହିଁ । ତଦ୍ୱାରା ତାହାର ଉତ୍ପାଦିକା ଶକ୍ତି ବୃଦ୍ଧି ପାଏ । ପ୍ରଳୟ ଏହିରୂପେ ଭୌତିକ ଜଗତରେ ଆଗାମୀ ନୂତନ ସୃଷ୍ଟି ପାଇଁ ସାହାଯ୍ୟ କରେ । ନୂତନ ଜୀବନ ପାଇଁ ଏତେବେଳେ ଶକ୍ତି ସଂଚିତ ହୁଏ । ସାଂଖ୍ୟକାର ସୁଷୁପ୍ତିକୁ 'ସମାଧି'ର ଉପମା ଦେଇଛନ୍ତି । ଅର୍ଥାତ୍ ପ୍ରଳୟ ବା ସୁଷୁପ୍ତିରେ ଜୀବ ଆନନ୍ଦ ଉପଲବ୍ଧି କରେ । ଅବଶ୍ୟ ତମୋଗୁଣାଚ୍ଛନ୍ନ ଥିବା ହେତୁ ସେ ଏହି ଆନନ୍ଦକୁ ସମାଧିସ୍ଥ ଆନନ୍ଦ ବା ନିତ୍ୟାନନ୍ଦ ରୂପେ ଭୋଗ କରିପାରେ ନାହିଁ । ତଥାପି ଏତେବେଳେ ତାହାର ବନ୍ଧୁ ଦୁଷ୍ଟ ସଂସ୍କାର କଟୁ କଟୁ କ୍ଷୀଣ ହୋଇଯାଏ । ଏହିରୂପେ ଜୀବ ଜଗତ ପାଇଁ ପ୍ରଳୟ ନିର୍ଦ୍ଧାରିତ ସମୟରେ ଆବଶ୍ୟକ ହେଉଥିବା ପରି, ଜଡ଼ ଜଗତର ସୂକ୍ଷ୍ମାଣୁ (*Electron* ) ମାନଙ୍କ ଅବିରାମ ଗତିରେ ଶାନ୍ତି ପ୍ରଦାନ ପାଇଁ ଆବଶ୍ୟକ ହୁଏ ।

ପ୍ରଳୟର ସମୟ ପୂରଣ ହେବା ପରେ ସୃଷ୍ଟିର ଆରମ୍ଭ ହୁଏ । ପରମାଣୁ ମାନଙ୍କର ପରସ୍ପର ସଂଘାତ ଘଟେ । ଏଥିରୁ ଦ୍ୱୈଣୁକ, ତ୍ରୈଣୁକ ଆଦି ଅଣୁସମଷ୍ଟି (*Molecule*) ସୃଷ୍ଟି ହୁଅନ୍ତି । ବିଭିନ୍ନ ମନୁରେ

ନାକ୍ଷତ୍ରିକ ଜଗତ, ପୃଥିବୀ, ପୃଥିବୀରୁ ଚନ୍ଦ୍ର, ପୃଥିବୀରୁ ସ୍ଥଳଭାଗ, ବନସ୍ପତି, ପଶୁ ପକ୍ଷୀ ଆଦି ଜୀବ ଓ ପରିଶେଷରେ ମନୁଷ୍ୟ ସୃଷ୍ଟ ହୁଏ । ମନୁଷ୍ୟର ଏହି ଅଯୌନିଥିଜା ସୃଷ୍ଟି ବେଳେ ତାଠାରେ ଜ୍ଞାନ ଓ ବାଣୀ ପ୍ରଦତ୍ତ ହୁଏ । ବସନ୍ତାଦି ଋତୁ ନିଜ ନିଜ ସମୟ ଆସିଗଲେ ଯେଉଁରୂପେ ନିଜ ନିଜ ଚିହ୍ନ ପ୍ରାପ୍ତ ହୋଇଯାନ୍ତି, ସେହିରୂପେ ମନୁଷ୍ୟାଦି ଜୀବ ନୂତନ ସୃଷ୍ଟି ଆରମ୍ଭରେ ପୂର୍ବ କଳ୍ପର ସଞ୍ଚିତ କର୍ମଫଳକୁ ପ୍ରାପ୍ତ ହୁଅନ୍ତି* ।

## ହିନ୍ଦୁଙ୍କ ଦୈନିକ ସଂକଳ୍ପ

ଉପରେ ସୃଷ୍ଟ୍ୟୁତ୍ପତ୍ତି ଓ ମନୁଷ୍ୟୋତ୍ପତ୍ତିର ଯେଉଁ ଦୀର୍ଘ କାଳ-ମାନଙ୍କ ବର୍ଣ୍ଣନା କରାଯାଇଛି, ସେ ସବୁ କାଳ୍ପନିକ ଗପ ନୁହେ । ହିନ୍ଦୁଙ୍କ ଦୈନିକ ସଂକଳ୍ପ ଓ ବିଭିନ୍ନ ଦେଶର ପ୍ରଚଳିତ ସମ୍ବତ୍ସର-ମାନଙ୍କର ଅନୁଶୀଳନ କଲେ ଏ କଥା ଉପଲବ୍ଧ ହେବ । କୋଟି କୋଟି ବର୍ଷ ତଳର ଉଦ୍ଭିଦ ଓ ଜୀବଜନ୍ତୁଙ୍କ ଅସ୍ଥି ବିଶେଷର ଆବିଷ୍କାର କଥା ଆଜିର ବୈଜ୍ଞାନିକ ଘୋଷଣା କରୁଥିଲେ ବି ନିଜକୁ ସୂକ୍ଷ୍ମ ଐତିହାସିକ ବୋଲି ପରିଚୟ ଦେଉଥିବା ଆଧୁନିକ ଐତିହାସିକମାନେ ସଂସାର ଓ ମନୁଷ୍ୟ ଉତ୍ପତ୍ତିର କାଳ ସମ୍ବନ୍ଧି ଅତ୍ୟନ୍ତ ସୀମିତ ଓ ସଙ୍କୀର୍ଣ୍ଣ ମତ ପ୍ରକାଶ କରୁଥିବା ଅତ୍ୟନ୍ତ ଦୁଃଖର କଥା ।

ହିନ୍ଦୁଙ୍କ ଦୈନିକ ସଂକଳ୍ପରୁ ସୃଷ୍ଟିର ବୟସ ସହଜେ ଜଣାଯାଏ । ଦୈନିକ ସଂକଳ୍ପରେ ଚଳିତ ବର୍ଷ 'ଦ୍ୱିତୀୟ ପରାର୍ଦ୍ଧେ ବୈବସ୍ୱତ ମନ୍ୱନ୍ତରେ ଅଷ୍ଟାବିଂଶତି କଳିଯୁଗେ ୫୦୬୯ ଗତାବ୍ଦେ' ପଢ଼ିବାବେଳେ

---

* ଯଥର୍ତ୍ତୁଲିଙ୍ଗାନ୍ୟୃତବଃ ସ୍ୱୟମେବର୍ତ୍ତୁ ପର୍ଯ୍ୟୟେ ।
ସ୍ୱାନିସ୍ୱାନ୍ୟଭିପଦ୍ୟନ୍ତେ ତଥା କର୍ମାଣି ଦେହିନଃ ।। (ମନୁ ୧,୩୦)

ଆସନ୍ତା ବର୍ଷକୁ ୫୦୬୦ ଗତାବ୍ଦେ ବୋଲି ପଢ଼ିବାକୁ ହୁଏ । ଏହି ରୂପେ ମନୁଷ୍ୟୋତ୍ପତ୍ତିର ଆରଂଭରୁ ଈଶ୍ୱରଦତ୍ତ ଜ୍ଞାନ ଦ୍ୱାରା ତଲ୍ଲୀନ ସୃଷ୍ଟ୍ୟାଦରେ ବର୍ଷକୁ ବର୍ଷ ମିଶାଇ ସୃଷ୍ଟି କାଳ ଗଣନା କରାଯାଇଥାଏ । ସ୍ରଷ୍ଟାଙ୍କ ଏହି ନିର୍ଭୁଲ ସୃଷ୍ଟିରେ କୌଣସି ଅଭାବର ଦୃଷ୍ଟିଗୋଚର ହୁଏ ନାହିଁ । ପଗଡ଼ିବାଲା ନିଜ ମଥା ଉପରେ ପଗଡ଼ି ପିନ୍ଧି ସେଥିପାଇଁ ଏଣେତେଣେ ଖୋଜି ବୁଲୁଥିବା ପରି ଆମ୍ଭେମାନେ ନିଜର ବୈଦିକ ସଙ୍କଳ୍ପରେ ସୃଷ୍ଟି କାଳର ପ୍ରତ୍ୟକ୍ଷ ଗଣନାକୁ ଭୁଲିଯାଇ ଏଣୁତେଣୁ କୃତ୍ରିମ ଉପାୟ ଓ ସମ୍ଭାବନା ଉପରେ ଆଶ୍ରୟ ନେଉଛୁ ।

ଭାଷା, ଭାବ ଓ ଉଚ୍ଚାରଣ ଭେଦରେ ଆଦି ଦେବବାଣୀ ଯେପରି ସଂସାରର ବିଭିନ୍ନ ଭାଷା ରୂପେ ବିକୃତ ହୋଇ ପଡ଼ିଛି, ସେହିରୂପେ ସୃଷ୍ଟିକାଳ ସମ୍ବନ୍ଧେ ବୈଦିକ ସିଦ୍ଧାନ୍ତ ସଂସାରର ବିଭିନ୍ନ ଦେଶରେ ଅଶୁଦ୍ଧ ଓ ଅପଭ୍ରଷ୍ଟ ରୂପରେ ବିଦ୍ୟମାନ ରହିଛି । ପାରସୀମାନଙ୍କ ମତରେ ସଂସାରର ସ୍ଥିତି କାଳ ବାର ହଜାର ଦୈବବର୍ଷ* । ପୁଣି ସେମାନଙ୍କ ମତରେ ଦେବତାମାନଙ୍କ ଏକ ଦିନ ମନୁଷ୍ୟଙ୍କ ଏକ ବର୍ଷ ସହ ସମାନ । ଅର୍ଥାତ ବାର ହଜାର ଦୈବବର୍ଷ ମନୁଷ୍ୟଙ୍କ ୪୩୨୦୦୦୦ ବର୍ଷ ସହ ସମାନ ଯାହାକି ବୈଦିକ ମତରେ ଏକ ଚତୁର୍ଯୁଗୀ ବା ମହାଯୁଗର କାଳ ସହ ସମାନ । ଏହିରୂପେ ପାରସୀ ସାହିତ୍ୟରେ ସୃଷ୍ଟି

---

* *The Persian sages led by Zoroster believed that the total duration of the world's existence was limited to 1200 years:— (The Age of the Earth By Arthur Holmes)*

କାଳର ପରମାଣ ଏକ ହଜାର ମହାଯୁଗରୁ ଗୋଟିଏ ମହାଯୁଗରେ ସୀମିତ ଓ ବିକୃତ ହୋଇ ରହିଛି ।

## ବୈଦିକ ମନୁଷ୍ୟୋତ୍ପତ୍ତିର କାଳହିଁ ବେଦର କାଳ

ଆର୍ଯ୍ୟାବର୍ତ୍ତ ଓ ତ୍ରିବିଷ୍ଟପ (ତିବ୍ବତ)ରୁ ଆଦି ମନୁଷ୍ୟ ଯେଉଁ ଯେଉଁ ସମୟରେ ସଂସାରର ବିଭିନ୍ନ ଖଣ୍ଡକୁ ବିସ୍ତୃତ ହୋଇଥିଲେ, ସେହି ସେହି ସମୟକୁ ସେମାନେ ଏକ ଏକ ଐତିହାସିକ କାଳ ରୂପେ ଗ୍ରହଣ କରି ନେଇଥିଲେ । ଏହି କାଳର ଗଣନା ଆଜି ସୁଦ୍ଧା ବିଭିନ୍ନ ଦେଶ ଓ ଜାତି ମଧ୍ୟରେ ପ୍ରଚଳିତ ରହିଛି । ଏହି ରୂପେ ଏହି କଳ୍ପର ମନୁଷ୍ୟୋତ୍ପତ୍ତି କାଳ ଆଜିକୁ ପ୍ରାୟ ବାରକୋଟି ବର୍ଷ ହେବା ସ୍ଥଳେ ଚୀନ ଦେଶରେ ନଅ କୋଟିରୁ ଊର୍ଦ୍ଧ୍ୱ ବର୍ଷର ସମ୍ବତ୍ସର ବର୍ତ୍ତମାନ ପ୍ରଚଳିତ ରହିଛି । ଅର୍ଥାତ୍ ମନୁଷ୍ୟୋତ୍ପତ୍ତିର ପ୍ରାୟ ତିନି କୋଟି ବର୍ଷ ପରେ ଆର୍ଯ୍ୟାବର୍ତ୍ତରୁ ମନୁଷ୍ୟ ଚୀନ ଦେଶ ଦିଗରେ ଗତି କରିଥିଲେ । ଅଧ୍ୟାପକ ହୀରେନ୍ ଲେଖିଛନ୍ତି—'ଚୀନ ନାମ ହିନ୍ଦୁ ସମ୍ଭୂତ ଓ ଭାରତବର୍ଷରୁ ଆମ ଦେଶକୁ ଆସିଛି† ।' ଅମରକୋଷରେ ଏକ ପ୍ରକାର ମୃଗର ନାମ ଚୀନ ବୋଲି ଆସେ । ପଞ୍ଚତନ୍ତ୍ରରେ 'ଚୀନା ନାଭିଃ' ଶବ୍ଦ ଆସେ । ସମ୍ଭବତଃ ଗହନ ମାଳାଂଚଳରେ ବସତି ସ୍ଥାପନ କରୁଥିବା ହେତୁ ଏହି ଲୋକଙ୍କ ନାମ ଚୀନ ବୋଲି କଥିତ ହୋଇଛି । ଚୀନବାସୀ ନିଜକୁ ଚନ୍ଦ୍ରବଂଶୀ କ୍ଷତ୍ରିୟ ନାମରେ ପରିଚୟ ଦଅନ୍ତି ।

---

† *The name of China is of Hindu origin and came to us from India.*

ଆର୍ଯ୍ୟମାନେ ପଶ୍ଚିମ ଏସିଆକୁ ଗତ କରି ବସତି ସ୍ଥାପନ କରି-ଥିଲେ । ଆର୍ଯ୍ୟନ୍ ଶବ୍ଦରୁ ଇରାନ୍, ଉପଗଣରୁ ଆଫଗାନିସ୍ଥାନ, ପ୍ରତିଷ୍ଠାନରୁ ପଠାଣ, ଅର୍ବରୁ ଆରବ, ବଲ-ଉଚ-ସ୍ଥାନରୁ ବେଲୁଚିସ୍ଥାନ ଆଦି ଅପଭ୍ରଂଶ ଦେଖିବାକୁ ମିଳେ । ମକ୍ଷିକାରୁ ମେକ୍ସିକୋ, ପଦ୍ମପୁରରୁ ପେରୁ ଆଦି ନାମରୁ ପୃଥିବୀର ଅନ୍ୟ ଗୋଲାର୍ଦ୍ଧ ପାତାଳପୁରୀ ଆମେରିକା ଖଣ୍ଡରେ ଆର୍ଯ୍ୟଙ୍କ ନିବାସ ଜଣାଯାଏ । ନୀଳରୁ ନୀଳ ନଦୀ, ମିଶ୍ରରୁ ମିଶର ଆଦିରୁ ଆଫ୍ରିକା ମହାଦେଶର ପ୍ରାଚୀନ ଇତିହାସ ଆଲୋଚନା କରାଯାଇ ପାରେ । ମିଶରବାସୀ ଅଦ୍ୟାପି ନିଜକୁ ସୂର୍ଯ୍ୟବଂଶୀ ବୋଲି ନାମିତ କରନ୍ତି । ଗୁଲ୍‌ଡିଆ ଦେଶବାସୀଙ୍କ ମଧ୍ୟରେ ପ୍ରାୟ ଦୁଇକୋଟି ବର୍ଷରୁ ଊର୍ଦ୍ଧ୍ବ ସମୟର ସମ୍ବତ୍ସର ରହିଛି । ବେବିଲୋନିଆ ଓ ସ୍କାଣ୍ଡିନେଭିଆବାସୀଙ୍କ ମଧ୍ୟ ଏହି ଅନୁରୂପ ସମ୍ବତ୍ସରମାନ ରହିଛି । ସୂର୍ଯ୍ୟସିଦ୍ଧାନ୍ତ ଅନୁସାରେ ସ୍ୱର, ଶ୍ୱାସ, ନାଡ଼ି ଆଦି ସମୟର ବିଭାଗ ପରି ବେବିଲୋନିଆରେ ସାସ୍, ସର୍, ନେର୍ ଆଦିର ପ୍ରଚଳନ ଅଛି ।

ଏ ସବୁ ଲେଖିବାର ନିଷ୍କର୍ଷ ଏହିଯେ ଆଜର ପରି ସୃଷ୍ଟି ଆରଂଭରେ ମନୁଷ୍ୟର ବହୁରୂପ ଜ୍ଞାନ ଥିଲା । ମନୁଷ୍ୟର ପ୍ରାଚୀନରୁ ପ୍ରାଚୀନତର ଇତିହାସ ଦିଗେ ଦୃଷ୍ଟି ଦେଲେ ଅନୁଭୂତ ହୁଏଯେ ତାହାର ପୂର୍ବପୁରୁଷ ମନୁଷ୍ୟ ଥିଲେ । ବର୍ତ୍ତମାନ ଦୃଷ୍ଟିଗୋଚର ହେଉଥିବା ସକଳ ଯୋନି ସୃଷ୍ଟି ଆରଂଭରେ ଜନ୍ମିଥିଲେ । ଅଦି ଅମୈଥୁନୀ ସୃଷ୍ଟିରେ ବିଭିନ୍ନ ଜୀବଙ୍କ ଜନ୍ମ ପୂର୍ବ କଳ୍ପରେ ସେମାନଙ୍କ କର୍ମର ଫଳ ଉପରେ ଆଧାରିତ ଥିଲା । ଏହା ପରେ କର୍ମ ଫଳ ଚକ୍ର ଉପରେ ଆଶ୍ରୟ ନେଇ ଜୀବ ପୁନଃ ପୁନଃ ବିଭିନ୍ନ ଯୋନିରେ ଜନ୍ମ ନିଅନ୍ତି । ପ୍ରତ୍ୟେକ

ଜୀବ ତାହାର 'ଅନ୍ତିମ ଧ୍ୟେୟ' ମୁକ୍ତି ପର୍ଯ୍ୟନ୍ତ ଏହି ଚକ୍ରରେ ଘୂରୁଥାଏ । ଏହିରୂପେ ଜୀବଜଗତ କଳ୍ପର ଶେଷ ବା ପ୍ରଳୟର ଆରଂଭ ପର୍ଯ୍ୟନ୍ତ ବଂଶ ରହିଥାଏ । ଉପରେ ପ୍ରଳୟର ଉପଯୋଗିତା ସୂଚିତ ହୋଇଛି ।

ଚତୁର୍ଥ ଅଧ୍ୟାୟରେ 'ବିକାଶ ବାଦ'ର ଯୁକ୍ତିହୀନତାର ବର୍ଣ୍ଣନା କରିବା ବେଳେ ପ୍ରମାଣିତ ହୋଇଛି ଯେ ମନୁଷ୍ୟ ତାହାର ଆଦି ସୃଷ୍ଟିରୁ ଯେଉଁ ଜ୍ଞାନ ପାଇଥିଲା, କର୍ମଫଳ ଅନୁସାରେ ତହିଁରେ ବିକାଶ ବା ହ୍ରାସ ଘଟୁଛି। ମନୁଷ୍ୟର ଏହି ଆଦିଜ୍ଞାନହିଁ 'ବେଦ' ବୋଲି ଜ୍ଞାନ, ଭାଷା ଓ ଧର୍ମ ପ୍ରକରଣରେ ପ୍ରତିଷ୍ଠା କରିଯାଇଛି । ସାଂପ୍ରଦାୟିକ ମନୋଭାବରେ ପ୍ରଚଳିତ ମନୁଷ୍ୟୋତ୍ପତ୍ତିର ସଂକୀର୍ଣ୍ଣ କାଳମାନ ବିଶ୍ୱସ୍ୟ ନହେବା ହେତୁ, ବିଭିନ୍ନ ଦେଶରେ ଦୀର୍ଘ କାଳ ବିଶିଷ୍ଟ ସମ୍ବତ୍ସରର ପ୍ରଚଳନ ଥିବା ହେତୁ ଓ ସର୍ବୋପରି ଆଧୁନିକ ବିଜ୍ଞାନ ବୈଦିକ କାଳମାନର ଦୀର୍ଘତା ଓ ତ ସମ୍ବନ୍ଧରେ ଅନୁକୂଳ ମତମାନ ପୋଷଣ କରୁଥିବା ହେତୁ, ବୈଦିକ ମନୁଷ୍ୟୋତ୍ପତ୍ତି କାଳ ଗ୍ରହଣୀୟ । ଏହି ବୈଦିକ ମନୁଷ୍ୟୋତ୍ପତ୍ତି କାଳହିଁ ମନୁଷ୍ୟର ଆଦି ଓ ସନାତନ ଜ୍ଞାନ 'ବେଦ'ର କାଳ ।

—ଅଷ୍ଟମ ଅଧ୍ୟାୟ—

## ବେଦରୁ ବେଦର କାଳ

ସାମ୍ପ୍ରଦାୟିକ ବିଶ୍ୱାସ ଉପରେ ଭିତ୍ତି କରି ବେଦର କାଳ ନିର୍ଦ୍ଧାରଣ କରିଥିବା ହେତୁ ପାଶ୍ଚାତ୍ୟ ସମାଲୋଚକମାନଙ୍କ ମତ ଅଯୌକ୍ତିକ। ବୈଜ୍ଞାନିକମାନେ ବିଜ୍ଞାନର ଅନୁଶୀଳନ ସାହାଯ୍ୟରେ ଏହି କାଳକୁ ବହୁ ପଛକୁ ନେଇଥିଲେ ସୁଦ୍ଧା ଏମାନେ ଏମାନଙ୍କ ଗବେଷଣାକୁ 'ଅନିଶ୍ଚିତ' ଓ 'ଅସମ୍ପୂର୍ଣ୍ଣ' ବୋଲି ସ୍ୱୀକାର କରିଛନ୍ତି। ଭୂତତ୍ତ୍ୱର ଅନିଶ୍ଚିତ ତଥ୍ୟ ଉପରେ ନିର୍ଭର କରି ସିଦ୍ଧାନ୍ତରେ ପହଞ୍ଚିଥିବାରୁ, ଏହି ଉକ୍ତି ସତ୍ୟ। ଏହି ଦୁଇ ଶ୍ରେଣୀର ସମାଲୋଚକଙ୍କଠାରୁ ପୃଥକ୍ ଅନ୍ୟ ଏକ ଶ୍ରେଣୀର ସମାଲୋଚକଙ୍କ ମତଗୁଡିକ ଏହି ପ୍ରବନ୍ଧରେ ଆଲୋଚନା କରାଯିବ। ଏହି ତୃତୀୟ ପନ୍ଥୀ ସମାଲୋଚକମାନେ ବେଦ ମନ୍ତ୍ରରୁ ବେଦର କାଳ ନିର୍ଣ୍ଣୟ କରିବାକୁ ଯତ୍ନ କରିଛନ୍ତି। ଏମାନେ 'ଋଷି'ଙ୍କୁ ମନ୍ତ୍ରଦ୍ରଷ୍ଟା ରୂପେ ନମାନି ମନ୍ତ୍ରସ୍ରଷ୍ଟା ରୂପେ ମାନିଛନ୍ତି। ବେଦକୁ ମନୁଷ୍ୟର ଅମୂଲ୍ୟ ଗ୍ରନ୍ଥ

ବୋଲି ସ୍ୱୀକାର କଲେ ବି ଏମାନେ ତାହାକୁ ଐତିହାସିକ ଗ୍ରନ୍ଥରୂପେ ଆଲୋଚନା କରିଛନ୍ତି । ତେଣୁ ବେଦମନ୍ତ୍ରର ନିତ୍ୟାର୍ଥକୁ ଅନିତ୍ୟ ଇତିହାସ ରୂପେ ବର୍ଣ୍ଣନା କରିଛନ୍ତି ଓ ସେଥିରୁ ବେଦର କାଳ ନିରୂପଣ କରିଛନ୍ତି । ଲୋକମାନ୍ୟ ବାଲଗଙ୍ଗାଧର ତିଲକ ଏମାନଙ୍କର ଅଗ୍ରଣୀ ଥିଲେ । ଏଣୁ ଏହାଙ୍କ ମତକୁ ପ୍ରଥମେ ଆଲୋଚନା କରାଯିବ ।

## ଲୋକମାନ୍ୟ ତିଳକଙ୍କ ମତ ଓ ତାହାର ସମୀକ୍ଷା

ଜ୍ୟୋତିଷ ବିଦ୍ୟାର ଆଶ୍ରୟ ନେଇ ଲୋକମାନ୍ୟ ତିଲକ ବେଦର କାଳ ନିରୂପଣ କରିଛନ୍ତି । ଋଗ୍ ବେଦର କେତେକ ମନ୍ତ୍ରରୁ ନକ୍ଷତ୍ରର ସ୍ଥିତି ସମ୍ବନ୍ଧରେ କେତେକ କଳ୍ପନା କରି, ସେ ବେଦ ରଚନାର କାଳ ସ୍ଥିର କରିଛନ୍ତି । ତାହାଙ୍କ ମତ ଓ ତା'ର ସମୀକ୍ଷା କରିବା ପୂର୍ବରୁ ପ୍ରଥମେ ଆକାଶ ମଣ୍ଡଳର କେତେକ ତଥ୍ୟକୁ ଜାଣିନେବା ଆବଶ୍ୟକ ।

ପୃଥିବୀ ନିଜର ଆହ୍ନିକ ଗତି ସଙ୍ଗେ ସଙ୍ଗେ ସୂର୍ଯ୍ୟ ଚତୁର୍ଦ୍ଦିଗରେ ବର୍ଷରେ ଥରେ ପ୍ରଦକ୍ଷିଣ କରେ । ଆକାଶ ମଣ୍ଡଳରେ ଏହି ପ୍ରଦକ୍ଷିଣ ମାର୍ଗକୁ କାନ୍ତିବୃତ୍ତ (*Orbit*) କୁହାଯାଏ । ପୃଥିବୀର ଦୁଇ ମେରୁର ମଧ୍ୟ ଭାଗରେ ଯେଉଁ କାଳ୍ପନିକ ବୃତ୍ତ ତାହାକୁ ଠିକ୍ ଦୁଇ ଅଂଶରେ ବିଭକ୍ତ କରେ, ତାହାର ନାମ ବିଷୁବ ବୃତ୍ତ (*Equator*) । ବିଷୁବ-ବୃତ୍ତ କାନ୍ତିବୃତ୍ତକୁ ଦୁଇଟି ବିନ୍ଦୁରେ ୨୩.୫ ଅଂଶ (*Degree*) ରେ ଛେଦ କରେ । ଏହି ଦୁଇ ବିନ୍ଦୁର ନାମ ବସନ୍ତ ସଂପାତ (*Vernal Equinox*) ଓ ଶରତ୍ ସଂପାତ (*Autumnal Equinox*) । ପୃଥିବୀ ସୂର୍ଯ୍ୟର

ଚତୁର୍ଦ୍ଦିଗରେ ଭ୍ରମଣ କରୁଥିଲେ ବି ସୂର୍ଯ୍ୟର ପ୍ରାକୃତିକ ଗତି (*Virtual motion*) ପରିଦୃଷ୍ଟ ହୁଏ । ତେଣୁଁ ପୃଥିବୀର କାନ୍ତିବୃତ୍ତକୁ ସୂର୍ଯ୍ୟର କାନ୍ତିବୃତ୍ତ ବୋଲି କୁହାଯାଇଥାଏ । ଯେତେବେଳେ ସୂର୍ଯ୍ୟ ବସନ୍ତ ସମ୍ପାତ ବିନ୍ଦୁ ଉପରେ ରହେ, ସେତେବେଳେ ବସନ୍ତ ଋତୁର ଆରମ୍ଭ ହୁଏ ଓ ଶରତ ସଂପାତ ଉପରେ ରହିଲେ ଶରତ ଋତୁର ଆରମ୍ଭ ହୁଏ । ସୂର୍ଯ୍ୟ ଦକ୍ଷିଣାୟନରୁ ଉତ୍ତରାୟଣ ହେବାବେଳେ ବସନ୍ତ ସମ୍ପାତ ବିନ୍ଦୁ ଦେଇ ଗତି କରେ ସେହିପରି ଉତ୍ତରାୟଣରୁ ଦକ୍ଷିଣାୟନ ହେବାବେଳେ ଶରତ ସମ୍ପାତ ବିନ୍ଦୁ ଦେଇ ଗତି କରେ । ଏତିକିବେଳେ ଅର୍ଥାତ୍ ମାର୍ଚ୍ଚ ୨୧ ଓ ସେପ୍ଟେମ୍ବର ୨୩ ତାରିଖ ଦିନ ପୃଥିବୀର ସର୍ବତ୍ର ଦିନ ଓ ରାତି ସମାନ ରହେ । ବସନ୍ତ ଓ ଶରତ ସମ୍ପାତ ବିନ୍ଦୁ ୭୨ ବର୍ଷରେ ଗୋଟିଏ ଅଂଶ (*Degree*) ହିସାବରେ କାନ୍ତିବୃତ୍ତ ଉପରେ ପୂର୍ବରୁ ପଶ୍ଚିମକୁ ଗତି କରୁଥାନ୍ତି । ଏତିକିବେଳେ ଏହି ଦୁଇ ବିନ୍ଦୁ କାନ୍ତିବୃତ୍ତ ଚତୁଃପାର୍ଶ୍ୱରେ ଥିବା ଅନ୍ୟ ଏକ ବୃତ୍ତ ଉପରେ ଅବସ୍ଥିତ ୨୭ ନକ୍ଷତ୍ର ପୁଞ୍ଜରୁ ଗୋଟିକୁ ଗୋଟିକୁ ସମ୍ମୁଖୀନ ହେଉଥାନ୍ତି । ଅନ୍ୟ ଭାଷାରେ କହିବାକୁ ଗଲେ, କାନ୍ତିବୃତ୍ତ ଉପରେ ଗତି କରୁଥିବା ସୂର୍ଯ୍ୟ ଗୋଟିଏ ଗୋଟିଏ ନକ୍ଷତ୍ରର ସମ୍ମୁଖୀନ ହେଉଥାଏ । ଏତେବେଳେ ସୂର୍ଯ୍ୟକୁ ସେହି ସେହି ନକ୍ଷତ୍ରରେ ଥାଏ ବୋଲି କୁହାଯାଏ । ବସନ୍ତ ବା ଶରତ ସମ୍ପାତ ବିନ୍ଦୁ ଗୋଟିଏ ନକ୍ଷତ୍ରରୁ ଅନ୍ୟ ଗୋଟିକୁ ଯିବାରେ ପ୍ରାୟ ୯୬୦ ବର୍ଷ ଲାଗେ । ଜ୍ୟୋତିଷ ଶାସ୍ତ୍ରର ଗଣନାରୁ ଯଦି କୌଣସି ପ୍ରାଚୀନ ସମୟରେ ସୂର୍ଯ୍ୟ କେଉଁ ନକ୍ଷତ୍ରରେ ଥିବା କଥା ଜଣାଯାଇ ପାରେ, ତାହାହେଲେ ସୂର୍ଯ୍ୟର ବର୍ତ୍ତମାନ ନକ୍ଷତ୍ର ହିସାବରୁ ସେହି ପ୍ରାଚୀନ ସମୟର କାଳ ନିରୂପଣ କରିଯାଇ ପାରେ ।

ଏହି ପଦ୍ଧତିରେ ଲୋକମାନ୍ୟ ତିଲକ ବେଦର କାଳ ନିରୂପଣ କରିଛନ୍ତି । ତାହାଙ୍କ ପ୍ରଣୀତ ମୃଗଶୀର୍ଷ (Orion) ନାମକ ଗ୍ରନ୍ଥରେ ଋଗ୍‌ବେଦର ଦଶମ ମଣ୍ଡଳ ୮୬ ସୂକ୍ତରୁ ମୃଗଶୀର୍ଷ ନକ୍ଷତ୍ରରେ ବସନ୍ତ ସଂପାତ ଥିବା କଥା କଳ୍ପନା କରିଛନ୍ତି । ସୂର୍ଯ୍ୟ ବର୍ତ୍ତମାନ ବସନ୍ତ ସଂପାତରେ ଉତ୍ତରାଭାଦ୍ରପଦ ନକ୍ଷତ୍ରରେ ରହେ । ଏହା ମୃଗଶୀର୍ଷ ନକ୍ଷତ୍ରଠାରୁ ୬ ନକ୍ଷତ୍ର ଆଗରେ । ସୁତରାଂ ବେଦ ରଚନା କାଳ ବର୍ତ୍ତମାନ ସମୟଠାରୁ ପ୍ରାୟ ୫୭୬୦ (୯୬୦ × ୬) ବର୍ଷ ତଳର କଥା । ଏହା ଲୋକମାନ୍ୟ ତିଳକଙ୍କ ମତ । ସେଥିରୁ ସେ ଲେଖିଛନ୍ତି— 'ଏହା ପରେ ମୃଗଶୀର୍ଷ କାଳ । ଏହାର ମର୍ଯ୍ୟାଦା ଖ୍ରୀଷ୍ଟପୂର୍ବ ୪୫୦୦ଠାରୁ ୨୫୦୦ ବର୍ଷ ପର୍ଯ୍ୟନ୍ତ । ଏହି କାଳ ଆର୍ଯ୍ୟ ସଭ୍ୟତାର ଏକ ବିଶିଷ୍ଟ ସମୟ । ଏହି ସମୟରେ ଋଗ୍‌ବେଦର ବହୁ ସୂକ୍ତ ରଚିତ ହୋଇଥିଲା † ।'

ଲୋକମାନ୍ୟଙ୍କ ମତକୁ ପରୀକ୍ଷା କରିବା ପାଇଁ ବର୍ତ୍ତମାନ କେତୋଟି ପ୍ରଶ୍ନର ଆଲୋଚନା କରାଯାଉ । (୧) ଲୋକମାନ୍ୟଙ୍କ ମତାନୁଯାୟୀ ଋଗ୍‌ବେଦର ଉପରୋକ୍ତ ସୂକ୍ତର ଅର୍ଥ ମୃଗଶୀର୍ଷ ନକ୍ଷତ୍ରରେ ବସନ୍ତ ସଂପାତ

---

† *We next come to the Orion Period which roughly speaking, extended from 4500 B. C. to 2500 B. C. + +. This is a very important period in the history of the Aryan Civilisation. A good many Suktas in the Rigveda were sung at the time.'*—(*Orion*)

ଥିବା କଥା ସୂଚନା ଦେବ କି ? (୨) ଏହା ସତ୍ୟ ହୋଇଥିଲେ ବି ବେଦର କାଳ ନିର୍ଣ୍ଣୟରେ ତାହାଙ୍କ ପନ୍ଥା ଓ ଗଣନା ଠିକ୍ କି ? (୩) ବେଦର ଏହିରୂପ କାଳ ନିର୍ଣ୍ଣୟ କଲାବେଳେ ତିଳକ ଏହା ସପକ୍ଷରେ ଦୃଢମତ ପୋଷଣ କରିଛନ୍ତି କି ?

(୧) ପ୍ରକୃତ ପକ୍ଷରେ ନକ୍ଷତ୍ରର ସ୍ଥିତି ସମ୍ବନ୍ଧରେ ଲୋକମାନ୍ୟ ତିଳକ ବେଦ ମନ୍ତ୍ରର ପ୍ରତ୍ୟକ୍ଷ ପ୍ରମାଣ ପାଇ ନାହାନ୍ତି । ଗୀତା ଓ ବ୍ରାହ୍ମଣ ଗ୍ରନ୍ଥର ବିଭିନ୍ନ ଶ୍ଳୋକ ସହ କେଉଁ କେଉଁ ବେଦ ମନ୍ତ୍ରକୁ କୃତ୍ରିମ ଉପାୟରେ ସମ୍ବନ୍ଧ କରାଇ ସେ ମୃଗଶୀର୍ଷ ନକ୍ଷତ୍ର ସହ ବସନ୍ତ ସମ୍ପାତର ସମ୍ପର୍କ ସ୍ଥାପିତ କରନ୍ତି । ସେ ସ୍ୱୀକାର କରିଛନ୍ତି—'ବେଦରେ ମୃଗଶୀର୍ଷ ନକ୍ଷତ୍ର ବସନ୍ତ ସମ୍ପାତରେ ଥିବା କଥା କେଉଁ ସ୍ଥଳରେ ସ୍ପଷ୍ଟରୂପେ ଲେଖାପାଇ ନାହିଁ ❋ ।' ଲୋକମାନ୍ୟ ତିଳକ ଋଗ୍‌ବେଦର ଯେଉଁ ସୂକ୍ତକୁ ପ୍ରବଳ ପ୍ରମାଣରୂପେ ଗ୍ରହଣ କରିଛନ୍ତି, ସେହି ସୂକ୍ତରେ ମୃଗଶୀର୍ଷ ନକ୍ଷତ୍ରର ନାମ ମାତ୍ର ଉଲ୍ଲେଖ ନାହିଁ । ସୂକ୍ତ, ନକ୍ଷତ୍ରର ପର୍ଯ୍ୟାୟବାଚୀ ବି ନୁହେ । ଏହି ସୂକ୍ତର ଦୁଇ ସ୍ଥଳରେ 'ମୃଗ' ଶବ୍ଦ ଆସେ । ଏହି 'ମୃଗ' ଶବ୍ଦର ଅର୍ଥ କେଉଁଠି ସୂର୍ଯ୍ୟ ତ କେଉଁଠି ମେଘ । ସୂକ୍ତର ତୃତୀୟ ମନ୍ତ୍ରରେ ଅଛି—

କିମୟଂତ୍ୱା ବୃଷାକପିଶ୍ଚକାର ହରିତୋ ମୃଗଃ ।
ଯସ୍ମା ଇରସ୍ୟସୀଦୁ ନ୍ୱର୍ଯ୍ୟୋ ବା ପୁଷ୍ଟିମଦ୍ୱସୁ ବିଶ୍ୱସ୍ମାଦିନ୍ଦ୍ର ଉତ୍ତରଃ ॥

---

❋ *There appears to be no express passage in the Vedic Works, which states that Mrigashiras, like the Krittika, was ever the month of the Nakshatras— (Orion)*

ଅର୍ଥାତ୍— 'ହେ ବ୍ୟୋମକକ୍ଷାରୂପୀ ଇନ୍ଦ୍ରାଣୀ ! ଏହି କିରଣର ସ୍ୱାମୀ ସୂର୍ଯ୍ୟରୂପୀ ମନୋହର ମୃଗ ତୁମ ପ୍ରତି କେଉଁ ଅନିଷ୍ଟ କରିଛି ଯେ ତୁମେ, ଈର୍ଷା ଓ ଘୃଣା କରୁଛ ?' ପରବର୍ତ୍ତୀ ମନ୍ତ୍ରରେ ଇନ୍ଦ୍ରାଣୀ ଇନ୍ଦ୍ରରୂପ ଉତ୍ତର ଧ୍ରୁବକୁ (*North Pole*) ଏହି ପ୍ରଶ୍ନର ଉତ୍ତର ଦେଏ । ଋଗ୍‌ବେଦର ୧୦, ୧୭୩, ୪ରେ 'ମୃଗ' ଶବ୍ଦର ଅର୍ଥ ସୂର୍ଯ୍ୟ ବୋଲି ସ୍ପଷ୍ଟ ହୋଇଛି । ପଣ୍ଡିତ ରଘୁନନ୍ଦନ ଶର୍ମା ଏ ସବୁ ସ୍ଥଳରେ ମୃଗର ଅର୍ଥ ମେଘ ବୋଲି କହିଛନ୍ତି । ଋଗ୍‌ବେଦର 'ମୃଗସ୍ୟ ଘୋଷମ୍' 'ମାୟିନଂ ମୃଗଂ' ଆଦି ମନ୍ତ୍ରାଂଶରୁ ସେ ମୃଗର ଏହି ଅର୍ଥ କରିଛନ୍ତି । 'ମୃଗସ୍ୟ ଘୋଷମ୍'ର ଅର୍ଥ ମେଘର ଗର୍ଜ୍ଜନ । କ୍ଷଣ କ୍ଷଣ ରୂପ ଓ ଗତି ବଦଳାଉଥିବା ହେତୁ ମୃଗ ଶବ୍ଦ ମେଘାର୍ଥବାଚୀ ।

ଲେଖିବାର ନିଷ୍କର୍ଷ ଏହି ଯେ, ଋଗ୍‌ବେଦର ଯେଉଁ ଯେଉଁ ଶବ୍ଦରୁ ଲୋକମାନ୍ୟ ତିଲକ ମୃଗଶୀର୍ଷ ନକ୍ଷତ୍ର କଥା କଳ୍ପନା କରିଛନ୍ତି, ସେଥିରେ ନକ୍ଷତ୍ରର କଥା ଆଦୌ ଉଲ୍ଲେଖ ନାହିଁ । ସୂର୍ଯ୍ୟ ଓ ମେଘାର୍ଥବାଚୀ ମୃଗ ଶବ୍ଦରୁ ମୃଗଶୀର୍ଷ ନକ୍ଷତ୍ର କଥା କଳ୍ପନା କରିବା ଅନୁଚିତ । ଯେଉଁ ସୂକ୍ତରୁ ସେ ମୃଗଶୀର୍ଷ ନକ୍ଷତ୍ରକୁ ବସନ୍ତ ସମ୍ପାତରେ ଥିବା କଥା କଳ୍ପନା କରିଛନ୍ତି, ସେଥିରେ ବାସ୍ତବରେ ବୃଷାକପି (ସୂର୍ଯ୍ୟ), ଇନ୍ଦ୍ର (ଉତ୍ତର ଧ୍ରୁବ) ଓ ଇନ୍ଦ୍ରାଣୀ (ବ୍ୟୋମକକ୍ଷା) ସମ୍ବାଦ ହିଁ ବର୍ଣ୍ଣିତ ରହିଛି । ଋଗ୍‌ବେଦୀୟ ସର୍ବାନୁକ୍ରମଣୀରେ ଏହି କଥାକୁ ବ୍ୟାଖ୍ୟା କରି କୁହାଯାଇଛି— 'ବି ହି ସୋତୋରିତି ବୃଷାକପିରିନ୍ଦ୍ରା- ଣୀନ୍ଦ୍ରଶ୍ଚ ସମୂଦିରେ'– ଅର୍ଥାତ୍ ସୂକ୍ତରେ ବୃଷାକପି, ଇନ୍ଦ୍ର ଓ ଇନ୍ଦ୍ରାଣୀର ସମ୍ବାଦ ରହିଛି । ଉତ୍ତର ଧ୍ରୁବ ଓ ବ୍ୟୋମକକ୍ଷାର ପ୍ରାଦୁର୍ଭାବ, ସମସ୍ତ

ଗ୍ରହ ଓ ଉପଗ୍ରହର ପ୍ରକାଶ, ସର୍ବ ସୂର୍ଯ୍ୟ ପର୍ବଗ, ଭୂଗୋଳ ପୃଷ୍ଠରେ ଉତ୍ତର ଓ ଦକ୍ଷିଣ ଗୋଲାର୍ଦ୍ଧର ବିଭାଜନ, ସମ୍ପାତ ଚଳନ ଆଦି ସୃଷ୍ଟିର ବିଭିନ୍ନ ତଥ୍ୟମାନ ଏଥିରେ ବର୍ଣ୍ଣନା କରାଯାଇଛି । ଏ ସବୁକୁ କଥୋପକଥନ ଛଳରେ ଏପରି ବର୍ଣ୍ଣନା କରାହୋଇଛି ଯେ, ଏହାର ଯୌଗିକ ଓ ସୂକ୍ଷ୍ମାର୍ଥ ନକଲେ ପଦେ ପଦେ ଅନର୍ଥ ହେବାର ଆଶଙ୍କା ରହିଛି । ବାସ୍ତବରେ ସୃଷ୍ଟି ଆରମ୍ଭରେ ସୂର୍ଯ୍ୟ ରେବତୀ ନକ୍ଷତ୍ର ଅନ୍ତରେ ବସନ୍ତ ସମ୍ପାତ ଉପରେ ଗଲେ କଲ୍ପବେଳେ କାଳର ଆରମ୍ଭ ହୁଏ । ଏହି କଥା ସୂକ୍ତର ଢେର ଓ ବେଦ ମନ୍ତ୍ରରେ ସୂଚିତ ହୋଇଛି । ବ୍ରହ୍ମସ୍ଫୁଟ ସିଦ୍ଧାନ୍ତରେ ଅଛି—

'ଚୈତ୍ରସିତାଦେରୁଦୟାଦ୍ ଭାନୋର୍ଦିନମାସବର୍ଷଯୁଗକଳ୍ପାଃ ।
ସୃଷ୍ଟ୍ୟାଦୌ ଲଙ୍କାୟାଂ ସମଂ ପ୍ରବୃତ୍ତା ଦିନେର୍କସ୍ୟ ।'

ଅର୍ଥାତ୍—'ବିଷୁବବୃତ୍ତ ଉପରେ ସ୍ଥିତ ଲଙ୍କା ଦେଶରେ ରେବତୀ ନକ୍ଷତ୍ର ଅନ୍ତରେ ସୂର୍ଯ୍ୟ ବସନ୍ତ ସମ୍ପାତ ବିନ୍ଦୁ ଉପରେ ହୁଅନ୍ତେ ଦିନ ମାସ ବର୍ଷ ଯୁଗ କଳ୍ପ ଏକ ସଙ୍ଗରେ ରବିବାର ଦିନ ଆରମ୍ଭ ହୁଅନ୍ତି ।' ଏହି ହିସାବରେ ଗଣିତ କଲେ ବୈଦିକ ସିଦ୍ଧାନ୍ତାନୁଯାୟୀ ସୃଷ୍ଟି କାଳ ନିର୍ଣ୍ଣୀତ ହୋଇଯାଏ । ପରନ୍ତୁ ଲୋକମାନ୍ୟ ତିଳକ ଏହି ପୂର୍ବାଚରିତ ପନ୍ଥାରେ ଗତି ନକରି କେତେକ ବେଦ ମନ୍ତ୍ରର କୃତ୍ରିମ ଅର୍ଥ କରି ମୃଗଶୀର୍ଷ ନକ୍ଷତ୍ର ବସନ୍ତ ସମ୍ପାତରେ ଥିବାବେଳେ ଋଷିମାନେ ବେଦ ମନ୍ତ୍ର ରଚନା କରିଥିଲେ ବୋଲି ଅସଫଳ ଯତ୍ନ କରିଛନ୍ତି । ମୃଗଶୀର୍ଷ (*Orion*) ଗ୍ରନ୍ଥର ବହୁ ସ୍ଥଳରେ ଅତ୍ୟୁକ୍ତି ଓ ପ୍ରମାଣର ଦୁର୍ବଳତା ଏହାର

ପଡ଼ିଥାଏ ହେବ । ପୁନଶ୍ଚ ଏହି ଗ୍ରନ୍ଥ ପ୍ରକାଶ ହେବାର କିଛି ବର୍ଷ ପରେ 'ଉତ୍ତର ଧ୍ରୁବ ନିବାସ' ନାମକ ଏକ ଗ୍ରନ୍ଥରେ ସେ ମୃଗଶୀର୍ଷ ଗ୍ରନ୍ଥର ମତକୁ ପୂର୍ଣ୍ଣରୂପେ ଖଣ୍ଡନ କରିଛନ୍ତି ।

ବେଦ ରଚନା କାଳରେ ମୃଗଶୀର୍ଷ ନକ୍ଷତ୍ର ବସନ୍ତ ସମ୍ପାତରେ ଥିବା କଥା ପ୍ରମାଣ କରିବାକୁ ଯାଇ ତିଳକ ମହୋଦୟ ଭଗବତ୍ ଗୀତାର ୧୦,୧୫ ଶ୍ଳୋକକୁ ଯାଥା ରୂପେ ଉଲ୍ଲେଖ କରିଛନ୍ତି — 'ମାସାନାଂ ମାର୍ଗଶୀର୍ଷୋଽହମୃତୂନାଂ କୁସୁମାକରଃ' — ଶ୍ରୀକୃଷ୍ଣ କହିଛନ୍ତି, 'ମୁଁ ମାସମାନଙ୍କ ମଧ୍ୟରେ 'ମୃଗଶୀର୍ଷ' ଓ ଋତୁମାନଙ୍କ ମଧ୍ୟରେ ବସନ୍ତ ।' ଏହାର ଆଶ୍ରୟ ନେଇ ତିଳକ ବେଦ ରଚନା କାଳରେ ମୃଗଶୀର୍ଷ ନକ୍ଷତ୍ର ବସନ୍ତ ସମ୍ପାତରେ ଥିବା କଥା ଯୁକ୍ତି କରିଛନ୍ତି । ଶ୍ରୀକୃଷ୍ଣଙ୍କ ସମୟ ବା ମହାଭାରତ ସମୟରେ ମୃଗଶୀର୍ଷ ବସନ୍ତ ସମ୍ପାତରେ ଥିବା କଥା ଉକ୍ତ ଶ୍ଳୋକରୁ ସୂଚିତ ହୋଇ ପାରେ । ପରନ୍ତୁ ମହାଭାରତ କାଳର ଏକ ଅନୁଷ୍ଠିତ କାଳ ଯାହାକି ବେଦୋତ୍ତର କାଳ, ସେହି କାଳରେ ନକ୍ଷତ୍ର ଏହି ସ୍ଥିତି କଥା ଏହି ଶ୍ଳୋକରେ କଦାପି ବର୍ଣ୍ଣିତ ହୋଇ ନପାରେ । ମହାଭାରତରେ ତତ୍ପୂର୍ବବର୍ତ୍ତୀ ରାମାୟଣ କାଳର କଥା ଉଲ୍ଲେଖ ରହିଛି ଓ ରାମାୟଣରେ କଲ୍ୟାରମ୍ଭ ବେଳର ବେଦୋତ୍ତର କଥା ଉଲ୍ଲେଖ ରହିଛି । ଏପରି ସ୍ଥଳେ ମହାଭାରତକାଳୀନ ନାକ୍ଷତ୍ରିକ ସ୍ଥିତିକୁ ବୈଦିକକାଳୀନ ବୋଲି କହିବା ଅଯୌକ୍ତିକ ।

(୨) ମୃଗଶୀର୍ଷ ନକ୍ଷତ୍ର ବସନ୍ତ ସମ୍ପାତରେ ଥିବାବେଳେ ବା ଖ୍ରୀ: ପୂ: ୪୫୦୦ ବର୍ଷରୁ ୨୫୦୦ ବର୍ଷ ପର୍ଯ୍ୟନ୍ତ ସମୟ ମଧ୍ୟରେ ବେଦ

ରଚିତ ହୋଇଥିବା କଳ୍ପନା ଉପରୋକ୍ତ କାରଣ ଗୁଡ଼ିକ ଯୋଗୁଁ ଯୁକ୍ତି-ଯୁକ୍ତ ମନେ ହେଉ ନାହିଁ । ସ୍ବୟଂ ତିଳକ ମହୋଦୟ ଏହି ମତକୁ ଖଣ୍ଡନ କରି ବେଦର ସମୟକୁ ଆଉ ଦୁଇ ହଜାର ବର୍ଷ ପଛକୁ ନେଇଛନ୍ତି । ଏଥିପାଇଁ ସେ ତାଙ୍କର ପରବର୍ତ୍ତୀ ଗ୍ରନ୍ଥ 'ଉତ୍ତରମେରୁ ନିବାସ'କୁ ପ୍ରଣୟନ କରିଥିଲେ । ବେଦ ରଚନା ସମୟରେ ମୃଗଶୀର୍ଷ ନକ୍ଷତ୍ର ବସନ୍ତ ସଂପାତରେ ଥିବା କଳ୍ପନା ସତ୍ୟ ହୋଇଥିଲେ ବି, ବେଦର କାଳକୁ ଖ୍ରୀ: ପୂ: ୪୫୦୦ ବର୍ଷରୁ ୨୫୦୦ ବର୍ଷ ପର୍ଯ୍ୟନ୍ତ ବୋଲି ସ୍ଥିର କରିବା ଭ୍ରମପୂର୍ଣ୍ଣ । ଏହାର କାରଣ ନିମ୍ନରେ ଦିଆଗଲା ।

ଉପରେ କୁହାଯାଇଛି ଯେ, ବସନ୍ତ ସଂପାତ ବିନ୍ଦୁ ବାସ୍ତରି ବର୍ଷରେ ଏକ ଅଂଶ ହିସାବରେ ଗତି କରେ । ଗୋଟିଏ ବୃତ୍ତରେ ୩୬୦ ଅଂଶ । ସୁତରାଂ ୩୬୦ × ୭୨ = ୨୫୯୨୦ ବର୍ଷରେ ଥରେ ଏହି ବିନ୍ଦୁ କ୍ରାନ୍ତିବୃତ୍ତକୁ ପ୍ରଦକ୍ଷିଣ କରି ପୁନରାୟ ନିଜ ସ୍ଥାନକୁ ଆସେ । ଗୋଟିଏ ନକ୍ଷତ୍ରରୁ ଅନ୍ୟ ନକ୍ଷତ୍ରକୁ ଆସିବା ପାଇଁ ସମ୍ପାତ ବିନ୍ଦୁକୁ ୯୬୦ ବର୍ଷ ଲାଗେ । ଆଜିକାଲି ବସନ୍ତ ସଂପାତରେ ଉତ୍ତରଭାଦ୍ରପଦ ନକ୍ଷତ୍ର ରହିଛି । ତିଳକଙ୍କ ବ୍ୟାଖ୍ୟା ଅନୁଯାୟୀ ବେଦ ରଚନା କାଳରେ ମୃଗଶୀର୍ଷ ନକ୍ଷତ୍ର ବସନ୍ତ ସଂପାତରେ ରହୁଥିଲା । ଉତ୍ତରଭାଦ୍ରପଦ ମୃଗଶୀର୍ଷ ମଧ୍ୟରେ ଛଅ ନକ୍ଷତ୍ର ବ୍ୟବଧାନ । ସୁତରାଂ ମୃଗଶୀର୍ଷଠାରୁ ଉତ୍ତରଭାଦ୍ରପଦ ଯାଏ କାଳର ପରିମାଣ ୬ × ୯୬୦ = ୫୭୬୦ ବା ପ୍ରାୟ ୬୦୦୦ ବର୍ଷ । ପୂର୍ବରୁ ଗଣିତ ହୋଇଛି ଯେ ୨୫୯୨୦ ବା ପ୍ରାୟ ୨୬୦୦୦ ବର୍ଷରେ ଥରେ ସଂପାତ ବିନ୍ଦୁ କ୍ରାନ୍ତିବୃତ୍ତକୁ ପରିକ୍ରମା କରେ । ସୁତରାଂ ମୃଗଶୀର୍ଷ ନକ୍ଷତ୍ର ୬୦୦୦ ବର୍ଷ ତଳେ ବସନ୍ତ ସଂପାତ ବିନ୍ଦୁର ସମ୍ମୁଖୀନ ହୋଇଥିବା ଯେପରି

ସତ୍ୟ, ୬୦୦୦ + ୨୬୦୦୦ = ୩୨୦୦୦ ବର୍ଷ ତଳେ ବା ୬୦୦୦ + ୫୨୦୦୦ = ୫୮୦୦୦ ବର୍ଷ ତଳେ ବା ୬୦୦୦ + ୭୮୦୦୦ = ୮୪୦୦୦ ବର୍ଷ ତଳ ଇତ୍ୟାଦିରେ ସଂପାତ ବିନ୍ଦୁର ସମ୍ମୁଖୀନ ହୋଇଥିବା ବି ସେହିପରି ସତ୍ୟ । ଏପରି ସ୍ଥଳେ ବେଦ ରଚନାର କାଳକୁ ବା ମୃଗଶୀର୍ଷ ନକ୍ଷତ୍ର ବସନ୍ତ ସମ୍ପାତରେ ଥିବା କାଳକୁ ଗୁଣିତକ ନ୍ୟାୟରେ ବହୁ ଉତ୍ତର ଦିଆଯାଇ ପାରେ । ସୁତରାଂ ପ୍ରାୟ ୬୦୦୦ ବର୍ଷ ବା ଖ୍ରୀ: ପୂ: ପ୍ରାୟ ୪୦୦୦ ବର୍ଷକୁ ବେଦର ରଚନା କାଳ ବୋଲି ନିର୍ଦ୍ଦିଷ୍ଟ କରିବା ମତ ସର୍ବଥା ତ୍ୟାଜ୍ୟ । ଆଜିଠୁ ପ୍ରାୟ ୨୦ ହଜାର ବର୍ଷ ପରେ ମୃଗଶୀର୍ଷ ନକ୍ଷତ୍ର ପୁନର୍ବାର କ୍ରାନ୍ତିବୃତ୍ତରେ ଥରେ ପ୍ରଦକ୍ଷିଣ କରି ସମ୍ପାତ ବିନ୍ଦୁର ସମ୍ମୁଖୀନ ହେବ । ତେଣୁ ତିଳକଙ୍କ ଗଣିତ ଅନୁଯାୟୀ ୨୧ ହଜାର ବର୍ଷ ପରେ କୌଣସି ବିଦ୍ୟାର୍ଥୀ ଯଦି ବେଦ ରଚନାର କାଳ ନିର୍ଣ୍ଣୟ କରି ବସିବେ, ତାହାହେଲେ ତାହାକୁ ସେ ଏକ ହଜାର ବର୍ଷରେ ରଖିବେ । ଏହା ଯୁକ୍ତିସମ୍ମତ କି ?

(୩) ବର୍ତ୍ତମାନ ତୃତୀୟ ପ୍ରଶ୍ନ ହେଉଛି ଯେ ବେଦର କାଳ ନିର୍ଣ୍ଣୟ କଲାବେଳେ ଲୋକମାନ୍ୟ ତିଳକ ନିଜର ଦୃଢ ମତ ପୋଷଣ କରିଛନ୍ତି କି ? 'ମୃଗ' ଶବ୍ଦରୁ 'ମୃଗଶୀର୍ଷ' ନକ୍ଷତ୍ର କଥା ବ୍ୟାଖ୍ୟା କରିବା ବେଳେ, ପୁନର୍ବସୁ ନକ୍ଷତ୍ରକୁ ପ୍ରଥମ ସୃଷ୍ଟି ନକ୍ଷତ୍ର ବୋଲି ପ୍ରମାଣ କରି ଗଲାବେଳେ, ଆକାଶୀୟ ସଂସାରର ବିଭିନ୍ନ ପ୍ରାକୃତିକ ବର୍ଣ୍ଣନାକୁ ଐତିହାସିକ ରୂପ ଦେଲାବେଳେ, ଲୋକମାନ୍ୟ ଅତି ସନ୍ଦେଗ୍ଧ ଚିତ୍ତରେ ଏ ସବୁ ଲେଖିଛନ୍ତି । ପୁନଶ୍ଚ 'ମୃଗଶୀର୍ଷ' ଗ୍ରନ୍ଥର ମାତ୍ର ପାଞ୍ଚ ବର୍ଷ ପରେ ଏହି ସନ୍ଦେଗ୍ଧ ଭାବକୁ ପୂର୍ଣ୍ଣ ରୂପେ ପ୍ରକାଶ କରି 'ଉତ୍ତର ଧ୍ରୁବ ନିବାସ' ନାମକ ଗ୍ରନ୍ଥରେ ନିଜର ପ୍ରଥମ ମତର ପୂର୍ଣ୍ଣ ଖଣ୍ଡନ କରିଛନ୍ତି । ଏହି ରୂପେ

ବେଦ ରଚନାକୁ ଛ' ହଜାର ବର୍ଷ ତଳୁ ଉଠାଇ ନେଇ ଦ୍ୱିତୀୟ ଗ୍ରନ୍ଥରେ ଦଶ ହଜାର ବର୍ଷ ତଳର ବୋଲି ପ୍ରମାଣ କରିଛନ୍ତି । 'ମୃଗଶୀର୍ଷ' ଗ୍ରନ୍ଥ ରଚନା ପରେ ଏହି ଗ୍ରନ୍ଥ ରଚନା କରିବା ପାଇଁ ସେ ବେଦର ଏପରି କେତେକ ମନ୍ତ୍ର ସଂଗ୍ରହ କରିଛନ୍ତି ଯେଉଁଥିରେ ସେ ଉତ୍ତର ଧ୍ରୁବ (*North Pole*)ର ଆଭାସ ପାଇଛନ୍ତି । ଏହା ସତ୍ୟ ଯେ ବେଦର କେତେକ ମନ୍ତ୍ରରେ ଦୀର୍ଘ ରାତ୍ରି, ଦକ୍ଷିଣ ଦିଗରୁ ସୂର୍ଯ୍ୟୋଦୟର ପ୍ରତୀତି, ସପ୍ତର୍ଷି ନକ୍ଷତ୍ରର ବର୍ଣ୍ଣନା ଆଦି ଦେଖିବାକୁ ମିଳେ । ଏ ସୂତ୍ରରେ ବେଦର ଅଦ୍ଭୁତ ଜ୍ୟୋତିଷ ଓ ଗଣିତ ବିଜ୍ଞାନ ନିହିତ । ଭୂଗୋଳର ଉତ୍ତରଧ୍ରୁବ, ଚନ୍ଦ୍ର ସୂର୍ଯ୍ୟାଦି ଦେବ ପ୍ରଭୃତି ପ୍ରକୃତିର ନିତ୍ୟ ଉପାଦାନ ସଦୃଶ୍ୟ ନିତ୍ୟ । ସୁତରାଂ ନିତ୍ୟ ବେଦରେ ଏହି ଜ୍ଞାନର ସୂଚନା ଆବଶ୍ୟକ । ଲୋକମାନ୍ୟ ତିଲକଙ୍କ ମତ ଏହି ଯେ ଆର୍ଯ୍ୟମାନେ ଉତ୍ତର ମେରୁ ଅଞ୍ଚଳରେ ବସତି ସ୍ଥାପନ କଲାବେଳେ ସେଠାର ପ୍ରାକୃତିକ ଦୃଶ୍ୟ ଦେଖି ବେଦ ରଚିତ ହୋଇଥିଲା ଓ ଏହା କାଳ ପ୍ରାୟ ଦଶ ହଜାର ବର୍ଷ ପୂର୍ବର କଥା । ତାହାଙ୍କର ମତରେ ପ୍ରାୟ ଦଶ ହଜାର ବର୍ଷ ପୂର୍ବେ ଉତ୍ତର ଧ୍ରୁବ ଅଞ୍ଚଳରେ ହିମ ବୃଷ୍ଟି ହେବାରୁ ଆର୍ଯ୍ୟମାନେ ସେଠାରୁ ଭାରତ, ଇରାନ୍, ୟୁରୋପ ଆଦି ଦେଶକୁ ଗତି କଲେ । ହିମ ବୃଷ୍ଟି ପୂର୍ବରୁ ବେଦ ରଚିତ ହୋଇଥିଲା, ତେଣୁ ସେ ଲେଖିଛନ୍ତି—'ଋଗ୍‌ବେଦର ପ୍ରାଚୀନ ମନ୍ତ୍ର, ଋଷି ଓ ଦେବତା ହିମପୂର୍ବ କାଳୀନ, 'ହିମୋତ୍ତର କାଳୀନ' ନୁହନ୍ତି † ।' ମୃଗଶୀର୍ଷ ଗ୍ରନ୍ଥରେ ସେ

---

† *'In short the ancient hymns, poets or deities mentioned in the Rigveda must be referred to a bygone age and not to Post-glacial times.— Arctic Home in the Vedas*

ଲେଖିଛନ୍ତି ଯେ ପୂନର୍ବସୁ ନକ୍ଷତ୍ର ବସନ୍ତ ସମ୍ପାତରେ ଥିବାବେଳେ ବେଦ-ମନ୍ତ୍ର ରଚିତ ହୋଇ ନଥିଲା । ଏହି ସମୟକୁ ସେ ଆଜିଠୁ ସାତ ହଜାର ବର୍ଷ ପୂର୍ବର ବୋଲି ସାବ୍ୟସ୍ତ କରିଛନ୍ତି । କିନ୍ତୁ 'ଉତ୍ତର ଧ୍ରୁବ ନିବାସ' ଗ୍ରନ୍ଥରେ ବେଦ ରଚନା କାଳ ହିମପୂର୍ବକାଳୀନ ବୋଲି ସ୍ୱୀକାର କରିଛନ୍ତି । ଏହି ହିମକାଳ ସମ୍ବନ୍ଧରେ ଲେଖିଛନ୍ତି ଯେ ଦୁଇ ଗୋଲାର୍ଦ୍ଧରେ ହିମକାଳ ଓ ହିମାନ୍ତର କାଳ ଗୋଟିଏ ପରେ ଗୋଟିଏ ପ୍ରତି ୧୦,୫୦୦ ବର୍ଷରେ ଥରେ ଆସେ । ଏଣୁ ପ୍ରାୟ ଦଶ ହଜାର ବର୍ଷ ତଳେ ଉତ୍ତର ଧ୍ରୁବ ଅଞ୍ଚଳରେ ଯେଉଁ ଭୀଷଣ ହିମବୃଷ୍ଟି ଘଟିଥିଲା, ସେଥିରୁ ରକ୍ଷା ପାଇବା ଲାଗି ଆର୍ଯ୍ୟମାନେ ସେଠାରୁ ଅନ୍ୟାନ୍ୟ ଦେଶକୁ ପ୍ରତ୍ୟାଗମନ କଲେ ଓ ଏହା ପୂର୍ବରୁ ସେମାନଙ୍କ ବେଦ ରଚିତ ହୋଇଥିଲା । ତେବେ ପ୍ରଶ୍ନ ହେଉଛି ଯେ ବିଭିନ୍ନ ହିମକାଳ ମଧ୍ୟରୁ କେଉଁ କାଳବେଳେ ଆର୍ଯ୍ୟମାନେ ଉତ୍ତର-ଧ୍ରୁବ ତ୍ୟାଗ କରିଥିଲେ ? ତିଳକଙ୍କ ମନ୍ତବ୍ୟା-ନୁଯାୟୀ ପ୍ରତି ୧୦,୫୦୦ ବର୍ଷରେ ଉତ୍ତର-ଧ୍ରୁବ ଓ ଦକ୍ଷିଣମେରୁରେ ଗୋଟିଏ ପରେ ଗୋଟିଏ ହିମବୃଷ୍ଟି ଘଟେ । ଅର୍ଥାତ୍ ୧୦,୫୦୦ ବର୍ଷ ତଳେ ଉତ୍ତର-ଧ୍ରୁବରେ, ୨୧୦୦୦ ବର୍ଷ ତଳେ ଦକ୍ଷିଣମେରୁରେ ପୁନଶ୍ଚ ୩୧,୫୦୦ ବର୍ଷ ତଳେ ଉତ୍ତରମେରୁରେ ଏହିରୂପ ବ୍ୟବଧାନରେ ହିମବୃଷ୍ଟି ଘଟିଥିଲା ଓ ଘଟେ । ତେବେ ଉତ୍ତର ଧ୍ରୁବର କେଉଁ ହିମବୃଷ୍ଟି ବେଳେ ଆର୍ଯ୍ୟମାନେ ସେଠାରୁ ବହିର୍ଗତ ହେଲେ ? ଏହାକୁ ୧୦,୫୦୦ ବର୍ଷରେ ସୀମିତ କରିବା ପାଇଁ ଯୁକ୍ତି କ'ଣ ? ତିଳକ ମହୋଦୟ ଏହାର କାରଣ ଦର୍ଶାଇନାହାନ୍ତି । ନିଜର ପୂର୍ବ ଗ୍ରନ୍ଥ 'ମୃଗଶୀର୍ଷ'ରେ ବେଦ ରଚନା କାଳକୁ ଛ'ହଜାର ବର୍ଷ ପୂର୍ବର ବୋଲି ଗ୍ରହଣ କରିଥିବାରୁ, 'ଉତ୍ତର ଧ୍ରୁବ ନିବାସ' ଗ୍ରନ୍ଥରେ ଏହାକୁ ଅତ୍ୟନ୍ତ ଭୂତକାଳୀନ ହିମବୃଷ୍ଟି

ସମୟକୁ ନେଇ ଗତ ଦଶ ହଜାର ବର୍ଷ ପୂର୍ବର ହିମବୃଷ୍ଟି ପର୍ଯ୍ୟନ୍ତ ନେଇଛନ୍ତି । ମନୁଷ୍ୟଙ୍କୁ ଉପଦ୍ରୁତ କରିବା ସ୍ଥାନ-ତ୍ୟାଗ କରାଇବା ପାଇଁ ଅତ୍ୟଳ୍ପ ପରିମାଣ ହିମପାତ ଯଥେଷ୍ଟ ହେଉଥିବା ସ୍ଥଳେ, ପୂର୍ବର ବହୁ ହିମ-ବୃଷ୍ଟି ବେଳେ ଆର୍ଯ୍ୟମାନେ ଉତ୍ତର-ଧ୍ରୁବ ତ୍ୟାଗ ନକରି ଗତ ହିମବୃଷ୍ଟି ବେଳେ କିପରି ତାହା କଲେ, ଏହା ତିଳକ ମହୋଦୟ ଦର୍ଶାଇନାହାନ୍ତି ।

ହିମଯୁଗ *(Glacial Period)* ସମ୍ବନ୍ଧରେ ବିଭିନ୍ନ ଭୂଗର୍ଭ-ଶାସ୍ତ୍ରବିତ୍ ବିଭିନ୍ନ ମତ ପୋଷଣ କରିଛନ୍ତି, କିନ୍ତୁ କେହିହେଲେ ଏହାକୁ ଦୁଇ ଲକ୍ଷ ବର୍ଷର ପୂର୍ବବର୍ତ୍ତୀ ବୋଲି ସ୍ୱୀକାର କରିନାହାନ୍ତି । ପ୍ରସିଦ୍ଧ ଭୂଗର୍ଭଶାସ୍ତ୍ରୀ ଡାଃ କ୍ରୋଲ୍‌ଙ୍କ ମତ ଅନୁଯାୟୀ ଶେଷ ହିମଯୁଗ ଦୁଇଲକ୍ଷ ଚାଳିଶ ହଜାର ବର୍ଷ ତଳେ ଆରମ୍ଭ ହୋଇ ଅଶୀଏ ହଜାର ବର୍ଷ ପର୍ଯ୍ୟନ୍ତ ହୋଇଥିଲା । ତିଳକ ମହୋଦୟ ଏହାର ଉଲ୍ଲେଖ କରିଥିଲେ ମଧ୍ୟ, ବିଭିନ୍ନ ଅଗ୍ରହଣୀୟ କାରଣ ଦର୍ଶାଇ ଏହି ସମୟକୁ ଗ୍ରହଣ କରିନାହାନ୍ତି । 'ଉତ୍ତର ଧ୍ରୁବ ନିବାସ' ଗ୍ରନ୍ଥ ସମ୍ବନ୍ଧରେ ନିମ୍ନଲିଖିତ ମନ୍ତବ୍ୟ ଦିଆଯାଇ ପାରେ—

(କ) ମନ୍ତ୍ରର ଋଷି ମନ୍ତ୍ରସ୍ରଷ୍ଟା ନୁହନ୍ତି—ସେ ମନ୍ତ୍ରଦ୍ରଷ୍ଟା । ସୃଷ୍ଟି ଆରମ୍ଭରେ ମନ୍ତ୍ରଦ୍ରଷ୍ଟା ଋଷିମାନେ ଅପୌରୁଷେୟ ମନ୍ତ୍ରକୁ ମନନ କରିଥିଲେ । ସୁତରାଂ ମନ୍ତ୍ରର ନିର୍ମାତା ସମ୍ବନ୍ଧରେ ଆଲୋଚନା କରିବା ନିରର୍ଥକ ।

(ଖ) ବେଦର ବିଭିନ୍ନ ମନ୍ତ୍ରରେ ବିଭିନ୍ନ ତଥ୍ୟର ସଙ୍କେତ ରହିଛି । ବେଦର ପ୍ରାପ୍ତ କୋଡ଼ିଏ ହଜାର ମନ୍ତ୍ର ମଧ୍ୟରୁ ଗୋଟିଏ,

ଦାନ୍ତିରୁ ଦୀର୍ଘରାତ୍ର ଆଦି ବର୍ଣ୍ଣନା ଦେଖି ଦୀର୍ଘରାତ୍ରବିଶିଷ୍ଟ ଉତ୍ତର-ଧ୍ରୁବରେ ଏ ସବୁ ମନ୍ତ୍ର ରଚିତ ହୋଇଥିଲା ବୋଲି କଳ୍ପନା କରିବା ହାସ୍ୟାସ୍ପଦ । ତାହାହେଲେ ବେଦର କେଉଁଠି ଚନ୍ଦ୍ରଲୋକ ସମ୍ବନ୍ଧୀୟ ମନ୍ତ୍ରରୁ ଚନ୍ଦ୍ରଲୋକରେ ବେଦ ରଚିତ ହୋଇଥିବା, କେଉଁଠି ସମୁଦ୍ର ସମ୍ବନ୍ଧୀୟ ବର୍ଣ୍ଣନାରୁ ସମୁଦ୍ରରେ ବେଦ ରଚିତ ହୋଇଥିବା କଳ୍ପନା କରିବା ଅଜ୍ଞତା ଛଡ଼ା ଆଉ କିଛି ହେବ ନାହିଁ । ବେଦରେ ଲୌକିକ ଓ ପାରଲୌକିକ ଜ୍ଞାନର ସମୁଦ୍ର ପଡ଼ିଛି । ମନୁଷ୍ୟ ପାଇଁ ଅଭିପ୍ରେତ ଆଦି-ଜ୍ଞାନ ହେବା ହେତୁ, ଏହା ସ୍ୱାଭାବିକ । ସାଧାରଣ ଗ୍ଲୋବ୍ *(Globe)*, ନକ୍ସା, କୁଠାକାଠି ଆଦିର ସହାୟତାରେ ଘରେ ବସି ବିଭିନ୍ନ ଭୂଗୋଳଶାସ୍ତ୍ରର ଆଲୋଚନା କରାଯାଇ ପାରୁଥିବା ସ୍ଥଳେ, ଉତ୍ତର-ଧ୍ରୁବ ସମ୍ବନ୍ଧେ ଜ୍ଞାନ ପାଇବା ପାଇଁ ଆର୍ଯ୍ୟମାନେ ଯେ ସେଠାକୁ ଯାଇ ସେଠାର ଦୃଶ୍ୟ ଦେଖି ମନ୍ତ୍ର ରଚନା କଲେ— ଏଭଳି ମନ୍ତବ୍ୟ ଦେବା ବୁଦ୍ଧି-ସମ୍ମତ **ନୁହେ** । ଜ୍ଞାନର ଆଦି ଗୁରୁ— 'ପୂର୍ବେଷାମପି ଗୁରୁଃ'— ପରମେଶ୍ୱରଙ୍କ ପ୍ରେରଣା ରୂପୀ ବେଦରେ ସକଳ ଗୂଢ଼ ଜ୍ଞାନର ସଙ୍କେତ ରହିଛି ।

(ଗ) ବେଦ ପରି ଆଦି ଓ ଉଚ୍ଚତମ ଜ୍ଞାନର ଉଦ୍‌ଗୀରଣ ପାଇଁ ଉତ୍ତର-ଧ୍ରୁବ ପରି ବିକଟ ସ୍ଥଳ ଯେ କିପରି ଉତ୍କୃଷ୍ଟ ସ୍ଥଳ, ଏହା ବୁଝାଯାଉ ନାହିଁ । ତେର ଲକ୍ଷ ବର୍ଷ ତଳର ରାମାୟଣ ଯୁଗରେ ସୁଗ୍ରୀବ, ସୀତାଙ୍କୁ ଅନ୍ୱେଷଣ କରୁଥିବା ବାନର-ଜାତି ମନୁଷ୍ୟମାନଙ୍କୁ କହୁଛନ୍ତି— 'ହୁସିଆର୍, ଉତ୍ତର ଧ୍ରୁବ ଦିଗକୁ ଯାଅ ନାହିଁ । ତାହା ଅନ୍ଧକାରମୟ ଓ ତା'ପର ଦେଶ ସମ୍ବନ୍ଧରେ କିଛି ମାତ୍ର ଜ୍ଞାନ ଉପଲବ୍ଧ ନୁହେ'

(ବାଲ୍ମୀକି ରାମାୟଣ କି. ୪୩, ୫୭) ।୧ପର ମନେଲ. ଦଶ ହଜାର ବର୍ଷ ତଳର ଆର୍ଯ୍ୟମାନେ ସେଠାକୁ ଯାଇ ବେଦ ରଚନା କରିବା ଅସମ୍ଭବ । ତିଳକଙ୍କ 'ଉତ୍ତର ଧ୍ରୁବ ନିବାସ' ଓ ମେକ୍ସମୁଲରର ଆଦିଙ୍କ 'ମଧ୍ୟ ଏସିଆ'ତଥ୍ୟ ବର୍ତ୍ତମାନ ପଣ୍ଡିତଙ୍କ ଦ୍ୱାରା ଖଣ୍ଡିତ ହୋଇ ସାରିଛି । ତ୍ରିବିଷ୍ଟପ (ତିବ୍ବତ) ଓ ଆର୍ଯ୍ୟାବର୍ତ୍ତହିଁ ଆଦି-ମାନବର ଜନ୍ମସ୍ଥଳ । ଆଦି-ଜ୍ଞାନ ରୂପେ ବେଦର ଏଠାରେହିଁ ଉଦ୍ଭବ ।

(ଘ) ତିଳକ ମହୋଦୟ 'ଉତ୍ତର-ଧ୍ରୁବ ନିବାସ' ଗ୍ରନ୍ଥରେ ଲେଖିଛନ୍ତି, 'ଉତ୍ତର ଧ୍ରୁବରେ ୧ ବର୍ଷର ଯଜ୍ଞ ସମୟରେ ସକାଳରେ ସୋମରସ ବାହାର କରାଯାଇ ତାହାକୁ ଶୁଦ୍ଧ କରାଯାଉଥିଲା । ଏହି ରସକୁ ଅସୁରଙ୍କୁ ପରାଭୂତ କରିବା ପାଇଁ ଇନ୍ଦ୍ରଙ୍କୁ ସମର୍ପଣ କରାଯାଉଥିଲା ।' ପ୍ରସିଦ୍ଧ ପଣ୍ଡିତ ନାରାୟଣ ଭବାନ ରାଓ ପାବଗୀ ତିଳକଙ୍କ ମତକୁ ଖଣ୍ଡନ କରିବାକୁ ଯାଇ ତାହାଙ୍କ ଲିଖିତ 'ଆର୍ଯ୍ୟାବର୍ତ୍ତାଂଚିଲ ଆର୍ଯ୍ୟାଂଚୀ ଜନ୍ମଭୂମି' ମରାଠୀ ଗ୍ରନ୍ଥରେ ଏ ସମ୍ବନ୍ଧରେ ଲେଖିଛନ୍ତି ଯେ ସୋମଲତା ଉତ୍ତର ଧ୍ରୁବରେ ହୁଏ ନାହିଁ । ଏଣୁ ତିଳକ ମହୋଦୟଙ୍କ ମତରେ ପ୍ରାଥମିକ ଭୁଲ ରହୁଛି ।

(ଙ) ପଣ୍ଡିତ ଉମେଶଚନ୍ଦ୍ର ବିଦ୍ୟାରତ୍ନ 'ମାନବେର ଆଦି ଜନ୍ମଭୂମି' ଗ୍ରନ୍ଥରେ ତିଳକଙ୍କ ମତକୁ ଖଣ୍ଡନ କରିଛନ୍ତି । ସେ ଲେଖିଛନ୍ତି, 'ତିଳକ ମହୋଦୟଙ୍କ ମତ ସଂଶୋଧନ ପାଇଁ ମୁଁ ଗତବର୍ଷ ତାଙ୍କର ବାସସ୍ଥଳକୁ ଯାଇଥିଲି ଓ ତାହାଙ୍କ ସହ ପାଞ୍ଚ ଦିନ ପର୍ଯ୍ୟନ୍ତ ଏହା ସମ୍ବନ୍ଧରେ ଆଲୋଚନା କରିଥିଲି । ସେ କହିଲେ, "ମୁଁ ମୂଳ ବେଦ ପଢିନାହାନ୍ତି,

ପାଶ୍ଚାତ୍ୟ ପଣ୍ଡିତଙ୍କ ଅନୁବାଦ ମାତ୍ର ପଢ଼ିଛନ୍ତି ।" ଏହିପରି ସ୍ଥଳରେ ତିଳକଙ୍କ ମତକୁ ଦୂଷଣ କରାଯାଇ ନପାରେ । ପଣ୍ଡିତ ବିଦ୍ୟାରତ୍ନ ଲେଖିଛନ୍ତି— 'ସାମବେଦେର ବୟଃକ୍ରମ ଲକ୍ଷବର୍ଷେରେର ନ୍ୟୁନ ହଇବେ ନା ।' (ମାନବେର ଆଦି ଜନ୍ମଭୂମି) ।

ବେଦ ରଚନା କାଳ ନିର୍ଣ୍ଣୟ କଲାବେଳେ ଲୋକମାନ୍ୟ ତିଳକ ପାଶ୍ଚାତ୍ୟ ସମାଲୋଚକଙ୍କ ସାମ୍ପ୍ରଦାୟିକ ଶ୍ରେଣୀ ଗ୍ରହଣ ନକରି ସେହି ଶ୍ରେଣୀ ସ୍ଥିତରେ ଜ୍ୟୋତିଷ, ଭୂତତ୍ତ୍ୱ ଓ ବେଦମନ୍ତ୍ର ଅର୍ଥର ସହାୟତା ନେଇଥିଲେ । ଏହି ଦୃଷ୍ଟିରେ ସେ ଆଧୁନିକ ବିଦ୍ୱାନମାନଙ୍କ ଅଗ୍ରଣୀ ଥିଲେ । ବେଦର କାଳ ସମ୍ବନ୍ଧେ ପାଶ୍ଚାତ୍ୟ ଲେଖକଙ୍କ ପ୍ରାୟ ଚାରି ହଜାର ବର୍ଷକୁ ଲୋକମାନ୍ୟ ଦଶ ହଜାର ବର୍ଷଯାଏ ପଛକୁ ପହଞ୍ଚାଇଥିଲେ । ଏହିହେତୁ ଭାରତୀୟ ସ୍ୱାଧୀନତା ଆନ୍ଦୋଳନର କର୍ଣ୍ଣଧାର ଲୋକମାନ୍ୟ ତିଳକ ଭାରତୀୟ ସାଂସ୍କୃତିକ ପରମ୍ପରାର କର୍ଣ୍ଣଧାର ରୂପେ ଅଧିକ ସ୍ମରଣୀୟ ହୋଇ ରହିବେ । ଲୋକମାନ୍ୟଙ୍କ ପ୍ରତି ବିଶିଷ୍ଟ ସମ୍ମାନ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ, ବେଦ-ମନ୍ତ୍ରରୁ ତାହାଙ୍କ ଗବେଷଣା କଳ୍ପନା ଓ ଯେଉଁଥିରୁ କୋଟି କୋଟି ବର୍ଷର ଆଦିକାଳୀନ ବେଦକୁ ଦଶ ହଜାର ବର୍ଷରେ ସୀମିତ ଗଣନା ସହ ଏକମତ ହେବା ସମ୍ଭବ ହେଉ ନାହିଁ ।

## ଅବିନାଶ ଚନ୍ଦ୍ର ଦାସଙ୍କ ମତର ସମୀକ୍ଷା

ପ୍ରସିଦ୍ଧ ପଣ୍ଡିତ ଅବିନାଶ ଚନ୍ଦ୍ର ଦାସ ବେଦର କାଳକୁ ତିଳକଙ୍କ ମତଠାରୁ ବହୁ ପଛକୁ ନେଇ ଦୁଇ, ତିନି ଲକ୍ଷ ବର୍ଷ ପୂର୍ବରେ

ଲେଖିଛନ୍ତି । ଏଥିପାଇଁ ସେ 'ଋଗ୍‌ବେଦୀୟ ଭାରତ' *(Rigvedic India)* ଗ୍ରନ୍ଥ ପ୍ରଣୟନ କରିଛନ୍ତି । ଠିଲକମାନ୍ୟଙ୍କ ପରି ଦାସ ମହାଶୟ କେତେକ ବେଦମନ୍ତ୍ରର ସଂଗ୍ରହ କରିଛନ୍ତି ଯେଉଁଥିରୁ ସେ ଯୁକ୍ତି କରିଛନ୍ତି ଯେ ଆର୍ଯ୍ୟମାନେ 'ସପ୍ତସିନ୍ଧୁ' (ଭାରତ)ରେ ଥିବା ବେଳେ ବେଦ ପ୍ରକାଶିତ ହୋଇଥିଲା । ଅବିନାଶ ବାବୁଙ୍କ ଯୁକ୍ତିପ୍ରଣାଳୀ ଲୋକମାନ୍ୟଙ୍କ ପରି ଇତିହାସ-ପରୀକ୍ଷା ହୋଇଥିବାରୁ ତାହାର ସମୀକ୍ଷା ଆବଶ୍ୟକ । କେତେକ ବେଦମନ୍ତ୍ରର 'ସପ୍ତସିନ୍ଧୁ' 'ସରସ୍ୱତୀ' ଆଦି ଶବ୍ଦରୁ ଅବିନାଶ ବାବୁ ସପ୍ତସିନ୍ଧୁ ଦେଶ ଓ ସରସ୍ୱତୀ ନଦୀ କଥା କଳ୍ପନା କରନ୍ତି । ଭୂତତ୍ତ୍ୱ ଦୃଷ୍ଟିରୁ ଏହି ସବୁର ଅସ୍ତିତ୍ୱ ଥିବା ଐତିହାସିକ କାଳକୁ ସେ ବେଦର କାଳ ବୋଲି ନିର୍ଣ୍ଣୟ କରିଛନ୍ତି । ବେଦକୁ ଅପୌରୁଷେୟ ବୋଲି ସ୍ୱୀକାର କଲେ ବି, ତାହାର କାଳ ନିରୂପଣ ବେଳକୁ ସେ ତାହାକୁ ଐତିହାସିକ ଦୃଷ୍ଟିକୋଣରେ ଆଲୋଚନା କରିଛନ୍ତି । ବେଦ ମନ୍ତ୍ରର କୌଣସି ଶବ୍ଦରୁ କୌଣସି ଐତିହାସିକ ରାଜା, ଦେଶ, ନଗର, ନଦୀ, ପର୍ବତ ଆଦି ଅର୍ଥ ହୋଇ ନପାରେ ।

ଅବିନାଶ ବାବୁ ଲେଖିଛନ୍ତି— 'ଋଗ୍‌ବେଦର କେତେକ ମନ୍ତ୍ରରେ 'ସପ୍ତସିନ୍ଧୁ' ଦେଶର ଜଳ ଓ ସ୍ଥଳର ବିଭାଗ ସମ୍ବନ୍ଧରେ ସାକ୍ଷ୍ୟ ଓ ସୂଚନା ଥିବାରୁ, ଏହି ସବୁର ଅସ୍ତିତ୍ୱ ଥିବା ପ୍ରାଚୀନ ଐତିହାସିକ କାଳକୁ ଆଲୋଚନା କରିବାକୁ ହେବ । ଭୂତତ୍ତ୍ୱର ଗବେଷଣାରୁ ଜଣାଯାଏ ଯେ ବର୍ତ୍ତମାନର ରାଜପୁତାନା ଓ ଗାଙ୍ଗେୟ ସମତଳ ଭୂମି ତୃତୀୟ ଯୁଗ *(Tertiary Era)* ଓ ମିଓସିନ ଯୁଗ *(Mioscene Epoch)* ବେଳେ ଜଳମଗ୍ନ ଥିଲା । ଋଗ୍‌ବେଦର କେତେକ ମନ୍ତ୍ରରେ ଏହି ସବୁ ସମୁଦ୍ରର

ବର୍ଣ୍ଣନା ଥିବା ହେତୁ, ବେଦର କାଳକୁ ଏହି ସମସ୍ତ ଯୁଗ ଅର୍ଥାତ୍ ଅନ୍ତତଃ ତିନି ଚାରି ଲକ୍ଷ ବର୍ଷ ପୂର୍ବର ବୋଲି ମାନିବାକୁ ହେବ । ଏହି ସବୁ ଯୁଗରେ ମନୁଷ୍ୟ ପୃଥିବୀ ଓ ଭାରତରେ ଯୁଗ ଯୁଗାନ୍ତରେ ବାସ କରୁଥିଲେ ବୋଲି ଭୂତତ୍ତ୍ୱ ପ୍ରମାଣ ରହିଛି † ।'

ମିଓସିନ୍ (*Mioscene*) ଓ ପ୍ଲିଓସିନ୍ (*Plioscene*) ଯୁଗରେ ବା ଅନ୍ତତଃ ପ୍ରାୟ ତିନି, ଚାରି ଲକ୍ଷ ବର୍ଷ ପୂର୍ବେ ମନୁଷ୍ୟ ଜୀବିତ ଥିଲେ— ଏହି ଭୂତତ୍ତ୍ୱ ସହ ଏକମତ ନହେବାର କାରଣ ନାହିଁ । ବରଂ ଏହି ଯୁଗମାନଙ୍କର ବହୁ ପୂର୍ବରୁ ମନୁଷ୍ୟର ଆଦ୍ୟ, ଅଯୋନିଜ ସୃଷ୍ଟି ହୋଇଥିଲା । କୌଣସି ମଧ୍ୟବର୍ତ୍ତୀ ଯୁଗରେ ବର୍ତ୍ତମାନର ରାଜପୁତାନା ଓ ଗାଙ୍ଗେୟ ସମଭୂମି ଜଳମଗ୍ନ ଥିବା ତଥ୍ୟ ବି ସତ୍ୟ ହୋଇପାରେ । ଭୂତତ୍ତ୍ୱର ସକଳ ଗବେଷଣା ବହୁ ଅନିଶ୍ଚିତ ତଥ୍ୟମାନଙ୍କ ଉପରେ ଆଶ୍ରିତ ହେଲେ ବି ଏହା ସବୁ ପ୍ରଶଂସନୀୟ । ପରନ୍ତୁ କୌଣସି ଐତିହାସିକ ଭୂତତ୍ତ୍ୱ-ଯୁଗର ମନୁଷ୍ୟ, ନଦୀ, ପର୍ବତ, ଦେଶାଦିର ନାମ, ବେଦମନ୍ତ୍ରରୁ ଅର୍ଥ କରିବା ପଦ୍ଧତି ସହ ଏକମତ ହେବା ସମ୍ଭବ ନୁହେଁ । ବେଦ ଅପୌରୁଷେୟ, ସୃଷ୍ଟ୍ୟାଦ୍ୟରେ ଈଶ୍ୱର-ନିଃଶ୍ୱସିତ । ମନ୍ତ୍ରଦ୍ରଷ୍ଟା ଋଷିମାନେ ଏ ସବୁର ଅନ୍ତଃଦର୍ଶନ କରିଥିଲେ । ତେଣୁ ଅପୌରୁଷେୟ ବେଦରେ ଐତିହାସିକ କାଳର ଦର୍ଶନ କରିବା ଅବୈଦିକ । ଅବିନାଶ ବାବୁଙ୍କ ମତରେ ବେଦ ସେହି ସମୟରେ ପ୍ରକାଶ ହୋଇଥିଲା, ଯେଉଁ ସମୟରେ ସରସ୍ୱତୀ ନଦୀ ହିମାଳୟରୁ ନିର୍ଗତ ହୋଇ ରାଜପୁତାନାର ସମୁଦ୍ରରେ ପଡ଼ୁଥିଲା । ବର୍ତ୍ତମାନ ସରସ୍ୱତୀ ନଦୀର ଅସ୍ତିତ୍ୱ ନାହିଁ ଓ ରାଜପୁତାନାର ସମୁଦ୍ରରେ ଥିବା ମରୁଭୂମି ମୁଣ୍ଡ ଟେକିଛି । କେତେକ ବେଦ

† Vide— Rig Vedic India

ମନ୍ତ୍ରର 'ସରସ୍ୱତୀ' ଶବ୍ଦରୁ ଅବିନାଶ ବାବୁ ଐତିହାସିକ ସରସ୍ୱତୀ ନଦୀ ବୋଲି ଅର୍ଥ କରିଛନ୍ତି ଓ ସେଥିରୁ ଗବେଷଣା ଆରମ୍ଭ କରିଛନ୍ତି ।

ବୈଦିକ ଶବ୍ଦର ଅର୍ଥ କରିବା ବେଳେ ଯୌଗିକ ଅର୍ଥକୁ ଗ୍ରହଣ କରି, ପରବର୍ତ୍ତୀକାଳୀନ ମିଶ୍ରିତ ଅର୍ଥକୁ ବର୍ଜନ କରିବା ଏତେ ମହତ୍ତ୍ୱ-ପୂର୍ଣ୍ଣ ଯେ, ଏହାର ପୁନରୁକ୍ତି ହେଲେ ବି କରିଯାଉଛୁ । 'ସରସ୍ୱତୀ' ଶବ୍ଦର ଅର୍ଥ କରିବାକୁ ଯାଇ ବେଦର ବ୍ୟାଖ୍ୟାତା ବ୍ରାହ୍ମଣ ଗ୍ରନ୍ଥ ବିଭିନ୍ନ ସ୍ଥଳରେ ଏହାର ତେରଟି ଅର୍ଥ କରିଛନ୍ତି— ବାଣୀ, ଅଗ୍ନିର ବୁଦ୍‌ବୁଦ୍ ରୂପ, ଜିହ୍ୱା, ଗୋ, ରଶ୍ମି, ପୃଥିବୀ, ଇନ୍ଦ୍ରିୟ, ସ୍ତ୍ରୀ, ଅମାବାସ୍ୟା, ପଶୁସମୃଦ୍ଧ, ବଜ୍ର, ପରମେଶ୍ୱର, ଅକ୍ଷିର କଳାଂଶ (ଶତପଥ ବ୍ରାହ୍ମଣ) । ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ ବ୍ରାହ୍ମଣ ଗ୍ରନ୍ଥକାର ଯାସ୍କାଚାର୍ଯ୍ୟଙ୍କ କାଳ ପର୍ଯ୍ୟନ୍ତ ବେଦାର୍ଥରେ ଐତିହାସିକ ସରସ୍ୱତୀ ନଦୀର କଳ୍ପନା କରାଯାଇ ନଥିଲା । ନିରୁକ୍ତକାର ଯାସ୍କାଚାର୍ଯ୍ୟ ଲେଖିଛନ୍ତି— 'ତତ୍ର ସରସ୍ୱତୀତ୍ୟେତସ୍ୟ ନଦୀବତ୍ ଦେବତାବଚ୍ଚ ନିଗମାଭବନ୍ତି ।' ଅର୍ଥାତ୍ ବେଦମନ୍ତ୍ରରେ ସରସ୍ୱତୀକୁ ନଦୀ ଓ ଦେବତା ରୂପେ ପ୍ରୟୋଗ କରାଯାଇଛି । ମନ୍ତ୍ରର ଦେବତା ପ୍ରକରଣରେ ଏହା ସୂଚିତ ହୋଇଛି ଯେ, ଦେବତା ମନ୍ତ୍ରର ପ୍ରତିପାଦ୍ୟ ବସ୍ତୁ । ଅର୍ଥାତ୍ ଉପରୋକ୍ତ ସରସ୍ୱତୀ ଶବ୍ଦର ବିଭିନ୍ନ ଅର୍ଥ ମଧ୍ୟରୁ କେଉଁ ଗୋଟିଏ ଅର୍ଥ କୌଣସି ମନ୍ତ୍ରର ପ୍ରତିପାଦ୍ୟ ବସ୍ତୁ ହେଲେ, ସେ ମନ୍ତ୍ରର ଦେବତା 'ସରସ୍ୱତୀ' ବୋଲି ମନ୍ତ୍ରଦ୍ରଷ୍ଟା ଋଷି ବାଛିଛନ୍ତି । ଦ୍ୱିତୀୟରେ ସରସ୍ୱତୀ ଶବ୍ଦର ନଦୀ ରୂପ ପ୍ରୟୋଗ । ଏହି ନଦୀ ଲୌକିକ ନଦୀ ରୂପେ ବେଦମନ୍ତ୍ରରେ ବ୍ୟବହୃତ ନହୋଇ ଇନ୍ଦ୍ରିୟ, ବାଣୀ ଓ ସୂର୍ଯ୍ୟକିରଣ ଅର୍ଥରେ ବ୍ୟବହୃତ ହୋଇଛି ।

ଋଗ୍‌ବେଦର କେତେକ ସ୍ଥଳରେ 'ସପ୍ତ-ସିନ୍ଧବଃ' ଓ 'ସପ୍ତ ନଦ୍ୟଃ' ବ୍ୟବହୃତ ହୋଇଛି । ଏ ମଧ୍ୟରୁ କେତେକ ସ୍ଥଳରେ 'ସପ୍ତ' ଶବ୍ଦର ଅର୍ଥ ସର୍ପଣଶୀଳ, ଅନ୍ୟ କେତେକ ସ୍ଥଳରେ ସଂଖ୍ୟାବାଚକ ସାତ । ଯେଉଁ ସ୍ଥଳରେ ଏହା ସଂଖ୍ୟାବାଚକ, ସେଠାରେ ଉପରୋକ୍ତ ଶବ୍ଦମାନଙ୍କ ଅର୍ଥ ଆଧ୍ୟାତ୍ମିକ । ଯେପରି ଆତ୍ମାଗ୍ନିର ଉଦ୍‌ଗମ ସ୍ଥଳରୁ ସପ୍ତ ପ୍ରବାହ—ଅହଙ୍କାର, ମନ, ଶ୍ରୋତ୍ର, ସ୍ପର୍ଶ, ନେତ୍ର, ରସନା ଓ ଘ୍ରାଣ । ସୁଷୁପ୍ତା-ବସ୍ଥାରେ ଏହି ସପ୍ତ ପ୍ରବାହ ଅନ୍ତର୍ମୁଖୀ ହୋଇ ଆତ୍ମାରେ ମଗ୍ନ ହୁଅନ୍ତି ଓ ଜାଗ୍ରତାବସ୍ଥାରେ ବହୁମୁଖୀ ହୋଇ ପ୍ରବାହିତ ହୁଅନ୍ତି । ମହାଭାଷ୍ୟକର୍ତ୍ତା ପତଞ୍ଜଳି ଋଷି ଋଗ୍‌ବେଦର ଗୋଟିଏ ମନ୍ତ୍ର (୮,୬୯,୧୨)ର 'ସପ୍ତସିନ୍ଧୁ' ଶବ୍ଦରୁ ଅର୍ଥ କରିଛନ୍ତି— ପ୍ରାଣ ଶକ୍ତିର ବିଭାଗ ସମାନ ଶବ୍ଦଶାସ୍ତ୍ରର ସାତ ବିଭକ୍ତି । ବିସ୍ତାର ଭୟରେ ଏହାର ବର୍ଣ୍ଣନା ଏଠାରେ କରାଯାଉ ନାହିଁ । ଋଗ୍‌ବେଦର ୪,୨୮,୧ ରେ ଇନ୍ଦ୍ରରୂପୀ ଆତ୍ମା ସପ୍ତସିନ୍ଧୁ ବା ସାତ ଇନ୍ଦ୍ରିୟର ପ୍ରବାହ ମାର୍ଗକୁ ନିୟନ୍ତ୍ରଣ କରିବା କଥା ସ୍ପଷ୍ଟ ହୋଇଛି । ଏ ସବୁ ହେଉଛନ୍ତି—ବାକ୍‌ସରସ୍ୱତୀ, ନାସିକା ପ୍ରବାହିତ ଗଙ୍ଗା, ଶ୍ରବଣ-ଯମୁନା, ସ୍ପର୍ଶେନ୍ଦ୍ରିୟ-ଶତଦ୍ରୁ, ମୂର୍ଦ୍ଧା-ବିପାଶା ଆଦି । ସ୍ୱର୍ଗୀୟ ଅରବିନ୍ଦ ମଧ୍ୟ 'ସପ୍ତନଦ୍ୟଃ' ଶବ୍ଦରୁ ଭୌଗୋଳିକ ଅନିତ୍ୟ ନଦୀମାନଙ୍କ ଅର୍ଥକୁ ସ୍ୱୀକାର କରିନାହାନ୍ତି ।

ଅବିନାଶ ବାବୁ ଋଗ୍‌ବେଦର ଯେଉଁ କେତୋଟି ମନ୍ତ୍ରରୁ ସରସ୍ୱତୀ ନଦୀ ହିମାଳୟରୁ ବାହାରି ରାଜପୁତାନା ସମୁଦ୍ରରେ ପଡୁଥିବା କାଳର ଅନୁମାନ କରିଛନ୍ତି, ତନ୍ମଧ୍ୟରୁ କେତୋଟିର ସମୀକ୍ଷା ତଳେ ଦିଆଗଲା ।

(୧) ଏକା ଚେତତ୍ ସରସ୍ୱତୀ ନଦୀଂଶୁଚିର୍ଯତୀ ଗିରିଭ୍ୟ ଆ ସମୁଦ୍ରାତ୍ । ରାୟଶ୍ଚେତନ୍ତୀ ଭୁବନସ୍ୟ ଭୂରେର୍ଘୃତଂ ପୟୋ ଦୁଦୁହେ ନାହୁଷାୟ ॥ (ଋକ୍ ୭,୯୫,୨)

ଅବିନାଶ ବାବୁ ଏହାର ଅର୍ଥ କରିଛନ୍ତି—ନଦୀମାନଙ୍କ ମଧ୍ୟରେ ଶୁଦ୍ଧ, ପର୍ବତରୁ ସମୁଦ୍ର ପର୍ଯ୍ୟନ୍ତ ବହୁଥିବା ଏକ ସରସ୍ୱତୀ ନଦୀ ପୃଥିବୀରେ ବହୁ ଧନ ସମ୍ପଦ ଦୁଗ୍ଧଘୃତାଦି ପ୍ରଦାନ କରେ । ପରନ୍ତୁ ଏହାର ପ୍ରକୃତ ଅର୍ଥ ହେଉଛି— ଯେଉଁରୂପେ ନଦୀ ପର୍ବତରୁ ନିର୍ଗତ ହୋଇ ସମୁଦ୍ର ଯାଏ ବହେ, ସେହିରୂପେ ଉତ୍ତମ ଜ୍ଞାନସମ୍ପନ୍ନା ପ୍ରଭୁବାଣୀ ( ସରସ୍ୱତୀ ) ଜ୍ଞାନୋପଦେଷ୍ଟା ପରମେଶ୍ୱରଙ୍କଠାରୁ ସମୁଦ୍ରରୂପୀ ଜନ-ସମୁଦ୍ର ମଧ୍ୟରେ ପ୍ରବେଶ କରେ । ଏହା ପ୍ରଭୂତ ଐଶ୍ୱର୍ଯ୍ୟ, ରସତୁଲ୍ୟ ଜ୍ଞାନ ପ୍ରଦାନ କରେ ।

(୨) ବାତସ୍ୟାଶ୍ୱୋ ବାୟୋଃ ସଖାଽଥୋ ଦେବେଷିତୋ ମୁନିଃ । ଉଭୌ ସମୁଦ୍ରାବା କ୍ଷେତି ଯଶ୍ଚ ପୂର୍ବ ଉତାପରଃ ॥ (ଋକ୍ ୧୦, ୧୩୬,୫)

ଏଥିରୁ ସେ ଅର୍ଥ କରିଛନ୍ତି ଯେ ସେହି ସମୟରେ ସୂର୍ଯ୍ୟ ଆରବ ସାଗର ଓ ରାଜପୁତାନାର ସାଗର ଉପରେ ତରଙ୍ଗିତ ହେଉଥିଲା । ପରନ୍ତୁ ଏହି ମନ୍ତ୍ରରେ ପୂର୍ବ ଦିଗରେ ସୂର୍ଯ୍ୟୋଦୟ ଓ ପଶ୍ଚିମରେ ସୂର୍ଯ୍ୟାସ୍ତର ବର୍ଣ୍ଣନା ରହିଛି । ବେଦରେ ଆକାଶକୁ ସମୁଦ୍ର କୁହାଯାଇଛି । ଏହାର ପୂର୍ବ ମନ୍ତ୍ରରେ 'ବିଶ୍ୱରୂପୌ' ଓ 'ଅନ୍ତରିକ୍ଷ' ଶବ୍ଦ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତର ଅର୍ଥବାଚୀ ।

(୩) ଋୟଃ ସମୁଦ୍ରାଂସ୍ତନ୍ନତୁରୋଽନ୍ୟଦଭ୍ୟଂ ଯୋମ ବଶ୍ନତଃ । (୯.୩୩,୬ ଓ ୪) ସ୍ୱାୟୁଦ୍ଧଂ ସ୍ୱବଙ୍ଗ ସୁଗ୍ମାଂ ଚତୁଃ ସମୁଦ୍ରଂ ଧରୁଣଂ ରଣୀୟାନ୍ ( ୧୦,୪୭,୨ ) ।

ଉପରୋକ୍ତ ଦୁଇ ମନ୍ତ୍ରରୁ ଅବନାଶ ବାବୁ ଅର୍ଥ କରନ୍ତି ଯେ ଯେଉଁ ସମୟରେ ମଧ୍ୟ-ଏସିଆ, ତୁର୍କିସ୍ଥାନ, ରାଜପୁତାନା ଓ ସପ୍ତସିନ୍ଧୁ ସମୁଦ୍ର ପୂର୍ଣ୍ଣ ଥିଲା ଓ ସରସ୍ୱତୀ ନଦୀ ରାଜପୁତାନାର ସମୁଦ୍ରକୁ ବହୁଥିଲା, ସେତେବେଳେ ଋଗ୍‌ବେଦ ରଚିତ ହେଲା । ପରନ୍ତୁ ଏହି ମନ୍ତ୍ରମାନଙ୍କରେ ଏହି ଚାରି ସମୁଦ୍ରର ନାମମାତ୍ର ଉଲ୍ଲେଖ ନାହିଁ । ଏଠାରେ ପୃଥିବୀସ୍ଥ ସମୁଦ୍ର, ଉପରସ୍ଥ ସମୁଦ୍ର (ଆକାଶ), ଉଦୟ ଓ ଅସ୍ତ ସ୍ଥଳର ପୂର୍ବ ପଶ୍ଚିମ ସମୁଦ୍ର—ଏହି ଚାରି ସମୁଦ୍ରର ତତ୍ତ୍ୱାକର୍ଷକ ବର୍ଣ୍ଣନା ରହିଛି ।

ଭୂଗର୍ଭର ପରୀକ୍ଷଣ ଦ୍ୱାରା ପ୍ରତିଷ୍ଠିତ କୌଣସି ଏକ ଐତିହାସିକ କାଳକୁ ବେଦମନ୍ତ୍ରରୁ ଅର୍ଥ କରିବା ଉଦ୍ୟମ ସଫଳ ହେବା ଅସମ୍ଭବ । ଅବନାଶ ବାବୁ ଋଗ୍‌ବେଦର କେତେକ ସ୍ଥଳରେ ବହୁ ଅର୍ଥକାରୀ ସରସ୍ୱତୀ ଓ ସପ୍ତସିନ୍ଧୁ ଶବ୍ଦ ଦେଖି ସେ ସବୁକୁ ଐତିହାସିକ ସରସ୍ୱତୀ ନଦୀ ଓ ସପ୍ତସିନ୍ଧୁ ଦେଶ ବୋଲି ପ୍ରମାଣ କରିବାକୁ ଚେଷ୍ଟା କରିଛନ୍ତି ଓ ସେଥିରେ ବିଫଳ ହୋଇଛନ୍ତି ।

## ନାରାୟଣ ପାବଗୀଙ୍କ ମତ ଓ ତା'ର ସମୀକ୍ଷା

ପ୍ରସିଦ୍ଧ ମହାରାଷ୍ଟ୍ରୀୟ ବିଦ୍ୱାନ୍ ନାରାୟଣ ଭବାନରାଓ ପାବଗୀ ଆର୍ଯ୍ୟଙ୍କ ମୂଳ ସ୍ଥାନ ସମ୍ବନ୍ଧରେ ଗୋଟିଏ ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ ରଚନା କରିଛନ୍ତି । ପାଶ୍ଚାତ୍ୟ ସମାଲୋଚକଙ୍କ ମତକୁ ଖଣ୍ଡନ କରି ସେ ସରସ୍ୱତୀ

ଦେଶ ବା ସପ୍ତସିନ୍ଧୁ ଦେଶକୁ ଆର୍ଯ୍ୟଙ୍କ ପ୍ରଥମ ନିବାସ ସ୍ଥଳ ବୋଲି ଭିନ୍ନ ଭୂତତ୍ତ୍ୱ ପ୍ରମାଣ ଦ୍ୱାରା ସିଦ୍ଧ କରିଛନ୍ତି । ଭୂଗର୍ଭ ଶାସ୍ତ୍ରର ତୃତୀୟକାଳୀନ ଯୁଗ (*Tertiary Era*)କୁ ସେ ମନୁଷ୍ୟର ପ୍ରଥମ ପ୍ରାଦୁର୍ଭାବ ଯୁଗ ବୋଲି ଯୁକ୍ତି କରି ପ୍ରାଚୀନ ଆର୍ଯ୍ୟାବର୍ତ୍ତକୁ ଆର୍ଯ୍ୟଙ୍କ ମୂଳ ସ୍ଥାନ ବୋଲି ପ୍ରମାଣ କରିଛନ୍ତି । ଆର୍ଯ୍ୟାବର୍ତ୍ତ ଓ ତନ୍ନିକଟସ୍ଥ ନିର୍ଦ୍ଦିଷ୍ଟପ (ତିବ୍ବତ) ମନୁଷ୍ୟର ଆଦି ଜନ୍ମସ୍ଥଳ — ଏଥିରେ ସନ୍ଦେହ ନାହିଁ । ପରନ୍ତୁ ପାବଗୀ ମହୋଦୟ ଏହି ସିଦ୍ଧାନ୍ତକୁ ପ୍ରତିଷ୍ଠା କରିବାକୁ ଯାଇ ଅନ୍ୟାନ୍ୟ ସମାଲୋଚକଙ୍କ ପରି ବେଦମନ୍ତ୍ରରୁ ନିଜ ପ୍ରମାଣକୁ ପୁଷ୍ଟ କରିବାକୁ ଉଦ୍ୟମ କରିଛନ୍ତି । ବେଦମନ୍ତ୍ରରୁ ପ୍ରାଚୀନ ଆର୍ଯ୍ୟଙ୍କ କୃଷି, ବାଣିଜ୍ୟ, ଦେବପୂଜାଦି ସମସ୍ତ ବିଷୟ ଅର୍ଥ କରି ସେ ବେଦକୁ ଇତିହାସ ଦୃଷ୍ଟିରେ ଦେଖିଛନ୍ତି । ତାହାଙ୍କ ମହତ୍ତର ଉଦ୍ଦେଶ୍ୟ ସଙ୍ଗେ ଏକମତ ହେଲେ ବି ଉଦ୍ଦେଶ୍ୟ ସିଦ୍ଧିର ପ୍ରଣାଳୀ ସହ ସହମତ ହେବା ଅଯୌକ୍ତିକ ମନେହୁଏ ।

ପାବଗୀ ମହୋଦୟ ଲେଖିଛନ୍ତି ଯେ, ମୂଳ ଆର୍ଯ୍ୟମାନେ ପଞ୍ଜାବର ସୈନ୍ଧବ ଶ୍ରେଣୀରେ (*Salt Range*) ନିବାସ କରୁଥିଲେ । ଏହା ସତ୍ୟ ହୋଇ ପାରେ । ପରନ୍ତୁ ବେଦମନ୍ତ୍ରରୁ ଏହାକୁ ସିଦ୍ଧ କରିବାକୁ ଯାଇ ସେ ସୈନ୍ଧବ (*Salt*)ର ନାମମାତ୍ର ଦେଖାଇ ପାରିନାହାନ୍ତି । ଅବିନାଶ ବାବୁ ଲେଖିଛନ୍ତି— 'ସପ୍ତସିନ୍ଧୁ ଦେଶର ଖନିଜପଦାର୍ଥମାନଙ୍କ ମଧ୍ୟରେ ଲବଣର ନାମ ଋଗ୍‌ବେଦରେ ଉଲ୍ଲେଖ ନାହିଁ, ଯଦିଓ ସୈନ୍ଧବଶ୍ରେଣୀ ଦେଶର ମଧ୍ୟଭାଗରେ ରହିଛି † ।' ବାସ୍ତବରେ ଐତିହାସିକ ସପ୍ତସିନ୍ଧୁ ଦେଶ

---

† *Of the minerals of Sapta Sindhu, no mention is made of Salt in the Rig-Veda, although the Salt Range exists in the very heart of the country— (Rig-Vedic India)*·

ବେଦମନ୍ତ୍ରରୁ ଅର୍ଥ କରିବା ଯେପରି ମିଥ୍ୟା, ବେଦମନ୍ତ୍ରରୁ ସୈନ୍ଧବ-ଶ୍ରେଣୀର ଅନୁସନ୍ଧାନ କରିବା ସେହିପରି ବୃଥା ।

ପାବଗୀ ମହୋଦୟ, ଅବିନାଶ ବାବୁ ଆଦି ଗବେଷକଗଣ ଯେଉଁ ସରସ୍ୱତୀ ନଦୀ କଥା ମୁହୁର୍ମୁହୁଃ ବର୍ଣ୍ଣନା କରିଛନ୍ତି, ତାହାର ସତ୍ତା ଆଜି ଭାରତ ବା ପୃଥିବୀର କେଉଁ ସ୍ଥଳରେ ନାହିଁ । କେଉଁଠି ଥିଲା ଏ କଥାରେ ବି ସମସ୍ତେ ଏକମତ ହୋଇ ପାରିନାହାନ୍ତି । କିଏ ହିମାଳୟରୁ ଖଜୁତାନା ସମୁଦ୍ରରେ ପଡୁଥିବା କୌଣସି ଭୂତକାଳୀନ ନଦୀ, କିଏ କାଶ୍ମୀରରୁ ବହି ଗଙ୍ଗା ଯମୁନା ସହ ଉତ୍ତର ପ୍ରଦେଶରେ ମିଶୁଥିବା ଭୂତକାଳୀନ ନଦୀ, କିଏ ସିଢପୁର ନିକଟସ୍ଥ ନଦୀ ଆଦି ବହୁ କଳ୍ପନା ଜଳ୍ପନା କରୁଛନ୍ତି । ଏହିପରି ସ୍ଥଳେ ବେଦମନ୍ତ୍ରର ବାଣୀ, କାରଣାଦି ନିତ୍ୟାର୍ଥବାଚୀ 'ସରସ୍ୱତୀ' ଶବ୍ଦକୁ କାଳ୍ପନିକ ବା ଐତିହାସିକ ସରସ୍ୱତୀ ନଦୀ ବୋଲି ସ୍ଥିର କରିବା ଯୁକ୍ତିହୀନ ।

ଦେଶାତ୍ମବୋଧରେ ପାବଗୀ ମହୋଦୟ ଏତେ ଦୂର ବିହ୍ୱଳ ହୋଇ ପଡିଛନ୍ତି ଯେ ପ୍ରାଚୀନ ଭାରତୀୟ ସଭ୍ୟତାର ଗୁଣଗାନ କରିବା ପାଇଁ ସେ ବେଦକୁ ଇତିହାସ ଗ୍ରନ୍ଥ ରୂପେ ଦେଖିଛନ୍ତି । ପାଶ୍ଚାତ୍ୟ ଲେଖକମାନେ ଯେଉଁରୂପେ ହୀନ ଜାତୀୟତା ପ୍ରଭାବରେ ବେଦକୁ 'ଭାରତୀୟ ଶାସ୍ତ୍ର' ରୂପେ ହୀନ ଚକ୍ଷୁରେ ଦେଖିଛନ୍ତି, ପାବଗୀ ମହୋଦୟ ସେହିରୂପେ ଉଲ୍ଲଟ ଜାତୀୟତା ପ୍ରଭାବରେ ବେଦକୁ 'ଭାରତୀୟ ଶାସ୍ତ୍ର' ରୂପେ ସଂକୀର୍ଣ୍ଣ କରିପକାଇଛନ୍ତି । ବାସ୍ତବରେ ବେଦ ମାନବ-ଧର୍ମଶାସ୍ତ୍ର ଓ ଆଦି ମାନବ (ଋଷି)ଙ୍କ ଦ୍ୱାରା ଆତ୍ମ-ଦୃଷ୍ଟ । ଅବଶ୍ୟ ବେଦର ମନ୍ତ୍ରଦ୍ରଷ୍ଟା

ଋଷି ଆର୍ଯ୍ୟାବର୍ତ୍ତରେ ଭୂମିଷ୍ଠ ହୋଇଥିଲେ ଓ ଆର୍ଯ୍ୟାବର୍ତ୍ତର ପ୍ରାଚୀନ ସଭ୍ୟତା ଉଜ୍ଜ୍ୱଳମୟ ଥିଲା । ପରନ୍ତୁ ସେଥିପାଇଁ ଋଷିଙ୍କୁ ବେଦମନ୍ତ୍ରର 'କବି' ଓ ବେଦକୁ 'ଇତିହାସ' ରୂପେ ଚିତ୍ରିତ କରିବା ନିଜ ଉଦ୍ଦେଶ୍ୟକୁ ଦୁର୍ବଳ କରିବା ମାତ୍ର ।

ପାବଗୀ ମହୋଦୟ ବେଦମନ୍ତ୍ରରୁ ପ୍ରାଚୀନ ଆର୍ଯ୍ୟଙ୍କ ସ୍ନାନ, ଭୋଜନ, କୃଷି, ବାଣିଜ୍ୟ ଆଦି ଦୈନନ୍ଦିନ ଜୀବନ ପ୍ରଣାଳୀକୁ ଏପରି ଅବୈଦିକ ପ୍ରଣାଳୀରେ ବର୍ଣ୍ଣନା କରିଛନ୍ତି ଯେ କୌଣସି ବେଦପାଠୀ ତାହାକୁ କଦାପି ଗ୍ରହଣ କରି ନପାରେ । ବେଦାର୍ଥ କରିବାରେ ସେ ନିରୁକ୍ତ ସହ ସମ୍ପର୍କ ଛିନ୍ନ କରିଛନ୍ତି । ତେଣୁ ମନ୍ତ୍ରରୁ ସେ ଇତିହାସମାନ କଳ୍ପନା କରିଛନ୍ତି ।

ତିଳକ ମହୋଦୟ ଯେପରି ବେଦର 'ସୋମଲତା' ଶବ୍ଦରୁ କୌଣସି ପାର୍ଥିବ ସୋମରସ କଳ୍ପନା କରି ଉତ୍ତରଧ୍ରୁବରେ ତାହାର ଅସ୍ତିତ୍ୱ ଥିଲା ବୋଲି ବର୍ଣ୍ଣନା କରିଛନ୍ତି, ପାବଗୀ ମହୋଦୟ ସେହିପରି ସରସ୍ୱତୀ ଦେଶରେ ତାହାର ଅସ୍ତିତ୍ୱ ଥିବା କଥା ପ୍ରକାଶ କରିଛନ୍ତି । ଇନ୍ଦ୍ରାଦି ଦେବତାମାନେ ଏହି ସୋମରସ ପାନ କରୁଥିଲେ ବୋଲି କଳ୍ପନା କରାଯାଇଛି । ଦୁଃଖର କଥା, ରାଜନୈତିକ ସ୍ୱାଧୀନତା ଉପଲବ୍ଧି ପରେ ବି ଆମ ଜାତୀୟ ଇତିହାସ ବିଶୁଦ୍ଧ ରୂପରେ ଲେଖାଯାଇ ନଥିବା କାରଣ ଆଜିକାଲି ମଧ୍ୟ ଏହିପରି କେତେ ମିଥ୍ୟା ଗପ ସ୍କୁଲ କଲେଜରେ ଇତିହାସ ରୂପରେ ପଢାଯାଉଛି । ବେଦାର୍ଥ କଲେ ଜଣାଯିବ ଯେ ସୋମଲତା କୌଣସି ପାର୍ଥିବ ପଦାର୍ଥ ନୁହେ କି

ନଥିଲା । ମନେ ରଖିବା ଉଚିତ ଯେ ବେଦରେ ଏକ ଅକାଶୀୟ ସଂସାରର ବର୍ଣ୍ଣନା ରହିଛି । ବେଦୋକ୍ତ ପୁରୁରବା, ଉର୍ବଶୀ, ଅୟୁ, ନହୁଷ ଆଦି ବହୁ ଆକାଶୀୟ ପଦାର୍ଥଙ୍କୁ ମଧ୍ୟକାଳୀନ ପୁରାଣ ଯୁଗରେ ଐତିହାସିକ ପୁରୁଷ ହିସାବରେ ଗ୍ରହଣ କରାଯାଇ ବହୁ ଆଖ୍ୟାୟିକା ଗଢାଯାଇଛି । ସୋମ ବି ଏକ ଅପାର୍ଥିବ ଶବ୍ଦ । ସୋମର ଅର୍ଥ ଚନ୍ଦ୍ରମା । ପାଶ୍ଚାତ୍ୟ ଲେଖକ ଡ଼ାର୍ମିଷ୍ଟେଟାର୍ ସୋମଲତାର ଅର୍ଥ କରିଛନ୍ତି— ସମସ୍ତ ବନସ୍ପତିଙ୍କ ଜୀବନୀ ଶକ୍ତି— ଏହା ଚନ୍ଦ୍ର । ଋଗ୍‌ବେଦର କେତେକ ସ୍ଥଳରେ ସୋମ ସମ୍ବନ୍ଧରେ ମୌଜବତ, ମଧୁର, ମଦକାରୀ, ବନସ୍ପତି ଆଦି ଶବ୍ଦ ଅଛି । ମୁଂଜବାଂଶ୍ଚୈବ ଚନ୍ଦ୍ରମା ଇତ୍ୟମରଃ—ଚନ୍ଦ୍ରର ଏକ ନାମ ମୁଂଜବାନ । ମୁଂଜବାନ ବା ଚନ୍ଦ୍ରର ସ୍ଥଳ ମୌଜବତ । ଏହା ଅକାଶୀୟ ସ୍ଥଳ । ଚନ୍ଦ୍ର ଶାନ୍ତଶୀଳଙ୍କ ପ୍ରତି ମଧୁର, ଯୁବକଙ୍କ ଲାଗି ମଦକାରୀ, ବନସ୍ପତିଙ୍କ ପ୍ରାଣ । ଏହି ଚନ୍ଦ୍ର ବା ସୋମ ଲତା ସ୍ୱରୂପ ଅଟେ । ଏଣୁ ଏହାର ନାମ ସୋମଲତା । ପନ୍ଦର ଦିନଯାଏ ଏହାର ପତ୍ର ବଢେ ଓ ପନ୍ଦର ଦିନଯାଏ ଛିଡ଼େ । ଏହା ମାସର ଦୁଇ ପକ୍ଷ । ଏହି ସବୁ ଅକାଶୀୟ ଚିନ୍ତାଧାରାକୁ ପୁରାଣ ଯୁଗରେ ଏପରି କଥାକାରରେ ବର୍ଣ୍ଣିତ ହୋଇଛି ଯେ ସୋମଲତା ଏକ ପାର୍ଥିବ ପଦାର୍ଥ ରୂପେ ମନେହୁଏ । ଏହି ସୋମଲତା ବର୍ତ୍ତମାନ କାହିଁ ବୋଲି ପ୍ରଶ୍ନ କଲେ ଉତ୍ତର ମିଳେ ଯେ ସରସ୍ୱତୀ ନଦୀ ଓ ସପ୍ତସିନ୍ଧୁ ଦେଶ ଯେଉଁରୂପେ ଆଜି ନାହିଁ ସେଠାର ସୋମଲତା ବି ନାହିଁ । ବାଃ, ଏଠାରେ ପୋଥି ବନ୍ଦ !

## ପରିଶିଷ୍ଟ

ବେଦର କାଳ ସମ୍ବନ୍ଧେ ପାଶ୍ଚାତ୍ୟ ସମାଲୋଚକମାନଙ୍କ ମତକୁ ଖଣ୍ଡନ କରିବାକୁ ଯାଇ ତିଲକ ଆଦି ପଣ୍ଡିତଗଣ ସତ୍ୟର ମହତ

ଅନୁସନ୍ଧାନ କରିଛନ୍ତି । ପରନ୍ତୁ ବେଦସଂହିତାରୁ ଇତିହାସ କଥାମାନ ବାହାର କରିବା ପନ୍ଥାରେ ଗତି କରି ନିଜ ଉଦ୍ଦେଶ୍ୟକୁ ମଳିନ କରି ପକାଇଛନ୍ତି । ବେଦାଙ୍ଗ ଓ ନିରୁକ୍ତର ଆଶ୍ରୟ ନନେଇ ସ୍ୱେଚ୍ଛାରେ ବେଦାର୍ଥ କଲେ, ଯାହା ଘଟିବା କଥା ତାହାହିଁ ହୋଇଛି ।

—ନବମ ଅଧ୍ୟାୟ—

## ବେଦରେ ଇତିହାସ ନାହିଁ

ଅମୈଥୁନୀ ସୃଷ୍ଟିବେଳେ ମନୁଷ୍ୟର ଆଦିଜ୍ଞାନ ରୂପେ ବେଦ ଈଶ୍ବର ପ୍ରକାଶିତ ହେବା ହେତୁ ସେଥିରେ ପରବର୍ତ୍ତୀ ମୈଥୁନୀ ସୃଷ୍ଟିର ଲୌକିକ ଇତିହାସ ରହିବା ସମ୍ଭବ ନୁହେ । ଯେଉଁ କେତୋଟି ବିଷୟ ଉପରେ ଆଶ୍ରୟ ନେଇ ବେଦରେ ଇତିହାସ ଥିବା କୁହାଯାଏ, ସେ ସବୁ ନିମ୍ନରେ ଦିଆଗଲା । ଏ ଗୁଡ଼ିକର ଉଚିତ ସମାଧାନ ହୋଇଗଲେ ବେଦର ଇତିହାସ-ପକ୍ଷ ଖଣ୍ଡିତ ହୋଇଯାଏ ।

(କ) ମନ୍ତ୍ର ଓ ସୂକ୍ତର ଅଗ୍ରଭାଗରେ ଉଲ୍ଲେଖ ଥିବା ଋଷି ସେ ସବୁର ରଚନାକର୍ତ୍ତା । ଏଣୁ ମନ୍ତ୍ରର ରଚନା ବେଳେ ଋଷି ଲୌକିକ ଇତିହାସ ଲେଖିଥିବା ସମ୍ଭବ ।

(ଖ) ବେଦରେ ଏପରି କେତେକ କ୍ରିୟା ପଦ ଅଛି ଯାହା ସବୁ ଲୌକିକ ଭାଷାରେ ଭୂତକାଳବାଚୀ ହୋଇଥାନ୍ତି । ଏଣୁ ବେଦରେ ଇତିହାସ ଥିବା କଥା ଯୁକ୍ତିସଙ୍ଗତ ।

ଏବଂ (ଗ) ବେଦରେ ଏପରି ଅନେକ ନାମ ଅଛି, ଯାହା ସବୁ ଲୌକିକ ଇତିହାସରେ ରାଜା, ନଗର, ନଦୀ, ପର୍ବତ ଆଦିର ନାମ ସହ ଅବିକଳ ସମାନ । ଏଣୁ ଏହି ସବୁର ଇତିହାସ କଥା ବେଦରେ ବର୍ଣ୍ଣିତ ହୋଇଛି ।

ଉପରୋକ୍ତ ତିନୋଟି ସନ୍ଦେହ ମଧ୍ୟରୁ ପ୍ରଥମଟିର ବିସ୍ତୃତ ବ୍ୟାଖ୍ୟା ତୃତୀୟ ଅଧ୍ୟାୟରେ କରାଯାଇଛି । ସେଠାରେ ପ୍ରମାଣିତ ହୋଇଛି ଯେ ମନ୍ତ୍ରର ଋଷି ତାହାର ମନନକର୍ତ୍ତା—ଦ୍ରଷ୍ଟା । ସେ ମନ୍ତ୍ରର ସ୍ରଷ୍ଟା ନୁହନ୍ତି । ଏହି ମତକୁ ସମସ୍ତ ପ୍ରାଚୀନ ଋଷି ଓ ଦାର୍ଶନିକ ଗ୍ରହଣ କରିଛନ୍ତି । ଏଠାରେ ଏହାର ପୁନଃ ଆଲୋଚନା କରିବା ପୁନରୁକ୍ତି ହେବ । ବର୍ତ୍ତମାନ ଦ୍ୱିତୀୟ ଓ ତୃତୀୟ ମନ୍ତବ୍ୟମାନଙ୍କ ଉପରେ ଆଲୋଚନା କରାଯାଉ ।

## ବେଦରେ ଭୂତକାଳୀନ କ୍ରିୟା

ଏହା ସତ୍ୟ ଯେ ଲୌକିକ ସଂସ୍କୃତରେ ଯେଉଁ ସବୁ କ୍ରିୟା ଭୂତକାଳୀନ ଅର୍ଥରେ ବ୍ୟବହୃତ ହୁଏ, ସେ ସବୁର ପ୍ରୟୋଗ ବେଦରେ ଦେଖାଯାଏ । ଲିଟ୍, ଲଙ୍ ଓ ଲୁଙ୍ 'ଲ'କାର ଲୌକିକ ଅର୍ଥରେ ପରୋକ୍ଷ, ଅନଦ୍ୟତନ ଓ ସାମାନ୍ୟ ଭୂତକାଳ ରୂପରେ ଆସେ । ଏହି

ସବୁ 'ଲ୍'କାର ବେଦରେ ବ୍ୟବହାର ହେବା ଦେଖାଯାଏ । ପରନ୍ତୁ ବେଦରେ ଏହି ସବୁ ଭୂତକାଳ ଅର୍ଥରେ ଆସନ୍ତି ନାହିଁ । ତ୍ରିକାଳସତ୍ୟ ବେଦରେ ଭୂତକାଳ ପ୍ରୟୋଗ ହେବା ଆବଶ୍ୟକ ନୁହେଁ । ବ୍ୟାକରଣ-କର୍ତ୍ତା ପାଣିନି ଏହାର ସ୍ପଷ୍ଟୀକରଣ କରିଯାଇଛନ୍ତି—

ଧାତୁ ସମ୍ବନ୍ଧେ ପ୍ରତ୍ୟୟାଃ । (୩,୪,୧) ଛନ୍ଦସି ଲୁଙ୍ ଲଙ୍ ଲିଟଃ (୨) । ଅର୍ଥାତ୍— ବେଦ (ଛନ୍ଦସ୍)ରେ ଲୁଙ୍, ଲଙ୍ ଓ ଲିଟ ତିନି 'ଲ୍'କାରର ପ୍ରୟୋଗ ଧାତୁ ଅର୍ଥର ସୂଚନା ଦେବାପାଇଁ ବ୍ୟବହୃତ ହୁଅନ୍ତି ।

ଏହା ଉପରେ ବ୍ୟାଖ୍ୟାକାର ଜୟାଦିତ୍ୟ ଲେଖିଛନ୍ତି—

ଛନ୍ଦସି ବିଷୟେ ଧାତୁ ସମ୍ବନ୍ଧେ ସର୍ବେଷୁ
କାଲେଷୁ ଲୁଙ୍ ଲଙ୍ ଲିଟଃ ପ୍ରତ୍ୟୟାଃ ଭବନ୍ତି । (ବୃତ୍ତିକାଶିକା)

ଅର୍ଥାତ୍—ବେଦରେ ଧାତୁ ଅର୍ଥରେ ସବୁ କାଳରେ ଲୁଙ୍, ଲଙ୍ ଓ ଲିଟ୍ ପ୍ରତ୍ୟୟ ହୁଏ । ବିକଳ୍ପ ହେବା ହେତୁ ଅନ୍ୟ 'ଲ୍'କାର ମଧ୍ୟ ବ୍ୟବହୃତ ହୋଇ ପାରନ୍ତି ।

ଏହିରୂପେ ଲୌକିକ ସାହିତ୍ୟରେ ବ୍ୟବହୃତ ଭୂତକାଳୀନ କ୍ରିୟା ବେଦରେ ଧାତ୍ୱର୍ଥର ସୂଚନା ଦେବାଲାଗି ବ୍ୟବହୃତ ହୋଇଥାଏ । ଏ ସବୁ ସ୍ଥଳରେ କ୍ରିୟାର କାଳ ଗୌଣ ଅଟେ । କ୍ରିୟାର ଭାବ ମୁଖ୍ୟ ଅଟେ । କ୍ରିୟାର୍ଥକୁ ଏ ସବୁ ସ୍ଥାନରେ ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ ନିତ୍ୟାର୍ଥରେ ଗ୍ରହଣ କରାଯାଏ ।

ଋକ୍‌ବେଦର ଭାଷ୍ୟ କଲବେଳେ ସ୍କନ୍ଦସ୍ୱାମୀ ବେଦର ପ୍ରଧାନ ଅଙ୍ଗ ବ୍ୟାକରଣ ଶାସ୍ତ୍ରର ଅନୁସାରେ ଲୌକିକ ଭୂତକାଳବାଚୀ କ୍ରିୟାକୁ ନାତ୍ୟାର୍ଥରେ ଗ୍ରହଣ କରିଛନ୍ତି । ଏହାର କେତୋଟି ଉଦାହରଣ ନିମ୍ନରେ ଦିଆଗଲା—

ଯଜ୍ଞଂ ଦଧେ ସରସ୍ୱତୀ । (ଋକ୍ ୧,୩,୧୧) । ସ୍କନ୍ଦସ୍ୱାମୀ ଏହାର ଅର୍ଥ କରିଛନ୍ତି – ଯଜ୍ଞଂ ଧାରୟତି ସରସ୍ୱତୀ । 'ଦଧେ' ଏହି ଲିଟ୍ କ୍ରିୟାର ଅର୍ଥ ସେ ବର୍ତ୍ତମାନ କାଳରେ 'ଧାରୟତି' ରୂପେ ଗ୍ରହଣ କରିଛନ୍ତି ।

ସେହିପରି—

ସଦ୍ୟୋ ବୃଦ୍ଧୋ ଅଜାୟଥାଃ । (ଋକ୍ ୧,୫,୬) । ଏହାର ଅର୍ଥ କରିଛନ୍ତି— ତ୍ୱଂ ବୀର୍ଯ୍ୟେଣ ବା ବୃଦ୍ଧଃ ପ୍ରତିବନ୍ଧକାପନୟନସମର୍ଥଃ ଭବସି । 'ଅଜାୟଥାଃ' ଏହି ଲୌକିକ ଲଙ୍ 'ଲ'କାରର ଅର୍ଥ କରିଛନ୍ତି ବର୍ତ୍ତମାନକାଳୀନ 'ସମର୍ଥଃ ଭବସି' ।

କୌଣସି ସ୍ଥଳରେ ସ୍କନ୍ଦସ୍ୱାମୀ ଆଖ୍ୟାନବୋଧକ ଏକ ମନ୍ତ୍ରର ସଙ୍ଗତିକରଣ ବ୍ୟାଖ୍ୟା ବୁଝାଇଛନ୍ତି—

ଅସ୍ୟ ପୀତ୍ୱା ଶତକ୍ରତୋ ଘନୋ ବୃତ୍ରାଣାମ୍ ଅଭବଃ । (ଋକ୍ ୧, ୪,୮) । ସ୍କନ୍ଦ ଏହାର ଅର୍ଥ କରିଛନ୍ତି— ଲୋଡର୍ଥେ ଲଙ୍ । ଘନଃ ଅଭବଃ ଅସ୍ମଦୀୟାନାଂ ଶତ୍ରୂଣାଂ ହନ୍ତା ଭବ । ଅର୍ଥାତ୍-ତୁମେ ଆମ୍ଭମାନଙ୍କ ଶତ୍ରୁର ନାଶ କର । ଏଠାରେ 'ଅଭବଃ' ଏହି ଭୂତକାଳୀନ ଲଙ୍-କାରକୁ

ପ୍ରାର୍ଥନାର୍ଥରେ ବ୍ୟବହାର କରିଛନ୍ତି । ସ୍କନ୍ଦସ୍ୱାମୀ ଏହି ସ୍ଥଳରେ ଏକ ଆବଶ୍ୟକୀୟ ବିଷୟର ଉତ୍ଥାପନ କରିଛନ୍ତି । ବେଦମନ୍ତ୍ରରେ ଶତ୍ରୁ ନାଶ ପାଇଁ ପ୍ରାର୍ଥନା କରିବାର ପ୍ରାସଙ୍ଗିକତା ସମ୍ବନ୍ଧରେ ସେ ଲେଖିଛନ୍ତି ଯେ, ବେଳ ଆସିଲେ ବ୍ରାହ୍ମଣ ଓ ବୈଶ୍ୟମାନେ ମଧ୍ୟ ଶସ୍ତ୍ର ଧାରଣ କରିବେ ଏଣୁ ଶତ୍ରୁ ସମ୍ମୁଖୀନ ହେଲେ ଶସ୍ତ୍ରଧାରଣ ସହ ଏହି ପ୍ରାର୍ଥନା କରିବା ବିଧି ତ୍ରୈବର୍ଣ୍ଣିକ ମନୁଷ୍ୟଙ୍କୁ ଶିଖାଇବା ଆବଶ୍ୟକ । ତାହା ବେଦରେ କୁହାଯାଇଛି ।

ଚତୁର୍ବେଦ ଭାଷ୍ୟକାର ସାୟଣାଚାର୍ଯ୍ୟ ବେଦକୁ ନିତ୍ୟ ବୋଲି ମାନିଛନ୍ତି । ଏଣୁ ଲୌକିକ ଭୂତକାଳୀନ କ୍ରିୟାକୁ ବେଦାର୍ଥ କରିବା ବେଳେ ସେ ତତ୍କାଳ ସତ୍ୟାର୍ଥରେ ଗ୍ରହଣ କରିଛନ୍ତି ।

ଯେପରି—

ତଂ ଗୂର୍ଦ୍ଧୟା ସ୍ୱର୍ଣରଂ ଦେବାସୋ ଦେବମରତିଂ ଦଧନ୍ୱିରେ ।
ଦେବତ୍ରା ହବ୍ୟମୂହିଷେ । (ସାମବେଦ)

ସାୟଣଙ୍କ ଅର୍ଥ— ସମସ୍ତଙ୍କ ଅଗ୍ରଣୀୟ ନେତା ଅଗ୍ନିଙ୍କୁ ତୁ ସ୍ତୁତି କର । ଋତ୍ୱିଜମାନେ ସେହି ସ୍ୱାମୀଙ୍କୁ ସ୍ତୁତି କରନ୍ତି । ତୁ ଦେବତାମାନଙ୍କୁ ଚରୁ ଆଦି ହବ୍ୟ ପହଞ୍ଚାଅ । ଏଠାରେ 'ଦଧନ୍ୱିରେ' ଓ 'ଉହିଷେ' ଏହି ଦୁଇ ଲୌକିକ ଭୂତକାଳୀନ କ୍ରିୟା ବର୍ତ୍ତମାନ ଅର୍ଥରେ ପ୍ରୟୋଗ କରାଯାଇଛି । ମଧ୍ୟକାଳୀନ ଭାଷ୍ୟକାର ସାୟଣ ଏହିରୂପେ ପାଣିନି, ଯାସ୍କ ଆଦି ଶବ୍ଦଶାସ୍ତ୍ରଜ୍ଞଙ୍କ ମତକୁ ଗ୍ରହଣ କରିଛନ୍ତି । ଏଠାରେ ଆଉ ଗୋଟିଏ

ଉଲ୍ଲେଖନୀୟ କଥା ହେଉଛି ଯେ ସାୟଣ 'ଦେବାସଃ' ଶବ୍ଦକୁ ଦିବ୍ୟ ଗୁଣଯୁକ୍ତ ବୋଲି ଅର୍ଥ କରିଛନ୍ତି । ସୁତରାଂ ଇନ୍ଦ୍ର, ଅଗ୍ନି ଆଦି ଦିବ୍ୟ-ଗୁଣଯୁକ୍ତ ପଦାର୍ଥଙ୍କୁ ପରବର୍ତ୍ତୀକାଳୀନ ପୁରାଣ ଶାସ୍ତ୍ରରେ ପୁରୁଷପରକ କରି ଯେଉଁ କଳ୍ପନାମାନ କରାଯାଇଛି, ସେ ସମସ୍ତଙ୍କୁ ସାୟଣାଦି ମଧ୍ୟଯୁଗୀୟ ଭାଷ୍ୟକାର ବି ମାନୁଥିଲେ ।

ବିସ୍ତାର ଭୟରେ ଆଉ ଅଧିକ ଉଦାହରଣ ଦିଆଯାଉ ନାହିଁ । ଲୌକିକ ଭୂତକାଳ କ୍ରିୟାକୁ ବେଦରେ ଦେଖି ବେଦର ଘଟଣାକୁ ଭୂତକାଳୀନ ବୋଲି ଗ୍ରହଣ କରିବା ବେଦାର୍ଥ କରିବା ପ୍ରଣାଳୀର ସମ୍ପୂର୍ଣ୍ଣ ବିପରୀତ । ଏହି ସବୁ କ୍ରିୟା ଧାତ୍ୱର୍ଥର ସୂଚନା ଦିଅନ୍ତି, କାଳର ନୁହେ ।

## ବେଦରେ ଲୌକିକ ନାମ

ମହର୍ଷି ମନୁ କହିଛନ୍ତି—

ସର୍ବେଷାଂ ତୁ ନାମାନି କର୍ମାଣି ଚ ପୃଥକ୍ ପୃଥକ୍ ।
ବେଦ-ଶବ୍ଦେଭ୍ୟ ଏବାଦୌ ପୃଥକ୍ ସଂସ୍ଥାଶ୍ଚ ନିର୍ମମେ । (ମନୁ ୧,୨୧)

ଅର୍ଥାତ୍— ପରମାତ୍ମା ସୃଷ୍ଟି ଆରମ୍ଭରେ ସେ ସମସ୍ତଙ୍କ ପୃଥକ୍ ପୃଥକ୍ ନାମ, କର୍ମ ଓ ବ୍ୟବସ୍ଥା ବେଦ ଦ୍ୱାରା ପ୍ରତିଷ୍ଠା କରାଇଲେ ।

ସାକ୍ଷାତକୃତଧର୍ମା ଆଦିମ ଋଷିଗଣ ଶବ୍ଦ ଓ ଶବ୍ଦାର୍ଥର ଜ୍ଞାନ ଲାଭ କରି ପରବର୍ତ୍ତୀ ମନୁଷ୍ୟ ଗୋଷ୍ଠୀ ମଧ୍ୟରେ ତାହାର ପ୍ରସାର କଲେ ।

ଶବ୍ଦ-ଭଣ୍ଡାର ବେଦରୁ ବିଭିନ୍ନ ବ୍ୟକ୍ତି, କର୍ମ, ନଦୀ, ପର୍ବତାଦିର ନାମକରଣ କଲେ । ଅଜି ଯଦି କୌଣସି ବ୍ୟକ୍ତି ତାହାଙ୍କ ପୁତ୍ରର ନାମ ଶ୍ରୀକୃଷ୍ଣ ବୋଲି ରଖନ୍ତି, ତାହାହେଲେ ଏହି ଶ୍ରୀକୃଷ୍ଣ ନାମକୁ ତାହାଙ୍କ ନିଜ ଗଠିତ ନୂତନ ଶବ୍ଦ ବୋଲି କୁହାଯାଇ ନପାରେ । ଏହି ଶ୍ରୀକୃଷ୍ଣ ପୂର୍ବରୁ ବହୁ ଶ୍ରୀକୃଷ୍ଣ ଥିଲେ । ଏହିପରି ଇତିହାସ ସ୍ରୋତର ପ୍ରତିକୂଳରେ ଗତି କଲେ ଶ୍ରୀକୃଷ୍ଣାଦି ସକଳ ଶବ୍ଦ ସର୍ବ ପ୍ରଥମେ ବେଦରୁ ଉଦ୍ଭବ ହେବା ଜଣାଯାଏ । ଏହି ସବୁ ଶବ୍ଦକୁ ବେଦରେ ଦେଖି ଏହି ନାମଧେୟ ବ୍ୟକ୍ତିଙ୍କ ଇତିହାସ ବେଦରେ ଅଛି କହିବା ମହାଭ୍ରମ ଅଟେ । କୋରାନ୍‌ରେ ପରମାତ୍ମାଙ୍କୁ 'ଅକବର' (ସର୍ବଶ୍ରେଷ୍ଠ) ବୋଲି ସମ୍ବୋଧନ କରାଯାଇଛି । ଏହାକୁ ଦେଖି କେହି ଯଦି କହେ ଯେ ମୋଗଲ ବାଦଶାହ ଆକବରଙ୍କ ନାମ କୋରାନ୍‌ରେ ବର୍ଣ୍ଣିତ ହୋଇଛି, ତାହାହେଲେ ଏହା ଅଜ୍ଞତାର ପରିଚୟକ ହେବ । ପୂର୍ବରୁ ପ୍ରଚଳିତ ଶବ୍ଦମାନଙ୍କ ନାମରେ ସଂସାରରେ ସକଳ ନାମକରଣ ହୋଇଥାଏ ।

ପୁରାଣ ଶାସ୍ତ୍ରମାନେ ବେଦର କ୍ଲିଷ୍ଟ ଓ ଗୂଢ ବର୍ଣ୍ଣନା ଗୁଡିକୁ ସରଳ ରୀତିରେ ଲୋକଙ୍କ ମନରେ ପ୍ରଚାର କରିବା ପାଇଁ ଉଦ୍ୟମ କରିଥିଲେ । ଏଣୁ ଭାଗବତରେ ଅଛି – 'ପୁରାଣମାନଙ୍କରେ ଭାରତୀୟ ଇତିହାସର ମିଶ୍ରଣରେ ବେଦର ରହସ୍ୟ ଖୋଲିଗଲା †।' ଅର୍ଥାତ୍ ବେଦର ଆଲଙ୍କାରିକ ବର୍ଣ୍ଣନା ଗୁଡ଼ିକ ଯେଉଁଥିରୁ ନିଗୂଢ ଅଧ୍ୟାତ୍ମିକ, ଆଧିଦୈବିକ

† ଭାରତବ୍ୟପଦେଶେନ ହ୍ୟାମ୍ନାୟାର୍ଥଶ୍ଚ ଦର୍ଶିତଃ । ( ଶ୍ରୀମଦ୍ଭାଗବତ ୧, ୪,୨୮ ) ।

ଓ ଅଧିଭୌତିକ ଉପାଖ୍ୟାନ ସଂଗ୍ରହ କରି ମନୁଷ୍ୟର ଜ୍ଞାନ ଓ କର୍ମ ଉଭୟରେ ଅଭ୍ୟୁତ୍ଥାନ କରାଯାଇ ପାରନ୍ତା, ସେ ସବୁ ସହ ଐତିହାସିକ ଘଟଣାମାନ ମିଶ୍ରଣ କରି ସେ ସମସ୍ତଙ୍କୁ କଦାକାର କରି ଦିଆଗଲା । ଏହି ସବୁର ଯୋଗରୁ ସ୍ୱରୂପେ ସେହି ସେହି ବୈଦିକ ଶବ୍ଦମାନଙ୍କୁ ବ୍ୟବହାର କରାଗଲା ଯେଉଁଗୁଡ଼ିକ ଇତିହାସରେ ବିଭିନ୍ନ ରାଜା, ଋଷି, ନଦୀ, ପର୍ବତ ଆଦି ନାମରେ ଅସିଛନ୍ତି ।

ମହାଭାରତ କାଳରେ ଶାନ୍ତନୁଙ୍କ ପୁତ୍ର ଭୀଷ୍ମ ଥିଲେ । ତେଣେ ବେଦରେ ଅଲଙ୍କାରିକ ରୂପରେ 'ବନସ୍ପତିରୂପ ଶାନ୍ତନୁ ସହ ବର୍ଷାରୂପୀ ଗଙ୍ଗାଙ୍କ ସ୍ନେହକୁ 'ପର୍ଜନ୍ୟ' ଆଖ୍ୟା ଦିଆଯାଇଛି । ଏହି ଦୁଇ ତତ୍ତ୍ୱକୁ ମିଳାଇ ଭୀଷ୍ମଙ୍କ ମାତା ଗଙ୍ଗାନଦୀ ବୋଲି ପ୍ରଚାରିତ ହେଲା । ପୁଣି ଏହାକୁ ବେଦସମ୍ମତ ବୋଲି କୁହାଗଲା । ବେଦରେ ମେଘ ଓ ବିଦ୍ୟୁତର ଲୀଳାକୁ ପୁରୂରବା ଓ ଉର୍ବଶୀ ନାମରେ ବର୍ଣ୍ଣିତ ହେବାବେଳେ ଲୋକରେ ଚନ୍ଦ୍ର ବଂଶର ପ୍ରଥମ ରାଜା ପୁରୂରବାଙ୍କ ସହ ଜବରଦସ୍ତ ଉର୍ବଶୀ ନାମ୍ନୀ ଏକ କଳ୍ପିତ ଅପ୍ସରାଙ୍କ ସମ୍ପର୍କ ଯୋଡ଼ି ଦିଆଗଲା । ଅନ୍ୟ ଅର୍ଥରେ ଅଗ୍ନି ସମ୍ବନ୍ଧୀୟ ପୁରୂରବା ଓ ଉର୍ବଶୀଙ୍କଠାରୁ ଆଗ୍ନେୟ 'ଆୟୁ'ର † ଉତ୍ପନ୍ନ ହେବା ଗୂଢ଼ ବୈଜ୍ଞାନିକ ସିଦ୍ଧାନ୍ତକୁ ଏବେଣ ପୁରାଣରେ ଆୟୁ ଏ ଦୁହିଙ୍କ ସନ୍ତାନରୂପେ ପରିଚିତ ହେଲେ । ବଶିଷ୍ଠ, ପ୍ରଜାପତି, ଜମଦଗ୍ନି, ବିଶ୍ୱାମିତ୍ର ଆଦି ଇନ୍ଦ୍ରିୟାର୍ଥକ ବୈଦିକ ଶବ୍ଦକୁ ଏଣେ ଲୋକରେ ସେହି ସେହି ନାମଧେୟ କୌଣସି କୌଣସି ଋଷିଙ୍କ ସହ ଯୋଗ କରି ବେଦର

† ଅଗ୍ନେ ଆୟୁରସି (ଯଜୁ ୫, ୨)

ସମସ୍ତ ବର୍ଣ୍ଣନାକୁ ଏମାନଙ୍କ ଇତିହାସ ସହ ମିଶ୍ରଣ କରିଦିଆଗଲା । ବେଦୋକ୍ତ ବିଶ୍ୱାମିତ୍ର, ମେନକା, ଭରତ ଆଦି ନିତ୍ୟାର୍ଥକ ଶବ୍ଦମାନଙ୍କ ସହ ଐତିହାସିକ ଦୁଷ୍ୟନ୍ତ ଓ ଶକୁନ୍ତଳାଙ୍କୁ ମିଶାଇ ବେଦରୁ ଭରତଙ୍କ ପୂର୍ବ ବଂଶଧରଙ୍କ ନାମମାନ କଳ୍ପନା କରାଗଲା ।

ପୁରାଣକାରମାନଙ୍କ ନୀତି ଅନୁସରଣ କରି ଆଧୁନିକ କେତେକ ଲେଖକ ବାଣୀବାଚକ ସରସ୍ୱତୀ ଶବ୍ଦରୁ ବା ନାଡିବାଚକ ଗଙ୍ଗାଦି ଶବ୍ଦରୁ ଭୂଗୋଳ ଶାସ୍ତ୍ର ଆଲୋଚନା ଆରମ୍ଭ କଲେ । ପଞ୍ଚେନ୍ଦ୍ରିୟରୂପୀ 'ପଞ୍ଚନଦୀ' ଶବ୍ଦରୁ ପଞ୍ଜାବ କଥା ବାହାର କଲେ । ପକ୍ଷପାତୀ ପାଶ୍ଚାତ୍ୟ ସମାଲୋଚକ-ମାନେ ଏହି ସବୁ ଗବେଷଣାକୁ କେନ୍ଦ୍ର କରି ଯୁକ୍ତିଯୁକ୍ତ ପ୍ରକାଶିତ ବେଦଜ୍ଞାନକୁ ତିନି ଚାରି ହଜାର ବର୍ଷର ବୋଲି ଲେଖିଲେ ।

ବେଦ ନିତ୍ୟଜ୍ଞାନ ଓ ଅପୌରୁଷେୟ । ଏଥିରେ ଅନିତ୍ୟ ଇତିହାସ ବା ଭୂଗୋଳ ନାହିଁ । ଗୋଟିଏ ବିଷୟ ଲକ୍ଷ୍ୟ କରିବା କଥା ଯେ ପୁରୁରବା, ଶାନ୍ତନୁ, ମଗଧ, ଅର୍ବ, ଗଙ୍ଗା, ଯମୁନାଦି ରାଜା, ନଗର, ଦେଶ, ନଦୀ ଆଦିର ନାମକରଣ ପୂର୍ବରୁ ସେହି ସକଳ ଶବ୍ଦ ବିଦ୍ୟମାନ ଥିଲା । ସେତେବେଳେ ଏ ସବୁ ଶବ୍ଦ ଉପରୋକ୍ତ ରାଜାଦିଙ୍କୁ ନବୁଝାଇ ଅନ୍ୟାର୍ଥର ସୂଚନା ଦେଉଥିଲେ । ଏହି ଅର୍ଥ ସେହି ସେହି ଶବ୍ଦମାନଙ୍କ ଧାତୁର ଅର୍ଥ । ବେଦରେ ସେହି ସେହି ଅର୍ଥରେ ଏ ସବୁ ଶବ୍ଦ ସର୍ବଦା ବ୍ୟବହୃତ । ଯେଉଁ ସବୁ ବୈଦିକ ଶବ୍ଦମାନଙ୍କ ସହ ଲୌକିକ ରାଜା, ଋଷି, ନଦୀ, ପର୍ବତାଦିଙ୍କୁ ନାମ ସମାନ ଥିବାରୁ କେତେକ ଲେଖକ ଏ ସମସ୍ତଙ୍କ ବର୍ଣ୍ଣନା ବେଦରେ ଅଛି ବୋଲି କହନ୍ତି, ସେଥିରୁ କେତୋଟିର ମୀମାଂସା ତଳେ ଦିଆଗଲା ।

# ଶାନ୍ତନୁ, ପୁରୁରବା, ଉର୍ବଶୀ, ବଶିଷ୍ଠାଦ ଶବ୍ଦ

ବେଦରେ ଶାନ୍ତନୁ, ପୁରୁରବା, ଇକ୍ଷ୍ୱାକୁ, ନହୁଷ, ଯଯାତି, ଅମ୍ବା, ଅମ୍ବିକା, ଅମ୍ବାଳିକା, ଯମଦଗ୍ନି, ବିଶ୍ୱାମିତ୍ର, ବଶିଷ୍ଠ ଆଦ ଶବ୍ଦ ଅଛେ । ଏହି ଶବ୍ଦରେ ସଂସାରର କେତେକ ଐତିହାସିକ ରାଜା, ରାଣୀ, ଋଷି ଆଦ ପରିଚିତ ହୋଇଥିବାରୁ, ଏମାନଙ୍କ ନାମ ଓ ଚରିତ ବେଦରେ ଲିପିବଦ୍ଧ ଅଛି ବୋଲି କେତେକେ ଭୁଲ ବୁଝନ୍ତି । ବେଦରେ ଉପରୋକ୍ତ ଶବ୍ଦମାନ ନିତ୍ୟାର୍ଥରେ ଆସନ୍ତି । ଏ ସବୁ କେଉଁଠାରେ ଅକାଶୀୟ ସଂସାର, କେଉଁଠାରେ ଶରୀରସ୍ଥ ସଂସାର ବା କେଉଁଠାରେ ଲୌକିକ ସଂସାରର ନିତ୍ୟ ସନାତନ ଘଟଣାକୁ ପ୍ରତିପାଦନ କରନ୍ତି । ଐତିହାସିକ ପୁରୁଷଙ୍କ ସହ ଏମାନଙ୍କ ସମ୍ବନ୍ଧ କିଛି ନାହିଁ । ଏତିକିମାତ୍ର ସମ୍ବନ୍ଧ ଯେ ଏ ସମସ୍ତ ନାମକରଣ ବେଦର ଶବ୍ଦଭଣ୍ଡାରରୁହିଁ ହୋଇଛି ।

ଋକ୍‌ବେଦର ଦଶମ ମଣ୍ଡଳର ଗୋଟିଏ ସୂକ୍ତରେ ବର୍ଷା ସମ୍ବନ୍ଧରେ ଏକ ବର୍ଣ୍ଣନା ଅଛେ । ଆର୍ଷ୍ଟିଷେଣ ଦେବାପି ଶାନ୍ତନୁଙ୍କ ପୁରୋହିତ ହୋଇ ବର୍ଷା କରାଇଲେ । ଋଷ୍ଟିଷେଣ ବା ମଧ୍ୟମ ଅନ୍ତରୀକ୍ଷଜାତ ଆର୍ଷ୍ଟିଷେଣ (ବିଦ୍ୟୁତ ଶକ୍ତି)ର ଅନ୍ୟ ରୂପ ଅଟେ ଦେବାପି (ଅଗ୍ନି) । ଏଣୁ ଆର୍ଷ୍ଟିଷେଣ ଦେବାପି ବିଦ୍ୟୁତ ଶକ୍ତି । ଶାନ୍ତନୁ ଶାନ୍ତିଦାୟୀ ଜଳରୂପୀ । ପ୍ରଥମେ ବିଦ୍ୟୁତ ଚମକିବା ପରେ ବର୍ଷା ହୁଏ । ଏଣୁ ଆର୍ଷ୍ଟିଷେଣ ଦେବାପି ପୁରୋହିତ ରୂପେ ନିଜ ରୂପ ଦେଖାଇବା ପରେ ବର୍ଷା ହୁଏ ।

ଚର୍ଚ୍ଚା ସମ୍ବନ୍ଧୀୟ ଯେଉଁ ବକ୍ତାନ ଉପରେ ଦର୍ଶାଯାଇଛି, ସେଥିରୁ ଏଣେ ପୁରାଣ ଶାସ୍ତ୍ରମାନେ ଇତହାସ ସୃଷ୍ଟି କରିଛନ୍ତି ଯେ ଶାନ୍ତନୁ ଓ ଆର୍ଷ୍ଟିଷେଣ ଦେବାପି କୁରୁବଂଶର ଦୁଇ ଭାଇ ଥିଲେ । ଏ ମଧ୍ୟରୁ ସାନ ଭାଇ ଶାନ୍ତନୁ ରାଜସିଂହାସନ ଆରୋହଣ କରିବାରୁ ବଡ଼ ଭାଇ ଋଷି ହେଲେ । ଋଷ୍ଟିଷେଣ ଋଷିଙ୍କ ଶିଷ୍ୟତ୍ୱ ଗ୍ରହଣ କରି ସେ ଆର୍ଷ୍ଟିଷେଣ ଦେବାପି ନାମରେ ରହିଲେ । ଦେଶରେ ଅନାବୃଷ୍ଟି ହେବାରୁ ସାହାଯ୍ୟାର୍ଥେ ଶାନ୍ତନୁ ବଡ଼ ଭାଇଙ୍କ ପାଖକୁ ଗଲେ । ଦେବାପି ପୁରୋହିତ ହୋଇ ବର୍ଷା କରାଇଲେ । କୁରୁ ରାଜା ଶାନ୍ତନୁଙ୍କ ଭାଇଙ୍କ ନାମ ବାହ୍ଲିକ ଥିବା ସତ୍ତ୍ୱେ ଉପରୋକ୍ତ ବେଦମନ୍ତ୍ରରୁ ଦେବାପିଙ୍କୁ ଆଣି ଐତହାସିକ କଥା ଗଢାଯାଇ ପ୍ରଚଳିତ ହେଲା ଯେ ଶାନ୍ତନୁଙ୍କ ନାମ ବେଦରେ ଅଛି । ଅନ୍ୟ ଏକ ସ୍ଥଳରେ ଆସେ ଯେ ଶାନ୍ତନୁ ରାଜାଙ୍କ ସ୍ତ୍ରୀ ଗଙ୍ଗାନଦୀ । ଏହା ମଧ୍ୟ ବୈଦିକ ମନ୍ତ୍ରମାନଙ୍କ ଅସଦାର୍ଥରୁ ଜାତ ହୁଏ । ଶାନ୍ତନୁ ବନସ୍ପତି ବିଶେଷ † । ଏଣେ ଅଶ୍ୱିନ ମାସର ବର୍ଷାକୁ ଗଙ୍ଗା କୁହାଯାଏ । ଏତେବେଳେ ଶାନ୍ତନୁକୁ ଜଳ ଅବଶ୍ୟକ ହେବାବେଳେ ଗଙ୍ଗା ତାହାର ତପ୍ତ ହୃଦୟକୁ ସୁଶୀତଳ କରେ । ବେଦମନ୍ତ୍ରର ଏହି ବର୍ଣ୍ଣନାକୁ ଲୌକିକରେ କୁରୁ ରାଜା ଶାନ୍ତନୁଙ୍କ ସହ ମିଶାଇ ଗଙ୍ଗା ନଦୀର ପରିଣୟ କଥା କଳ୍ପନା କରାଯାଇଛି ଓ ଏହି କଥା ବେଦରେ ଅଛି ବୋଲି କୁହାଯାଉଛି ।

ଋକ୍‌ବେଦର ( ୧୦,୯୫,୧୪ ) ମନ୍ତ୍ରରେ ପୁରୁରବା ଓ ଉର୍ବଶୀ କଥା ଆସେ । ଏହି ସ୍ଥଳର ଆଲୋଚନା କରିବା ବେଳେ

---

† ଦେଖ—ସୁଶ୍ରୁତ ( ୪୬,୨୨,୩୨ )

ଗ୍ରିଫିତ ମହୋଦୟ ଲେଖିଛନ୍ତି— 'ମେକ୍ସମୁଲେର୍‌ଙ୍କ ମତରେ ଏଠାରେ ଊଷା ଓ ସୂର୍ଯ୍ୟଙ୍କ ବର୍ଣ୍ଣନା କରାଯାଇଛି । ଡ଼ାଃ ଗୋଲ୍‌ଡ଼୍‌ଷ୍ଟୁକର୍‌ଙ୍କ ମତରେ ଉର୍ବଶୀ ଅଟେ ପ୍ରାତଃକାଳୀନ ଶିଶିର ଯାହାକି ସୂର୍ଯ୍ୟୋଦୟ ସଙ୍ଗେ ସଙ୍ଗେ ଲୁଚିଯାଏ † ।' କେତେକଙ୍କ ମତରେ ବେଦୋକ୍ତ ପୁରୁରବା ବାୟୁ ଓ ମେଘର ଗର୍ଜନ ❋ । ଉର୍ବଶୀ ଅନ୍ତରୀକ୍ଷରେ ବିସ୍ତୃତ ହୋଇଥିବା ବିଦ୍ୟୁତ ଅଟେ × । ସୁତରାଂ ବେଦର ଏହି ସ୍ଥଳରେ ମେଘ ଓ ବିଦ୍ୟୁତର ସମ୍ବନ୍ଧକୁ ସୂଚନା ଦିଆଯାଇଛି । ଏଠାରେ ଚନ୍ଦ୍ରବଂଶୀୟ ପ୍ରଥମ ରାଜା ପୁରୁରବା ବା ଉର୍ବଶୀ ନାମ୍ନୀ କଳ୍ପିତ ସ୍ୱର୍ଗନର୍ତ୍ତକୀର କୌଣସି କଳ୍ପିତ ଅପ୍ସରାଙ୍କ ନାମ ଆସେ ନାହିଁ । ପୁରାଣ ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ 'ଅପ୍ସରା' ବୈଦିକ ଶାସ୍ତ୍ରମାନଙ୍କରେ ସୂର୍ଯ୍ୟକିରଣ, ଦିଗ, ପ୍ରାଣ, ମୃତ୍ତିକାପାତ୍ର, ବିଦ୍ୟୁତ ଧାରା ଆଦି ବିଭିନ୍ନ ଅର୍ଥରେ ଆସେ । ଏ ସବୁର ବିସ୍ତୃତ ଗବେଷଣା ହେଲେ ବହୁ ବୈଜ୍ଞାନିକ ତଥ୍ୟ ଉପଲବ୍ଧ ହୁଏ ।

---

† *Maxmuller considers the story to be one of the Vedas which expresses the correlation of the dawn and the sun. According to Dr. Goldstuker, Urvasi is the morning Mist which vanishes away as soon as Pururava, the Sun, displays himself.*

❋ ପୁରୁରବା ବହୁଧା ରୋରୂୟତେ । ( ନିରୁକ୍ତ ୫,୪୬ )

× ଉରୁ ବଶେ ଯସ୍ୟାଃ ।

ଯଜୁର୍ବେଦ ( ୧୫,୧୫-୧୯ ) ମନ୍ତ୍ରମାନଙ୍କରେ ମେନକା, ଉର୍ବଶୀ ଆଦି ଶବ୍ଦ ସୂକ୍ଷ୍ମରୂପରେ ତେଜସ୍ୱି ଯୁକ୍ତ ପଦାର୍ଥମାନଙ୍କ ସମ୍ବନ୍ଧରେ ଅଛି । ଏ ସବୁର ଉଚିତ ଅର୍ଥ ନ ବୁଝି ବେଦରୁ ସ୍ୱର୍ଗନର୍ତ୍ତକୀବାଚୀ କଳ୍ପିତ ଅପ୍‌ସରାମାନଙ୍କ କିମ୍ବଦନ୍ତୀ ଗଢ଼ିବା ଅଜ୍ଞତା ଛଡ଼ା ଆଉ କିଛି ନୁହେ ।

ଯଜୁର୍ବେଦରେ ଅଛି—'ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପୁଷ୍ଟିବର୍ଦ୍ଧନମ୍' (୩,୬୦)-- ଅର୍ଥାତ୍ ତିନି ପ୍ରକାରର ଅମ୍ବାକୁ ସୁଗନ୍ଧ ଓ ପୁଷ୍ଟିବର୍ଦ୍ଧନ ପାଇଁ ମୁଁ ହୋମ କରେ । ଏଠାରେ 'ତ୍ର୍ୟମ୍ବକଂ' ଶବ୍ଦ ତ୍ରୟକଂ, ତ୍ରୀଣିକଂ ପରି ତିନି ଅମ୍ବାର ସମାହାରକୁ ବୁଝାଏ । ଏହି ତିନି ଅମ୍ବା ହେଉଛନ୍ତି ଅମ୍ବା, ଅମ୍ବିକା, ଅମ୍ବାଲିକା ନାମକ ଔଷଧି । ଯଜୁର୍ବେଦ (୧୨,୭୬)ରେ କୁହାଯାଇଛି— ହେ ଅମ୍ବା, ମୋତେ ଆରୋଗ୍ୟ କର । ଏଠାରେ ଆରୋଗ୍ୟ ପାଇଁ ରୋଗୀ ଔଷଧିକୁ ସମ୍ବୋଧନ କରେ । ଏହି ବେଦର ( ୩,୫୭ ) ମନ୍ତ୍ରରେ କୁହାଯାଇଛି— ଅମ୍ବିକାକୁ ତା'ର ଭଗିନୀମାନଙ୍କ ସହ ହୋମ କର । ଏହି ବେଦର (୨୩,୧୮) ମନ୍ତ୍ରରେ ଯଥାକ୍ରମରୂପେ ଅମ୍ବା, ଅମ୍ବିକା, ଅମ୍ବାଲିକା ନାମ ଅଛି । ଏ ସମସ୍ତ ଔଷଧି । ଏ ସମସ୍ତ କାମ୍ପିଲ ନାମକ ବୃକ୍ଷ ମୂଳରେ ଜାତ ହୁଅନ୍ତି । ମହାଭାରତକାଳୀନ ଅମ୍ବା, ଅମ୍ବିକା ଓ ଅମ୍ବାଲିକା ରାଣୀମାନଙ୍କ ସହ ବେଦୋକ୍ତ ଏହି ଶବ୍ଦମାନଙ୍କର କୌଣସି ସମ୍ପର୍କ ନାହିଁ । କାଶୀ ନରେଶ ନିଜର କନ୍ୟାମାନଙ୍କୁ ବେଦୋକ୍ତ ଏହି ସୁନ୍ଦର ସୁନ୍ଦର ଶବ୍ଦମାନଙ୍କ ନାମରେ ନାମିତ କରିଥିଲେ ମାତ୍ର । ଏମାନେ କାଶୀନଗରୀର କନ୍ୟା ଓ ହସ୍ତିନାପୁରର ରାଣୀ । ଉପରୋକ୍ତ ମନ୍ତ୍ରର କାମ୍ପିଲ ସହ ଏମାନଙ୍କ ସମ୍ପର୍କ ନଥିଲା । ବୈଦିକ ଗ୍ରନ୍ଥରେ ଅମ୍ବାଦି ଔଷଧିମାନଙ୍କ ନାମ ଅଛି † । ବର୍ତ୍ତମାନ ବଶିଷ୍ଠ, ଭରଦ୍ୱାଜ, ଯମଦଗ୍ନି,

---

† ମାତୃକା ପ୍ରଥିତାମ୍ବଷ୍ଠା ତଥାମ୍ବାଽମ୍ବାଲିକା (ଭାବ ପ୍ରକାଶ, ହରିତକ୍ୟାଦି ପର୍ବ)

ବିଶ୍ୱାମିତ୍ର ଆଦି ବୈଦିକ ଶବ୍ଦ ସମ୍ବନ୍ଧରେ ଆଲୋଚନା କରାଯାଉ । ଏହି ସବୁ ଶବ୍ଦ ଯଜୁର୍ବେଦର ତେର ଅଧ୍ୟାୟରେ ଆସନ୍ତି । କେତେକ ଭାଷ୍ୟକାର ଏ ସମସ୍ତଙ୍କୁ ଐତିହାସିକ ଋଷି ବୋଲି ବର୍ଣ୍ଣନା କରନ୍ତି । ଏହା ସତ୍ୟ ନୁହେ । ନିତ୍ୟବେଦରେ ଇତିହାସ କଥା କାହୁଁ ଆସିବ ? ବେଦ ବ୍ୟାଖ୍ୟାତା ଶତପଥ ସାହିତ୍ୟରେ ଅଛି † —

ପ୍ରାଣ ଅଟେ ବଶିଷ୍ଠ ଯେହେତୁ ବସୁ-ପ୍ରାଣମାନଙ୍କ ମଧ୍ୟରେ ମୁଖ୍ୟ ପ୍ରାଣ ଅଟେ ବଶିଷ୍ଠ । ମନ ଅଟେ ଭରଦ୍ୱାଜ । ବାଜ ବା ଅନ୍ନକୁ ପାଇ ସେ

---

† ପ୍ରାଣୋ ବୈ ବଶିଷ୍ଠ ଋଷିଃ । ଯଦ୍ ବୈ ଶ୍ରେଷ୍ଠ ସ୍ତେନ ବଶିଷ୍ଠଃ ଅଥ ଯଦ୍ ବସ୍ତୃତମୋ ବସତି ତେନୋ ଏବ ବଶିଷ୍ଠଃ ।

ମନୋ ବୈ ଭରଦ୍ୱାଜ ଋଷିଃ । ଅନ୍ନଂବାଜଃ । ଯୋ ବୈ ମନୋ ବିଭର୍ତ୍ତି ସୋ ଅନ୍ନଂ ବାଜଂ ଭରତି । ତସ୍ମାତ୍ ମନୋ ଭରଦ୍ୱାଜ ଋଷିଃ ।

ଚକ୍ଷୁ ର୍ବୈ ଯମଦଗ୍ନିଃ ଋଷିଃ । ଯଦନେନ ଜଗତ୍ ପଶ୍ୟତି, ଅଥୋ ମନୁତେ ତସ୍ମାଚ୍ଚକ୍ଷୁର୍ଯମଦଗ୍ନି ଋଷିଃ ।

ଶ୍ରୋତ୍ରଂ ବୈ ବିଶ୍ୱାମିତ୍ର ଋଷିଃ । ଯଦନେନ ସର୍ବତଃ ଶୃଣୋତି, ଅଥୋ ଯଦସ୍ମୈ ସର୍ବତୋମିତ୍ରଂ ଭବତି ତସ୍ମାଚ୍ଛ୍ରୋତ୍ରଂ ବିଶ୍ୱାମିତ୍ର ଋଷିଃ ।

ବାକ୍ ବୈ ବିଶ୍ୱକର୍ମା ଋଷିଃ । ବାଚା ହି ଇଦଂ ସର୍ବଂ କୃତଂ । ତସ୍ମାଦ୍ ବାକ୍ ବିଶ୍ୱକର୍ମା ଋଷିଃ ।

ପୁଷ୍ଟ ହୁଏ । ମନ ଅନ୍ନ ଦ୍ୱାରା ଓ ପ୍ରାଣ ଜଳ ଦ୍ୱାରା ବଢେ ବୋଲି ଉପନିଷଦ୍‌ରେ ଅଛି । ଚକ୍ଷୁ ଅଟେ ଯମଦଗ୍ନି, ସେ ଜଗତକୁ ଦେଖେ, ମନନ କରେ ତେଜୋମୟ ହୁଏ । ଶ୍ରୋତ୍ର ଅଟେ ବିଶ୍ୱାମିତ୍ର । ସମସ୍ତ ଦିଗ ତାହାର ମିତ୍ର । ସବୁ ଦିଗରୁ ସେ ଶୁଣିପାରେ । ବାକ୍ ବିଶ୍ୱକର୍ମା ଅଟେ । ବାଣୀ ଦ୍ୱାରା ସବୁ ପ୍ରକାଶିତ ହୁଅନ୍ତି ।

ଉପରୋକ୍ତ ଅର୍ଥମାନଙ୍କ ଛଡ଼ା ଅନ୍ୟାନ୍ୟ ନିତ୍ୟାର୍ଥ ମଧ୍ୟ ଅଛି । ପରନ୍ତୁ କେଉଁ ସ୍ଥଳରେ ହେଲେ ଏହି ସବୁ ଶବ୍ଦ ଐତିହାସିକ ଋଷିମାନଙ୍କ ସହ ସମ୍ବନ୍ଧ ରଖନ୍ତି ନାହିଁ । ଅବଶ୍ୟ ସକଳ ଐତିହାସିକ ନାମ ବେଦ ଶବ୍ଦରୁହିଁ ଗୃହୀତ ।

ବୃହଦାରଣ୍ୟକ ଉପନିଷଦ୍ ( ୨,୨,୩ )ରେ ଲେଖାଅଛି— ମୁହଁ ତଳକୁ ଓ ପାଦ ଉପରକୁ ହୋଇ ଗୋଟିଏ ପାତ୍ର ଅଛି । ଏଥିରେ ବିଶ୍ୱରୂପ ଯଶ ବିଦ୍ୟମାନ । ପାଖରେ ସାତଜଣ ଋଷି ଅଛନ୍ତି ଓ ଅଷ୍ଟମ ବାଣୀ । ଏହି ସାତ ଋଷିଙ୍କ ନାମ ପରବର୍ତ୍ତୀ କଣ୍ଡିକାରେ ଦିଆଯାଇଛି— ଗୋତମ (ଡାହାଣ କାନ), ଭରଦ୍ୱାଜ (ବାମ କାନ), ବିଶ୍ୱାମିତ୍ର (ଡ଼ାହାଣ ଆଖି), ଯମଦଗ୍ନି (ବାମ ଆଖି), ବଶିଷ୍ଠ (ନାକର ଡ଼ାହାଣ ପୁଡ଼ା), କଶ୍ୟପ (ବାମ ପୁଡ଼ା), ଅତ୍ରି (ବାକ୍) ଆଦି ସାତ ଇନ୍ଦ୍ରିୟ । ଏହାର ତାତ୍ପର୍ଯ୍ୟ ହେଉଛି ଇନ୍ଦ୍ରିୟମାନେ ସଂଯତ ରହିଲେ ଋଷିଙ୍କ ପରି ପଥପ୍ରଦର୍ଶକ ହୋଇ ପାରିବେ ।

ପ୍ରସିଦ୍ଧ ବେଦଜ୍ଞ ପଣ୍ଡିତ ସାତବଲେକର୍ ଋକ୍‌ବେଦର ଗୋଟିଏ ମନ୍ତ୍ର (୧,୨,୭)ର ମିତ୍ର ଓ ବରୁଣ ଶବ୍ଦରୁ ଅତି ସୁନ୍ଦର ବ୍ୟାଖ୍ୟ

କରିଛନ୍ତି । ମିତ୍ରର ଅର୍ଥ ଉଦ୍‌ଯାନ (*Hydrogen*) ଓ ବରୁଣର ଅର୍ଥ ଅମ୍ଳଜାନ (*Oxygen*) । ମିତ୍ରହିଁ ମାପକ (*Meter*) । ପ୍ରତ୍ୟେକ ବାଷ୍ପକୁ ଉଦ୍‌ଯାନ ସହ ତୁଳନା କରାଯାଏ, ଉଦ୍‌ଯାନ ବାଷ୍ପମାନଙ୍କ ଏକକ । ଏ ସବୁ ତତ୍ତ୍ୱର ଅନୁଶୀଳନ କଲେ ମିତ୍ର ବରୁଣଙ୍କ ବୀର୍ଯ୍ୟରୁ ଉର୍ବଶୀଙ୍କଠାରେ ବଶିଷ୍ଠ ଜନ୍ମହେବା କଥାର ବୈଜ୍ଞାନିକ ମୀମାଂସା କରାଯାଇ ପାରେ ।

ବେଦରେ ଯୁଦ୍ଧ କଥା ଅଛି । ଆକାଶୀୟ ପଦାର୍ଥବାଚୀ ବହୁ ବୈଦିକ ଶବ୍ଦ ଲୋକରେ ବହୁ ପୁରାତନ ରାଜାମାନଙ୍କ ନାମ ସହ ସମାନ । ଲୋକରେ ଏହି ରାଜାଙ୍କ ମଧ୍ୟରେ ଯୁଦ୍ଧ ହୁଏ । ତେଣେ ଅନ୍ୟ ଅର୍ଥରେ ଆକାଶୀୟ ଗ୍ରହ ନକ୍ଷତ୍ରମାନଙ୍କ ଯୋଗକୁ ଗ୍ରହଯୁଦ୍ଧ କୁହାଯାଏ † । ଏହା ବେଦରେ ଜ୍ୟୋତିଷ ବିଜ୍ଞାନର ସୂଚନା ଦିଏ । ଏହି ସବୁକୁ ଅଯୌକ୍ତିକ ଭାବରେ ତୁଳନା କରି କେତେକ ଲେଖକ ବେଦରୁ ଇତିହାସ କଥା ଚର୍ଚ୍ଚା କରନ୍ତି ।

## ଅଯୋଧ୍ୟା, ବ୍ରଜ, ଅର୍ବ ଆଦି ଶବ୍ଦ

ଅଥର୍ବବେଦରେ ଅଯୋଧ୍ୟା ଶବ୍ଦ ଅଛି । ଏଠାରେ ଅଯୋଧ୍ୟାର ଅର୍ଥ ଶରୀର । ଏହାର ବର୍ଣ୍ଣନା କରିବାକୁ ଯାଇ କୁହାଯାଇଛି—'ଆଠ ପରିଖା ଓ ନଅ ଦ୍ୱାରଯୁକ୍ତ ଅଯୋଧ୍ୟା ନଗରୀ । ଏଥିରେ ଜ୍ୟୋତିର୍ମୟ ହିରଣ୍ୟକୋଷ ଓ ସକଳ ପ୍ରକାର ବ୍ୟବସ୍ଥା ରହିଛି । ଏ ମଧ୍ୟରେ

---

† ତାରା ଗ୍ରହାଣାମାନ୍ୟୋନ୍ୟଂ ସ୍ୟାତାଂ ଯୁଦ୍ଧଂ ସମାଗମେ । (ସୂର୍ଯ୍ୟସିଦ୍ଧାନ୍ତ)

ଆତ୍ମାରୂପେ ଅଧିଷ୍ଠିତ ଯକ୍ଷଙ୍କୁ ବ୍ରହ୍ମବିତ୍‌ମାନେ ଜାଣନ୍ତି † ।’ ଜୀବର ଶରୀର ସୁଗଠିତ ଓ ସଂଗଠିତ । ଏପରି ଯନ୍ତ୍ର ମନୁଷ୍ୟଗଢ଼ା ଉତ୍କୃଷ୍ଟରୁ ଉତ୍କୃଷ୍ଟ ବ୍ୟୋମଯାନ ବା ରକେଟ୍‌ରେ ବି ଦୁର୍ଲଭ । ନବଦ୍ୱାର ବିଶିଷ୍ଟ ଶରୀରର ଏହି ବର୍ଣ୍ଣନା ଗୀତାରେ ମଧ୍ୟ ଅନୁସୃତ ହୋଇଛି * ।

ସମସ୍ତ ବ୍ୟବସ୍ଥା ପରିପୂର୍ଣ୍ଣ ଜୀବର ଶରୀର ମଧ୍ୟରେ ଜୀବାତ୍ମା ବିଦ୍ୟମାନ । ଏପରି ସ୍ଥଳ ପାଇ ଆତ୍ମା ଲୌକିକ ଓ ପାରଲୌକିକ ସୁଖ ପାଇଁ ଉଦ୍ୟମ କରେ—ଉଦ୍ୟମ ପାଇଁ ଉତ୍ସାହ ପାଏ । ଏହି ହୃଦୟଗ୍ରାହୀ ଭାବକୁ ନେଇ ପାର୍ଥିବ ‘ଅଯୋଧ୍ୟା’ ନଗରୀର ନାମକରଣ ହୋଇଛି । ମହାରାଜ ମନୁଙ୍କ ବଂଶଧରମାନେ ପ୍ରସିଦ୍ଧ ସରଯୁ ନଦୀ ତଟେ ଯେଉଁ ସୁବ୍ୟବସ୍ଥିତ ନଗର ବସାଇ ତହିଁରେ ସାନନ୍ଦେ କାଳାତିପାତ କରୁଥିଲେ, ତାହାକୁ ବେଦୋକ୍ତ ଶରୀରରୂପୀ ଅଯୋଧ୍ୟା ନାମ ଦେବାକୁ ଉଚିତ ମଣିଥିଲେ । ତେଣୁ ବେଦରୂପୀ ଶବ୍ଦଭଣ୍ଡାରରୁ ଏହି ନାମକୁ ନିର୍ବାଚନ

---

† ଅଷ୍ଟାଚକ୍ରା ନବଦ୍ୱାରା ଦେବାନାଂ ପୂରଯୋଧ୍ୟା ।
ତସ୍ୟାଂ ହିରଣ୍ୟୟଃ କୋଶଃ ସ୍ୱର୍ଗୋ ଜ୍ୟୋତିଷାବୃତଃ ।।
ତସ୍ମିନ୍ ହିରଣ୍ୟୟେ କୋଶେ ତ୍ର୍ୟରେ ତ୍ରିପ୍ରତିଷ୍ଠିତେ ।
ତସ୍ମିନ୍ ଯଦ୍ ଯକ୍ଷମାତ୍ମନ୍ୱତ୍ ତଦ୍ୱୈ ବ୍ରହ୍ମବିଦୋ ବିଦୁଃ ।।
(ଅଥର୍ବ ୧୦,୨,୩୧-୩୨)

* ନବଦ୍ୱାରେ ପୁରେ ଦେହୀ ନୈବ କୁର୍ବନ୍ନ କାରୟନ୍ ।
(ଭଗବଦ୍ ଗୀତା ୫,୧୩)

କରିଥିଲେ । ଏଥିରେ କେହି ଯଦି କହେ ଯେ ବେଦରେ ପାର୍ଥିବ ଅଯୋଧ୍ୟା ନଗରୀର ନାମ ଓ ବର୍ଣ୍ଣନା ଅଛି, ତାହାହେଲେ ଏହାକୁ ଯୁକ୍ତିହୀନ କଥା ବୋଲି କୁହାଯିବ ।

ସେହିପରି ଋଗ୍‌ବେଦରେ କୌଣସି ପାର୍ଥିବ ଦେଶର ବର୍ଣ୍ଣନା ନାହିଁ । ଋକ୍, ଋଷି, ନଗଶବ୍ଦ ପରି କୌଣସି ବୈଦିକ ଶବ୍ଦର ନାମ ନେଇ କୌଣସି ଦେଶର ନାମ ଗଢାଯାଇ ଥାଇପାରେ । ବେଦରେ ଅର୍ବନ୍ ଓ ଅର୍ବ ଶବ୍ଦ ଘୋଡ଼ା ଅର୍ଥରେ ଅଛି । ତେଣୁ ଯେଉଁ ସ୍ଥଳରେ ସୁନ୍ଦର ସୁନ୍ଦର ଘୋଡ଼ା ଦେଖାଯାନ୍ତି ସେହି ସ୍ଥଳକୁ ଅର୍ବ କୁହାଯାଇ ପାରେ । ବର୍ତ୍ତମାନ-କାଳର ଆରବ ଦେଶର ନାମ ବୋଧହୁଏ ଏହି ଅର୍ଥରୁ ଗୃହୀତ । କେଉଁ କେଉଁ ସ୍ଥଳରେ ବେଦରେ ଦ୍ୟୁଲୋକର ନାମ ଅର୍ବ । ଅର୍ବ=ଅଶ୍ୱ=କିରଣ । ସୁତରାଂ କିରଣସ୍ଥଳୀ ଦ୍ୟୁଲୋକର ନାମ ଅର୍ବ ।

ଋକ୍‌ବେଦ ( ୧,୧୧୬,୭ )ରେ ଗାନ୍ଧାରୀ ଶବ୍ଦ ଅଛି । ଏହା ଏକରକମ ତୃଣ ଯାହାକୁ ମେଷାଦି ପଶୁ ଆଦରସହ ଖାଆନ୍ତି । ଆଦିମ ମନୁଷ୍ୟମାନେ ତ୍ରିବିଷ୍ଟପ ବା ତିବ୍ବତରୁ ଧୀରେ ଧୀରେ ଏଣେତେଣେ ବିକ୍ଷିପ୍ତ ହେବାବେଳେ ବିଭିନ୍ନ ବୈଦିକ ଶବ୍ଦକୁ ନେଇ ବିଭିନ୍ନ ଦେଶର ନାମକରଣ କରିଥିଲେ । ବର୍ତ୍ତମାନର କାନ୍ଦାହାର ବା ଗାନ୍ଧାର ଦେଶରେ ମେଷୋପଯୋଗୀ ତୃଣ ଦେଖାଯାଉଥିବାରୁ ଏହି ଦେଶକୁ ଗାନ୍ଧାର ନାମରେ ନାମିତ କରାଯାଇଥିବା ସମ୍ଭବପର । ଏହିରୂପେ ବୈଦିକ ଶବ୍ଦ ‚ଶର୍ମନ୍'ରୁ ଜର୍ମାନୀ, 'ଆଦିତ୍ୟାଳୟ'ରୁ ଇଟାଲୀ ଆଦି ଦେଶର ନାମ ଉଦ୍ଭବ ।

ଋଗ୍ୱେଦରେ କୌଣସି ଦେଶର ନାମୋଲ୍ଲେଖ ନାହିଁ । ଏହାର ପ୍ରବଳ ପ୍ରମାଣ ହେଉଛି ଯେ ପ୍ରାଚୀନ ମନୁଷ୍ୟଙ୍କ ପ୍ରଥମ ବାସସ୍ଥଳୀ ତ୍ରିବିଷ୍ଟପ ( ତିବ୍ବତ ) ଓ ତତ୍ପରବର୍ତ୍ତୀ ବସତି ଆର୍ଯ୍ୟାବର୍ତ୍ତ ବା ଭାରତବର୍ଷର ନାମ ବେଦର କେଉଁ ସ୍ଥଳରେ ଆସେ ନାହିଁ । ଋଷିମାନେ ଯଦି ବେଦର ରଚୟିତା ହୋଇଥାନ୍ତେ ବା ବେଦରେ ଯଦି ଦେଶମାନଙ୍କ ନାମ ଉଲ୍ଲେଖ ଥାଆନ୍ତା, ତାହାହେଲେ ମନୁଷ୍ୟର ଆଦିମ ଦେଶର ନାମ ବେଦରେ ନିଶ୍ଚୟ ସ୍ଥାନ ପାଇଥାନ୍ତା । ସେହିପରି ବୈଦିକ ସଂସ୍କୃତିର ପ୍ରାଚୀନ ପୃଷ୍ଠଭୂମି ପଞ୍ଜାବ ବା ଉତ୍ତରପ୍ରଦେଶର ନାମ କାହିଁ ବେଦର କେଉଁ ସ୍ଥଳରେ ଆସେ ନାହିଁ । ଗାନ୍ଧାର, ଅର୍ବ, ମଗଧ ଆଦିର ନାମ ବେଦରେ ମିଳୁଥିବା ବେଳେ ଆର୍ଯ୍ୟାବର୍ତ୍ତ ବା ଭାରତବର୍ଷର ନାମ ମିଳୁନଥିବାରୁ ସ୍ପଷ୍ଟ ହୋଇଯାଏ ଯେ ପୂର୍ବୋକ୍ତ ସକଳ ନାମ ନିତ୍ୟାର୍ଥରେ ଆସନ୍ତି । ଏମାନଙ୍କ ସହ ଲୌକିକ ଓ ଭୌଗୋଳିକ ନାମମାନଙ୍କର ସମ୍ପର୍କ ନାହିଁ ।

ଅର୍ବ, ଗାନ୍ଧାର ପରି ବ୍ରଜ ଶବ୍ଦ ବେଦରେ ଆସେ । ବ୍ରଜର ଅର୍ଥ ଗୌଗୋଷ୍ଠ । 'ଗୌ' ର ଅର୍ଥ ଗବାଦି ପଶୁ, କିରଣ । ଏଣୁ ବ୍ରଜର ଅର୍ଥ କେଉଁଠାରେ ଲୌକିକ ଗୌଗୋଷ୍ଠ ଓ କେଉଁ ସ୍ଥଳରେ କିରଣସ୍ଥଳୀ ସୂର୍ଯ୍ୟ ବା ଦେଯୀ ଅର୍ଥରେ ଆସେ । ମଥୁରା, ବୃନ୍ଦାବନ ନିକଟସ୍ଥ ବ୍ରଜର ନାମ ଏହି ଅର୍ଥରୁ ଗୃହୀତ ।

ସପ୍ତମ ଅଧ୍ୟାୟରେ ଆର୍ଯ୍ୟ ଶବ୍ଦର ବ୍ୟାଖ୍ୟା କରିବାବେଳେ କୁହାଯାଇଛି ଯେ ବେଦରେ ଏହି ଶବ୍ଦ ଶ୍ରେଷ୍ଠ ଓ ନୀତିବାନ୍ ମନୁଷ୍ୟଙ୍କୁ

ଲକ୍ଷ୍ୟ କରି କୁହାଯାଇଥାଏ । ଏହି ଅର୍ଥରେ ଜର୍ମାନ୍ ଦେଶସମ୍ଭୂତ ହିଟ୍‌ଲର୍ ବହୁବାର ନିଜକୁ 'ଆର୍ଯ୍ୟ' ବୋଲି ସମ୍ବୋଧନ କରିଛନ୍ତି । ରାମାୟଣ, ମହାଭାରତରେ ଜ୍ୟେଷ୍ଠ ଓ ଶ୍ରେଷ୍ଠ ଅର୍ଥରେ ଏହି ଶବ୍ଦ ବ୍ୟବହୃତ ହୋଇଛି । ବେଦରେ ଆର୍ଯ୍ୟ ଶବ୍ଦ ଦେଖି କେହି କେହି ଐତିହାସିକ ସେଥିରୁ ପ୍ରାଚୀନ ମନୁଷ୍ୟଙ୍କ ଇତିହାସ ବ୍ୟାଖ୍ୟା କରନ୍ତି । ଏମାନଙ୍କ ମତରେ ପ୍ରାଚୀନ ମନୁଷ୍ୟ ଗୋଷ୍ଠୀଙ୍କ ନାମ ଆର୍ଯ୍ୟ । ଏହା ଏକ ଭ୍ରମ ଧାରଣା ।

## ଗଙ୍ଗା, ଯମୁନାଦି ଶବ୍ଦ

ଅଷ୍ଟମ ଅଧ୍ୟାୟରେ ବେଦରୁ ବେଦର କାଳ ସମ୍ବନ୍ଧରେ ଆଲୋଚନା କରିବା ବେଳେ ବେଦୋକ୍ତ ସରସ୍ୱତୀ, ସପ୍ତସିନ୍ଧୁ ଆଦି ଶବ୍ଦମାନଙ୍କ ବ୍ୟାଖ୍ୟା କରାଯାଇଥିଲା । ସେଠାରେ ଦର୍ଶାଯାଇଥିଲା ଯେ ଏ ସବୁ ଲୌକିକ ନଦୀ ନୁହନ୍ତି । ଧାତ୍ୱାର୍ଥରୁ ନଦୀ ଶବ୍ଦ 'ବେଗଯୁକ୍ତ ଚଳନଶୀଳ' ଆଦି ଅର୍ଥକୁ ଗ୍ରହଣ କରେ । ଲୌକିକ ନଦୀମାନେ ଏହି ସବୁ ଲକ୍ଷଣଯୁକ୍ତ ହୋଇଥିବାରୁ ଲୋକରେ ନଦୀ ନାମରେ ଖ୍ୟାତ ହୁଅନ୍ତି । କିନ୍ତୁ ସୂକ୍ଷ୍ମାର୍ଥରେ ଆଉ ଯେ ଅନେକ ବସ୍ତୁ ଏହି ସବୁ ଗୁଣଯୁକ୍ତ ଏ କଥା ଲୋକରେ ସୀମିତ ଓ ସଙ୍କୀର୍ଣ୍ଣ ଅର୍ଥ ଗ୍ରହଣ କରିବାବେଳେ ଉପଲବ୍ଧ ହୁଏ ନାହିଁ ।

ଏ କଥା ସତ୍ୟ ଯେ ପୃଥିବୀରେ ଆଜିକାଲି ବହୁଥିବା କେତେକ ନଦୀର ନାମ ବେଦରେ ଆସେ । ପରନ୍ତୁ ସେ ସବୁ ଲୌକିକ

ନଦୀମାନଙ୍କ ଅର୍ଥରେ ନଅସି ଅନ୍ୟାର୍ଥରେ ଅସେ । ଅନେକ ସ୍ଥଳରେ ଏ ସବୁ ନଦୀ ସଂଖ୍ୟାମାନଙ୍କ ସହ ଅସନ୍ତି ଯେପରି ଦଶାସ୍ୟା, ପଞ୍ଚନଦ୍ୟଃ, ସପ୍ତସିନ୍ଧବଃ ଆଦି । କୌଣସି ଦେଶରେ ବହୁଥିବା ନଦୀ ସଂଖ୍ୟା ଯଦି ଏହି ସଂଖ୍ୟାମାନଙ୍କ ମଧ୍ୟରୁ ଗୋଟିଏ ସହ ସମାନ ହୋଇଯାଏ, ତେବେ ଲୋକେ ପ୍ରଶ୍ନ କରନ୍ତି ଯେ ସେହି ଦେଶର ନାମ ବେଦରେ ଅଛି । ନଦୀ ଶବ୍ଦର ବିଭିନ୍ନ ଅର୍ଥ ଦୃଷ୍ଟିରୁ ଏହି ସଂଖ୍ୟାବାଚୀ ନଦୀ ଶବ୍ଦମାନ ସାଧାରଣତଃ ଆକାଶ ଓ ଶରୀର ମଧ୍ୟସ୍ଥ କୌଣସି କୌଣସି ବିଷୟର ବ୍ୟାଖ୍ୟା କରିଥାନ୍ତି । ଏହି କଥାକୁ ଭୁଲିଗଲେ ମଧ୍ୟ ଅନ୍ୟ ଏକ କାରଣ ଯୋଗୁଁ ଦେଶ ଓ ନଦୀ ସହ ଏପ୍ରକାର ସମ୍ବନ୍ଧ କରିବା ଅନୁଚିତ । ବେଦରେ ଯେଉଁ ଯେଉଁ ସ୍ଥଳରେ ସଂଖ୍ୟାବାଚୀ ନଦୀମାନଙ୍କ ବର୍ଣ୍ଣନା ହୋଇଛି, ସେଠାରେ ସେମାନେ ବହୁଥିବା ଭୂମିର ସୀମାର ନାମମାନ ଉଲ୍ଲେଖ ନାହିଁ । ବେଦରେ କୌଣସି ସୀମାବଦ୍ଧ ସ୍ଥଳ ସମ୍ବନ୍ଧରେ ଉଲ୍ଲେଖ ନାହିଁ । ହେବ ବା କିପରି ? ଯୁଦ୍ଧ ବା ଭୂକମ୍ପ ଦ୍ୱାରା କୌଣସି ଦେଶର ରାଜନୈତିକ ବା ଭୌଗୋଳିକ ସୀମା ପରିବର୍ତ୍ତିତ ହୋଇପାରେ । ପରନ୍ତୁ ବେଦ ନିତ୍ୟ ସନାତନ ।

'ପଞ୍ଚନଦ୍ୟଃ' ଶବ୍ଦ ଆସିବା ସ୍ଥଳରେ ଯଦି ସେ ସବୁର ଅବବାହିକାର ସୀମା ଉଲ୍ଲେଖ ନଥାଏ, ତେବେ ତାହାକୁ ପଞ୍ଜାବ କହିବା କିପରି ? ଏ ପାଞ୍ଚନଦୀ ରୁଷ୍ କିମ୍ବା ଜାପାନର ନଦୀ ନହେବେ କାହିଁକି ? ପ୍ରକୃତରେ ନଦୀ ଓ ଦେଶର ନାମ ବେଦରେ ଆସେ ନାହିଁ

ବେଦରେ ନଦୀର ନାମ କାରଣ, ବାଣୀ, ଇନ୍ଦ୍ରିୟ ଓ ନାଡ଼ୀବାଚକ ନଦୀ ଅର୍ଥରେ ଆସେ । ପ୍ରକରଣ ଅନୁସାରେ ଏ ସବୁର ଅର୍ଥ କରିବାକୁ

ଛୁଏ । ଋକ୍‌ବେଦର ଗୋଟିଏ ମନ୍ତ୍ର ନିମ୍ନରେ ଦିଆଗଲା । ଏଥିରେ ବହୁ ଲୌକିକ ନଦୀମାନଙ୍କ ନାମ ଆସିବାହେତୁ ସାୟଣ ପ୍ରଭୃତି ମଧ୍ୟକାଳୀନ ଭାଷ୍ୟକାର ଓ ତାହାଙ୍କ ଅନୁଗାମୀ ନବୀନ ଭାଷ୍ୟକାରମାନେ ଗଭୀର ସନ୍ଧାନରେ ପଡ଼ି ସେ ସବୁର ବିକୃତ ଓ ଐତିହାସିକ ଅର୍ଥ କରିଛନ୍ତି ।

ମନ୍ତ୍ରଟି ହେଉଛି—

ଇମଂ ମେ ଗଙ୍ଗେ ଯମୁନେ ସରସ୍ୱତି ଶୁତୁଦ୍ରି ସ୍ତୋମଂ ସଚତା ପରୁଷ୍ଣ୍ୟା ।
ଅସିକ୍ନ୍ୟା ମରୁଦ୍‌ବୃଧେ ବିତସ୍ତୟାର୍ଜୀକୀୟେ ଶୃଣୁହ୍ୟା ସୁଷୋମୟା ॥
(ଋକ୍ ୧୦,୭୫,୫)

ମହର୍ଷି ଦୟାନନ୍ଦ ସରସ୍ୱତୀ 'ଋକ୍‌ବେଦାଦି ଭାଷ୍ୟଭୂମିକା' ଗ୍ରନ୍ଥରେ ଗ୍ରନ୍ଥପ୍ରାମାଣ୍ୟାପ୍ରାମାଣ୍ୟ ବିଷୟ ଆଲୋଚନା କରିବା ବେଳେ ଶବ୍ଦାଦି ତୀର୍ଥ ଓ ଗଙ୍ଗାଦି ନଦୀମାନଙ୍କ ସମ୍ବନ୍ଧରେ ଅତି ମହତ୍ତ୍ୱପୂର୍ଣ୍ଣ ବ୍ୟାଖ୍ୟା କରିଛନ୍ତି । ଶତପଥ ବ୍ରାହ୍ମଣ, ଛାନ୍ଦୋଗ୍ୟୋପନିଷଦ, ନିଘଣ୍ଟୁ ଆଦିରେ ତୀର୍ଥ, ଗଙ୍ଗା ପ୍ରଭୃତି ଶବ୍ଦର ଉଚିତ ଅର୍ଥ ପ୍ରକାଶ କରାଯାଇଛି । ଅଗ୍ନିହୋତ୍ରଠାରୁ ଅଶ୍ୱମେଧ ଯଜ୍ଞ ବା (ସ୍ୱିଷ୍ଟକୃତ ଯଜ୍ଞ) ପର୍ଯ୍ୟନ୍ତ କୌଣସି ଯଜ୍ଞର ସମାପ୍ତି ପରେ ମଙ୍ଗଳ ମନରେ ସ୍ନାନ କରିବା, ବେଦାଦି ସତ୍‌ଶାସ୍ତ୍ରର ସ୍ୱାଧ୍ୟାୟ କରିବା, ଗୁରୁଜନଙ୍କୁ ସେବା କରିବା ବା ପରମାତ୍ମାଙ୍କୁ ଉପାସନା କରିବା ଆଦି 'ତୀର୍ଥ' ଅଟେ † । ପ୍ରକୃତରେ

† ଦେଖ, ଶତପଥ (୧୨,୧,୧,୧ ଓ ୫), ଛାନ୍ଦୋଗ୍ୟ (୮,୧୫), ଶୁକ୍ଳ ଯଜୁର୍ବେଦୀୟ ସଂହିତା (୧୬,୪୨ ଓ ୬୧)

କାଶୀ, ପ୍ରୟାଗ, ଗଙ୍ଗାଦି ସ୍ଥଳ ବିଶେଷ ତୀର୍ଥ ନୁହନ୍ତି । ମନୁଷ୍ୟ ସତ୍‌କର୍ମ ଦ୍ୱାରା ତୀର୍ଥ ପ୍ରାପ୍ତ ହୁଏ । 'ଗୟା' ଶବ୍ଦ ସମ୍ବନ୍ଧରେ ସ୍ୱାମୀ ଦୟାନନ୍ଦ ଉପରୋକ୍ତ ଗ୍ରନ୍ଥରେ ବ୍ୟାଖ୍ୟା କରିଛନ୍ତି । ପ୍ରାଣର ପ୍ରାଣ ପରମାତ୍ମାଙ୍କ ପ୍ରତିପାଦନକର୍ତ୍ତା ଗାୟତ୍ରୀ ମନ୍ତ୍ର ହିଁ 'ଗୟା' । ପ୍ରାଣକୁ ପ୍ରାଣାୟାମ ଦ୍ୱାରା ସଂଯତ ରଖି ତତ୍ତ୍ୱପ୍ରାପ୍ତି କରିବା 'ଗୟାଶ୍ରାଦ୍ଧ' । ଗୁରୁ, ସନ୍ତାନ ଓ ଜୀବଙ୍କୁ ଶ୍ରଦ୍ଧା କରିବା ଗୟାଶ୍ରାଦ୍ଧ † । ବେଦରେ ତୀର୍ଥ, ଗୟାଦି ଶବ୍ଦ ଉପରୋକ୍ତ ଅର୍ଥରେ ଆସେ ।

ଉପରେ ଦିଆଯାଇଥିବା ଋକ୍‌ବେଦର ମନ୍ତ୍ର ଯେଉଁଥିରେ ଗଙ୍ଗାଦି ଶବ୍ଦ ଅଛି, ସେ ସମ୍ବନ୍ଧରେ ବି ଋଷି ଦୟାନନ୍ଦ ବ୍ୟାଖ୍ୟା ସୂଚନା ଦେଇଛନ୍ତି । ସେ କହୁଛନ୍ତି—'ଏହି ମନ୍ତ୍ରରେ ଗଙ୍ଗାଦି ନାମ ଇଡ଼ା, ପିଙ୍ଗଳା, ସୁଷୁମ୍ନା, କୂର୍ମ ଓ ଜଠରାଗ୍ନିର ନାଡ଼ି ବିଶେଷ । ଏ ସବୁ ଦ୍ୱାରା ଯୋଗାଭ୍ୟାସ କରି ପରମେଶ୍ୱରଙ୍କ ଉପାସନା କଲେ ମନୁଷ୍ୟ ସକଳ ଦୁଃଖରୁ ତରିଯାଏ । ନାଡ଼ିମାନଙ୍କଠାରେ ମନକୁ ସ୍ଥିର ରଖିଲେ ଉପାସନା ସିଦ୍ଧି ହୁଏ । ଏଣୁ ମନ୍ତ୍ରରେ ଏ ସବୁର ଗଣନା କରାଯାଇଛି । ଏ ସବୁ ନାମରୁ ନାଡ଼ିମାନଙ୍କ ଅର୍ଥ ଜଣାପଡ଼ିବା ଉଚିତ * ।

---

† ଦେଖ, ଶତପଥ (୧୪,୮,୫,୬ ଓ ୭), ନିଘଣ୍ଟୁ (୨,୨)

* ଇଡ଼ା-ପିଙ୍ଗଳା-ସୁଷୁମ୍ନା-କୂର୍ମନାଡ୍ୟାଦୀନାଂ ଗଙ୍ଗାଦି ସଂଜ୍ଞାସ୍ତୀତି । ତାସାଂ ଯୋଗସମାଧୌ ପରମେଶ୍ୱରସ୍ୟୋପାସନେନ ଗ୍ରହଣାତ୍ । ତସ୍ୟ ଧ୍ୟାନଂ ଦୁଃଖନାଶକଂ ମୁକ୍ତିପ୍ରଦଂ ଚ ଭବତ୍ୟେବ । ତାସାମିଡ଼ାଦୀନାଂ ଧାରଣାସିଦ୍ଧ୍ୟର୍ଥଂ ଚିତ୍ତସ୍ୟ ସ୍ଥିରୀକରଣାର୍ଥଂ ଚ ସ୍ୱୀକରଣମସ୍ତୀତି ଚନ୍ଦ୍ର ଗ୍ରହଣାତ୍ । ଏତନ୍ମନ୍ତ୍ର ପ୍ରକରଣେ ପରମେଶ୍ୱରସ୍ୟାନୁବର୍ତ୍ତନାତ୍ । (ଋଷି ଦୟାନନ୍ଦକୃତ ଋଗ୍ୱେଦାଦି ଭାଷ୍ୟଭୂମିକା)

ଉପରୋକ୍ତ ମନ୍ତ୍ରରେ ଥିବା ଗଙ୍ଗାଦି ଶରୀରଗତ ନାଡ଼ି ଅଟନ୍ତି ଯେହେତୁ ଏମାନେ ବି 'ନଦନ୍ତି' ବା ନାଦ କରନ୍ତି । ଗଙ୍ଗା ରକ୍ତବାହୀ ନାଡ଼ି, ଯମୁନା ଗତିଦାତା ନାଡ଼ି, ସରସ୍ୱତୀ ଓ ସୁଷୁମ୍ନା ଜ୍ଞାନତନ୍ତୁ ନାଡ଼ି, ଏ ଦୁଇର ଖିବ୍ର ଅଂଶ ଶୁତୁଦ୍ରୀ, ପରୁଷ୍ଣୀ ଉଷ୍ଣନାଡ଼ି, ଆର୍ଜୀକୀୟା ସରଳ ନାଡ଼ି, ଅସିକ୍ନୀ ଅସେଚକ ନାଡ଼ି, ମରୁଦ୍‌ବୃଧା ସ୍ପନ୍ଦନଶୀଳ ନାଡ଼ି ଇତ୍ୟାଦି ।

ଗଙ୍ଗା (ଇଡ଼ା) ଓ ଯମୁନା (ପିଙ୍ଗଳା)ର ମିଳନ ସ୍ଥଳରେ ଯେଉଁଠାରେ ସୁଷୁମ୍ନା ସରସ୍ୱତୀ ସୂକ୍ଷ୍ମ ଭାବରେ ଯୋଗ ହୁଏ † ସେଠାରେ ସ୍ନାନ କଲେ ବା ଯୋଗସାଧନ ବେଳେ ସେହି ସ୍ଥଳରେ ମନୋନିବେଶ ହେଲେ ଯୋଗସିଦ୍ଧି ହୁଏ ବୋଲି ବେଦରେ ଅଛି । ଏହି ଆଧ୍ୟାତ୍ମ ଭାବକୁ ନେଇ ଲୌକିକ ଗଙ୍ଗା ଯମୁନା ମିଳନସ୍ଥଳ ପ୍ରୟାଗରେ ସ୍ନାନ କଲେ ମୋକ୍ଷପ୍ରାପ୍ତି ହୁଏ ବୋଲି କଳ୍ପନା କରାଯାଇଛି ।

ପୂର୍ବରୁ କୁହାଯାଇଛି ଯେ ବାଣୀ, ଇନ୍ଦ୍ରିୟ ଓ କିରଣାର୍ଥରେ ନଦୀ ଶବ୍ଦ ବେଦରେ ବ୍ୟବହୃତ ହୁଏ । ଏହା ଛଡ଼ା ଯଜ୍ଞ ପ୍ରକରଣରେ ମଧ୍ୟ ନଦୀ ଶବ୍ଦମାନ ଅଛି ଯେପରି—ଅସିକ୍ନ୍ୟା ଯଜମାନୋ ନ ହେ ତା (ଋକ୍ ୪,୧୭,୧୫), ସରସ୍ୱତୀଂ ଯାଂ ପିତରୋ ହବନ୍ତେ (ଋକ୍ ୧୦, ୧୭,୯) ଇତ୍ୟାଦି । ଏଠାରେ ଅସିକ୍ନୀ, ସରସ୍ୱତୀ ଆଦି ଶବ୍ଦ ଯଜ୍ଞ ପ୍ରକରଣରେ ଅଛି ।

---

† ଇଡ଼ା ଗଙ୍ଗେତି ବିଜ୍ଞେୟା, ପିଙ୍ଗଳା ଯମୁନା ନଦୀ ।
ମଧ୍ୟେ ସରସ୍ୱତୀଂ ବିଦ୍ୟାତ୍ ପ୍ରୟାଗାଦି ସମସ୍ତଥା ॥ (ଶିବସ୍ୱରୋଦୟ ୩୭୪ ଶ୍ଲୋକ)

ପଣ୍ଡିତ ରଘୁନନ୍ଦନ ଶର୍ମା 'ବୈଦିକ ସମ୍ପତ୍ତି' ନାମକ ମୂଲ୍ୟବାନ ଗ୍ରନ୍ଥରେ ପୂର୍ବୋକ୍ତ 'ଇମଂ ମେ ଗଙ୍ଗେ ଯମୁନେ × × ×' ମନ୍ତ୍ରର ଅର୍ଥ ସୂର୍ଯ୍ୟର୍ ବିଭିନ୍ନ କିରଣ ବୋଲି ଦର୍ଶାଇଛନ୍ତି । ବର୍ତ୍ତମାନ ପ୍ରଚଳିତ ଅଛି ଯେ ଗଙ୍ଗା ବିଷ୍ଣୁଙ୍କ ଚରଣରୁ ଜାତ ଓ ଯମୁନା ସୂର୍ଯ୍ୟଙ୍କ କନ୍ୟା । ବେଦରେ ବିଷ୍ଣୁ ସୂର୍ଯ୍ୟାର୍ଥରେ ଆସେ † । ଏଣୁ ଗଙ୍ଗା ଯମୁନାଦି ସୂର୍ଯ୍ୟ-କିରଣର ବର୍ଣ୍ଣନା ବେଦରେ ଅଛି । ଉପରୋକ୍ତ ମନ୍ତ୍ରରେ ସୂର୍ଯ୍ୟର ନଅ-କିରଣର ଉଲ୍ଲେଖ ଅଛି । ପୁଣି ବେଦରେ ଅଛି—ଦଶ କିରଣରୁ ଗୋଟିକର ନାମ କପିଳ ✱ । ସୂର୍ଯ୍ୟ କିରଣର ସଂଖ୍ୟା ଦଶ + । ଉପରୋକ୍ତ ନଅ ଓ କପିଳ ମିଶି ଦଶ ହୁଏ । ଏଥିରୁ ସାତ ପ୍ରଧାନ । 'ସପ୍ତରଶ୍ମିଭିଃ', 'ସପ୍ତସ୍ୱରଃ' ଆଦି ଏହି ସାତ କିରଣକୁ ବୁଝାଏ । ପୁଣି ପ୍ରତ୍ୟେକ କିରଣ ତିନି ମୂଳତତ୍ତ୍ୱର ସମାହାର × । ଏହା ହେଉଛି ଅପ୍ (*Ether*), ଜଳ ଓ ଅଗ୍ନି ।

ଯଜୁର୍ବେଦର ଗୋଟିଏ ସ୍ଥଳରେ 'ପଞ୍ଚନଦ୍ୟଃ' ଓ 'ଦେଶ' ଶବ୍ଦ ଏକାଠି ଗୋଟିଏ ମନ୍ତ୍ରରେ ଅଛି ।

---

† ଇଦଂ ବିଷ୍ଣୁର୍ବିଚକ୍ରମେ ।

✱ ଦଶାନାମେକଂ କପିଳଂ (ଋକ୍ ୧୦,୨୭,୧୬)

+ ରଶ୍ମିଭିର୍ଦଶଭିଃ (ଋକ୍ ୯,୯୭,୨୩)

× ତ୍ରିବୃତଂ ସପ୍ତତନ୍ତୁମ୍ । (ଋକ୍ ୧୦,୨୫,୬)

ତାହା ହେଉଛି—

ପଞ୍ଚନଦ୍ୟଃ ସରସ୍ୱତୀମପି ଯନ୍ତି ସସ୍ରୋତସଃ ।
ସରସ୍ୱତୀ ତୁ ପଞ୍ଚଧା ।ସୋ ଦେଶେଽଭବତ୍ସରିତ୍ ॥ (ଯଜୁ ୩୪,୧୧)

ଅର୍ଥାତ୍ — ପଞ୍ଚନଦୀ ସରସ୍ୱତୀରେ ମିଶନ୍ତି ଓ ସରସ୍ୱତୀ ପାଞ୍ଚଧାରା ରୂପେ ଦେଶରେ ବହେ । ଏଥିରୁ କେତେକ ଲେଖକ ପଞ୍ଜାବ କଥା ବାହାର କରନ୍ତି । ପରନ୍ତୁ ସରସ୍ୱତୀ ନଦୀ ପଞ୍ଜାବରେ ନାହିଁ, ଏହା ପଞ୍ଜାବରେ ବହେ ନାହିଁ ଓ କୌଣସି ପାଞ୍ଚ ନଦୀ ସରସ୍ୱତୀ ସହ ପଞ୍ଜାବରେ ମିଶନ୍ତି ନାହିଁ । ଏହି ମନ୍ତ୍ରର ତାତ୍ପର୍ଯ୍ୟ ହେଉଛି ପାଞ୍ଚଜ୍ଞାନେନ୍ଦ୍ରିୟ (ପଞ୍ଚନଦ୍ୟଃ)ର ଭାବନା ବାଣୀ (ସରସ୍ୱତୀ) ରୂପରେ ନିର୍ଗତ ହୁଏ ଓ ବାଣୀ ପାଞ୍ଚକର୍ମେନ୍ଦ୍ରିୟକୁ ନିୟନ୍ତ୍ରଣ କରିବା ଆବଶ୍ୟକ । ଏ ସମସ୍ତ କ୍ରିୟା ଶରୀରରୂପୀ ଦେଶରେ ଘଟେ ।

## କୃଷ୍ଣଙ୍କ ବ୍ରଜଲୀଳା

ଋକ୍‌ବେଦର କେତେକ ମନ୍ତ୍ରରେ କୃଷ୍ଣ, ଅର୍ଜୁନ, ରାଧା, ରୋହିଣୀ, ଗୋପ, ଗୌ, ବ୍ରଜ ଆଦି ଶବ୍ଦ ଆସେ । ଏ ସମସ୍ତ କୌଣସି କୌଣସି ନିତ୍ୟ ଓ ସନାତନ ଅର୍ଥରେ ଆସନ୍ତି । ଏ ସବୁରେ ଆଧ୍ୟାତ୍ମିକ ଓ ଆଧିଭୌତିକ ତଥ୍ୟମାନଙ୍କ ସୂଚନା ରହିଛି । ପରନ୍ତୁ ବେଦମନ୍ତ୍ରର ଏ ସବୁ ତଥ୍ୟସହ ଐତିହାସିକ କୃଷ୍ଣାର୍ଜୁନ ଆଦିଙ୍କ ଇତିହାସକୁ ମିଶାଇ ପୁରାଣମାନଙ୍କରେ କିମ୍ବଦନ୍ତୀମାନ ଗଢାଯାଇଛି । ଏହି ସବୁ କିମ୍ବଦନ୍ତୀ ପଢିଲେ ଐତିହାସିକ ସତ୍ୟ ଉପଲବ୍ଧ ହୁଏ ନାହିଁ କି ବେଦୋକ୍ତ ସିଦ୍ଧାନ୍ତଗୁଡ଼ିକର ଶୁଦ୍ଧରୂପ ମିଳେ ନାହିଁ ।

ବେଦର ଏପରି କେତେକ ମନ୍ତ୍ରରୁ ଭାଗବତ ପୁରାଣରେ କୃଷ୍ଣଙ୍କ ବାଲ୍ୟଲୀଳା କଥା କଳ୍ପନା କରାଯାଇଛି ବୋଲି କେତେକ ପଣ୍ଡିତ ଅନୁମାନ କରନ୍ତି । ଉପରୋକ୍ତ ବୈଦିକ ଶବ୍ଦମାନଙ୍କ ସହ ମହାଭାରତୀୟ ଶ୍ରୀକୃଷ୍ଣଙ୍କ ଜୀବନ-ବୃତ୍ତାନ୍ତର କେତେକାଂଶ ମିଶାଇ ଯୋଗୀରାଜ ଶ୍ରୀକୃଷ୍ଣଙ୍କ ଅମଳ ଚରିତକୁ ବିକୃତ କରାଯାଇଛି ବୋଲି ଏହି ପଣ୍ଡିତମାନଙ୍କ ମତ

ଋକ୍‌ବେଦର (୬,୯,୧) ମନ୍ତ୍ରରେ ଅଛି—'ଅହଶ୍ଚ କୃଷ୍ଣମହରର୍ଜୁନଂ ଚ'— ଅର୍ଥାତ୍ ଦିବସର ନାମ କୃଷ୍ଣ ଓ ଅର୍ଜୁନ । ଋକ୍ (୧,୩୦,୪)ରେ ଅଛି—'ଗୋପତିଂ ରାୟୀନାଂ ପତେ' । ଏଠାରେ ରାୟୀପତି ଅର୍ଥାତ୍ ଧନ ଓ ଅନ୍ନଦାତା ପରମାତ୍ମାଙ୍କୁ ପ୍ରାର୍ଥନା ପାଇଁ ସଙ୍କେତ ରହିଛି । 'ଗୋ' ଶବ୍ଦର ଅର୍ଥ କିରଣ, ଗବାଦି ପଶୁ । ତେଣୁ ଗୋ ଗୋଷ୍ଠ ଅଟେ ଦେଶୀ, ବ୍ରଜ ଆଦି । ବୋଧହୁଏ ଏହି ସବୁ ଶବ୍ଦ ସହ କେତେକ ଐତିହାସିକ ତଥ୍ୟ ମିଶାଇ କୃଷ୍ଣଙ୍କ ବାଲ୍ୟଲୀଳା କଳ୍ପନା କରାଯାଇଛି । ଭଗବତ୍‌ଗୀତାରେ କୃଷ୍ଣଙ୍କ ବିଭୂତି—'କବୀନାମୁଶନା କବିଃ' (ଗୀତା ୧୦,୩୭), ଋକ୍‌ବେଦର (୪,୨୬,୧) ମନ୍ତ୍ରର ଅନୁସରଣ ମାତ୍ର । ଉଶନା ବା ଶୁକ୍ରଗ୍ରହର ବକ୍ରଗତିକୁ ବେଦରେ 'କାବ୍ୟଂ' ବୋଲି କୁହାଯାଇଛି । ଦିବସାର୍ଥବାଚୀ କୃଷ୍ଣାର୍ଜୁନ ଓ ଉଶନା (ଶୁକ୍ର)ର କାବ୍ୟ ଏ ସମସ୍ତ ଅକାଶୀୟ ତଥ୍ୟ । ଆକାଶୀୟ ବିଜ୍ଞାନର ଗବେଷଣା କଲେ ଏ ସବୁର ତାତ୍ପର୍ଯ୍ୟ ଉପଲବ୍ଧ ହେବ । ଏହା ନକରି ଐତିହାସିକ ନାମ ସହିତ ବୈଦିକ ଶବ୍ଦମାନଙ୍କୁ ଯୋଗ କରି ମନ୍ତ୍ରାର୍ଥ କଲେ ବିଭ୍ରାନ୍ତି ସୃଷ୍ଟି ହେବ । ଆଜିକାଲି ଏହାହିଁ ହେଉଛି ।

## ଗୋତମ ଅହଲ୍ୟା ଉପାଖ୍ୟାନ

ଷଷ୍ଠ ଅଧ୍ୟାୟରେ ଇନ୍ଦ୍ରବୃତ୍ର କଥା ଆଲୋଚନା କରିବାବେଳେ ଆମ୍ଭେମାନେ ଦେଖିଥିଲେ ଯେ ସୂର୍ଯ୍ୟ ଓ ମେଘର ବୈଦିକ ବର୍ଣ୍ଣନାରୁ କିପରି ବାଇବେଲ୍, କୋରାନ୍ ଓ ପୁରାଣ ଶାସ୍ତ୍ରମାନଙ୍କରେ କିମ୍ଭୂତକିମାକାର କଳ୍ପନାମାନ କରାଯାଇଛି । ଏଠାରେ ଏପରି ଅନ୍ୟ ଏକ ଉଦାହରଣ ଦିଆଯାଉଛି ।

ଶତପଥ ବ୍ରାହ୍ମଣରେ ଅଛି— ସୂର୍ଯ୍ୟର ନାମ ଇନ୍ଦ୍ର । ଦିନର ଲୟ କରୁଥିବା ହେତୁ ରାତ୍ରିର ନାମ ଅହଲ୍ୟା । ଜୀବ ଭାବରେ ଗତି କରୁଥିବା ହେତୁ ଚନ୍ଦ୍ରମାର ନାମ ଗୋତମ । ରାତ୍ରି ଓ ଚନ୍ଦ୍ରମା—ଅହଲ୍ୟା ଓ ଗୋତମ— ସ୍ତ୍ରୀ ପୁରୁଷ ସମାନ ରୂପକାଳଙ୍କାର । ଏହି ଦମ୍ପତିଙ୍କ ଶୃଙ୍ଗାରରେ ବିଘ୍ନ ଆଣୁଥିବା ସୂର୍ଯ୍ୟ ବା ଇନ୍ଦ୍ର ଜାରକର୍ମ କରେ । ଅର୍ଥାତ୍ ଅହଲ୍ୟା ଓ ଗୋତମଙ୍କ ସହଧର୍ମରେ ଇନ୍ଦ୍ର ବାଧା ଦିଏ । ବେଦବ୍ୟାଖ୍ୟାତା ଶତପଥ ବ୍ରାହ୍ମଣର ଏହି ରୂପକାଳଙ୍କାର ବେଦକୋଷରୁ ଗୃହୀତ । ପୁରାଣ ଶାସ୍ତ୍ରମାନଙ୍କରେ ଉପରୋକ୍ତ ବର୍ଣ୍ଣନାକୁ ଅପଭ୍ରଷ୍ଟ କରି କୁହାଯାଇଛି— ଇନ୍ଦ୍ରନାମକ ଦେହଧାରୀ ରାଜା ଦେବଲୋକରେ ଥିଲେ । ସେ ଗୋତମ ଋଷିଙ୍କ ସ୍ତ୍ରୀ ଅହଲ୍ୟାଙ୍କ ସହ ଜାରକର୍ମ କଲେ । ଗୋତମ୍ ଏଥିରେ କ୍ରୁଦ୍ଧ ହୋଇ ଦୁହିଁଙ୍କୁ ଶାପ ଦେଲେ ଇତ୍ୟାଦି ଇତ୍ୟାଦି ।

## ଡାଃ ରେଲେଙ୍କ ଗବେଷଣା

ମହାରାଷ୍ଟ୍ରର ପ୍ରସିଦ୍ଧ ପଣ୍ଡିତ ଡାଃ ଭି. ଜି. ରେଲେ ବୈଦିକ ଦେବତା (*Vedic Gods*) ନାମରେ ଏକ ମୂଲ୍ୟବାନ ଗ୍ରନ୍ଥ ରଚନା କରିଛନ୍ତି । ବେଦ-ମନ୍ତ୍ରମାନଙ୍କରେ ଆସୁଥିବା ଇନ୍ଦ୍ର, ମିତ୍ର, ବରୁଣାଦି ଶବ୍ଦକୁ ସେ ଶରୀରସ୍ଥ ଚକ୍ର, ନାଡ଼ି, ସ୍ନାୟୁ ଆଦି ଅର୍ଥରେ ଗ୍ରହଣ କରି ମାନବ ଶରୀରର ବିଭିନ୍ନ ସଂସ୍ଥାନମାନଙ୍କ ବର୍ଣ୍ଣନା କରିଛନ୍ତି । ଏହି ଗ୍ରନ୍ଥର ଏକ ସ୍ଥଳରେ ସେ ଲେଖିଛନ୍ତି—'ସ୍ନାୟୁ-ସଂସ୍ଥାନର ରଚନା ସମ୍ବନ୍ଧୀୟ ଆମ୍ଭମାନଙ୍କ ଆଧୁନିକ ଜ୍ଞାନ, ଋକ୍‌ବେଦର ଜଗତ-ସମ୍ବନ୍ଧୀ ବର୍ଣ୍ଣନା ସହ ଏତେ ଅଧିକ ସାମଞ୍ଜସ୍ୟ ରଖେ ଯେ ମନରେ ପ୍ରଶ୍ନ ଉଠେ ବେଦ ବାସ୍ତବରେ ଧର୍ମଗ୍ରନ୍ଥ ନା ସ୍ନାୟୁସଂସ୍ଥାନର ରଚନା ଓ କ୍ରିୟା ସମ୍ବନ୍ଧୀ ବିଜ୍ଞାନ ଗ୍ରନ୍ଥ । ଏହି ଶେଷୋକ୍ତ ଜ୍ଞାନର ପୂର୍ଣ୍ଣ ବୋଧ ବିନା ମନୋବୈଜ୍ଞାନିକ ଓ ଦାର୍ଶନିକ ବିଚାର ଠିକ୍‌ରୂପେ ଉପଲବ୍ଧ ହୁଏ ନାହିଁ † ।' ଏହା ପରେ ଡାଃ ରେଲେ ଦୁଇଟି ମହତ୍ତ୍ୱପୂର୍ଣ୍ଣ ବିଷୟ

---

† *Our present anatomical knowledge of the nervous system tallies so accurately with the literal description of the world given in the Rig-Veda that a question arises in the mind whether the Vedas are really religious books or whether they are books on anotomy and physiology of the nervous system, without a thorough knowledge of which psychological deductions and philosophical speculations cannot be correctly made. ( Vedic Gods By V. G. Rele)*

ଉଲ୍ଲେଖ କରିଛନ୍ତି । ପ୍ରଥମତଃ ସେ ସ୍ୱୀକାର କରିଛନ୍ତି ଯେ ସ୍ନାୟୁ-ସଂସ୍ଥାନ ଓ ଅନ୍ୟାନ୍ୟ ଶାରୀରିକ ରଚନା ଓ କ୍ରିୟା ସମ୍ବନ୍ଧରେ ଆଧୁନିକ ବିଜ୍ଞାନ ଅସମ୍ପୂର୍ଣ୍ଣ । ଏହେତୁ ମନ୍ତ୍ରର ରହସ୍ୟଗୁଡ଼ିକ ପୂର୍ଣ୍ଣରୂପେ ବୁଝାଯାଏ ନାହିଁ । ଦ୍ୱିତୀୟତଃ ବେଦର ସକଳ ଭାଷା ସାଙ୍କେତିକ ରୂପରେ ଦିଆଯାଇଛି । ଏଣୁ ଏହାର ରହସ୍ୟ ବୁଝିବା ପାଇଁ ଯଥୋଚିତ ଯୋଗାଭ୍ୟାସ ଆବଶ୍ୟକ ।

ଅନନ୍ତା ବୈ ବେଦାଃ— (ତୈ: ବ୍ରା: ୩,୧୦,୧୧,୩ ଓ ୪) ଅର୍ଥାତ୍ ବେଦର ଜ୍ଞାନ ଅନନ୍ତ । ଯେଉଁ ମିତ୍ର, ବରୁଣ ଶବ୍ଦରୁ ଡା଼ଃ ରେଲେ ସ୍ନାୟୁ-ସଂସ୍ଥାନ ସମ୍ବନ୍ଧରେ ଅର୍ଥ କରନ୍ତି, ତାହାକୁ ପଣ୍ଡିତ ସାତବଲେକର ଉଦ୍‌ଜାନ, ଅମ୍ଳଜାନ ଅର୍ଥ କରନ୍ତି । ଏ ସବୁ ଅଧିଭୌତିକ ଅର୍ଥ ଛଡ଼ା ଏ ସକଳ ସ୍ଥଳରେ ବହୁ ଆଧ୍ୟାତ୍ମିକ ଭାବ ମଧ୍ୟ ଗ୍ରହଣ କରାଯାଇ ପାରେ । ଏଥିପାଇଁ ଅଭିଜ୍ଞତାକାରୀ ଯୋଗ ଓ ଜ୍ଞାନ ଥିବା ଉଚିତ ।

ଏତେବେଳେ ବଙ୍ଗଳାର ପ୍ରସିଦ୍ଧ ପଣ୍ଡିତ ସତ୍ୟବ୍ରତ ସାମଶ୍ରମୀଙ୍କ ଲିଖିତ ତ୍ରୟୀଭାଷ୍ୟ ନାମକ ବଙ୍ଗଳା ଗ୍ରନ୍ଥର ଇଂରାଜୀ ଭୂମିକାର ଗୋଟିଏ ବାକ୍ୟ ଉଦ୍ଧରଣ କରାଯାଉଛି— 'ଏହା ସ୍ପଷ୍ଟ ରୂପରେ ସ୍ପଷ୍ଟ ଯେ ଯେଉଁ ବ୍ୟକ୍ତି କୃଷି, ବିଜ୍ଞାନ, ବାଣିଜ୍ୟ, ଭୂଗର୍ଭ ଶାସ୍ତ୍ର, ଗଣିତ, ଜ୍ୟୋତିଷ, ଜଳ ବିଦ୍ୟା, ଅଗ୍ନି ବିଦ୍ୟା, ବନସ୍ପତି ଶାସ୍ତ୍ର, ପ୍ରାଣୀ ଶାସ୍ତ୍ର, ଶରୀର ବିଜ୍ଞାନ, ଯୁଦ୍ଧ ବିଦ୍ୟା ଆଦି ବିଦ୍ୟାରେ ଯଥେଷ୍ଟ ଜ୍ଞାନ ରଖିଥାନ୍ତି, ସେ କେବଳ ବେଦର ଉପଯୁକ୍ତ ଭାଷ୍ୟକାର ହୋଇ ପାରନ୍ତି ଓ ତାହାଙ୍କ

ବେଦଭାଷ୍ୟ ପ୍ରାମାଣିକ ହୋଇ ପାରେ † ।" ପଣ୍ଡିତ ସାମଶ୍ରମୀ ବେଦକୁ ତାଙ୍କ ଆଦି ପରି ଅନାଦି ଓ ଅପୌରୁଷେୟ ବୋଲି ଗ୍ରହଣ କରିଛନ୍ତି * । ଏଣୁ ବେଦକୁ ସକଳ ଜ୍ଞାନର ଭଣ୍ଡାର ବୋଲି ମାନିଛନ୍ତି । ଯେଉଁମାନେ ବିଭିନ୍ନ ବିଦ୍ୟାରେ ପାରଙ୍ଗମ ନଥାନ୍ତି ସେମାନେ ବେଦମନ୍ତ୍ରର ପ୍ରକୃତ ରହସ୍ୟ ବୁଝନ୍ତି ନାହିଁ ବରଂ ସେ ସବୁରୁ ଅନିତ୍ୟ ଇତିହାସମାନ ସଂଗ୍ରହ କରି ବେଦକୁ ଉପହାସ କରନ୍ତି ।

## ସାରାଂଶ

ଯେଉଁ ତିନୋଟି ସନ୍ଦେହରୁ କେତେକ ସମାଲୋଚକ ବେଦରେ ଐତିହାସିକ ତଥ୍ୟମାନ କଳ୍ପନା କରନ୍ତି, ତନ୍ମଧ୍ୟରୁ ଗୋଟିକର ବ୍ୟାଖ୍ୟା

---

† *It is perfectly plain, therefore, that it is only one that has attained a thorough knowledge of Agriculture, Commerce, Geology, Astronomy, Hydrostatics, Igneology, Botany, Zoology, Physiology and the Science of War, can alone be a fit interpreter of the Vedas and that, it is only a commentary written by such an expositor that can alone give full satisfaction and remove all doubts.* (ତ୍ରୟୀଭାଷା, ଭୂମିକା— ପଣ୍ଡିତ ସତ୍ୟବ୍ରତ ସାମଶ୍ରମୀ)

* ଅତଏବ ବାୟ୍ୱାଦିବଦ୍ ଅନାଦିବଦପୌରୁଷେୟତ୍ୱେନ ସ୍ୱୟମ୍ଭୁତୈବେୟମ୍ (ବେଦଃ) ଇତି କୃତାଃ— (ତ୍ରୟୀ ପରିଚୟ— ପଣ୍ଡିତ ସତ୍ୟବ୍ରତ ସାମଶ୍ରମୀ)

ଏହି ଗ୍ରନ୍ଥର ତୃତୀୟ ଅଧ୍ୟାୟରେ ଓ ଅବଶିଷ୍ଟ ଦୁଇଟି ଏହି ଅଧ୍ୟାୟରେ ଆଲୋଚିତ ହୋଇଛି । ତୃତୀୟ ଅଧ୍ୟାୟରେ 'ଋଷି' ଶବ୍ଦର ବିସ୍ତୃତ ବ୍ୟାଖ୍ୟା କରାଯାଇଛି । ପ୍ରାଚୀନ ଋଷିମୁନିମାନେ ବେଦମନ୍ତ୍ରର ରଚନା କରିଥିଲେ ବୋଲି କେତେକ ଲେଖକ ଯେଉଁ ମତ ପୋଷଣ କରନ୍ତି, ତାହା ଭ୍ରାନ୍ତ ଓ ଅମୂଳକ ବୋଲି ସେଠାରେ ପ୍ରତିପାଦିତ ହୋଇଛି । ସୃଷ୍ଟ୍ୟାଦ୍ୟରେ ଈଶ୍ୱର ପ୍ରକାଶିତ ବେଦଜ୍ଞାନରେ କୌଣସି ନିର୍ଦ୍ଦିଷ୍ଟ କାଳ ଓ ଦେଶର ଇତିହାସ କଥା ବର୍ଣ୍ଣନା କରାଯିବା ଯୁକ୍ତିସଙ୍ଗତ ନୁହେ ।

ବେଦର କେତେକ କ୍ରିୟା ଲୌକିକ ସାହିତ୍ୟରେ ଭୂତକାଳ ଅର୍ଥରେ ବ୍ୟବହୃତ ହୁଅନ୍ତି । ପରନ୍ତୁ ମୂଳ ବେଦରେ କ୍ରିୟାର ସମସ୍ତ କାଳ ଧାତୁର ଅର୍ଥ ସଙ୍କେତ ଦେବାପାଇଁ ଉଦ୍ଦିଷ୍ଟ । ଏହାର ବହୁ ଉଦାହରଣ ଏହି ଅଧ୍ୟାୟରେ ଦିଆଯାଇଛି । ଏଣୁ ଏହି ସବୁ କ୍ରିୟା ପଦକୁ ଦେଖି ବେଦରୁ ଇତିହାସ କଥା ଆଲୋଚନା କରିବା ବେଦାର୍ଥ କରିବାର ଉଚିତ ସରଣୀର ବିରୁଦ୍ଧ ।

ବେଦରେ ବ୍ୟବହୃତ କେତେକ ଶବ୍ଦ ସହ ଲୌକିକ ଇତିହାସର କେତେକ ଦେଶ, ନଗର, ରାଜା, ଋଷି, ନଦୀ ଆଦି ନାମ ସମାନ ଥିବାରୁ, ଏପରି କେତେକ ଶବ୍ଦର ଉଚିତ ବ୍ୟାଖ୍ୟା ଏହି ଅଧ୍ୟାୟରେ ଦିଆଯାଇଛି । ଏ ମଧ୍ୟରୁ ଗୋଟିଏ ହେଲେ କୌଣସି ସ୍ଥଳରେ ଇତିହାସ ପରକ ହେବା ଜଣାଯାଏ ନାହିଁ । ବେଳେ ବେଳେ କୌଣସି ଐତିହାସିକ ରାଜା, ନଗର ବା ଦେଶର ନାମକୁ ଗୌରବାନ୍ୱିତ କରିବା ପାଇଁ ତାହାକୁ ବେଦ ଶବ୍ଦ ସହ ମିଶାଇ ଇତିହାସ ସୃଷ୍ଟି କରାଯାଇଛି ।

ବେଦରେ ଇତିହାସବାଦର ଖଣ୍ଡନ କରି ମହର୍ଷି ଜୈମିନି ମୀମାଂସା ଦର୍ଶନରେ ଲେଖିଛନ୍ତି—'ପରଂ ତୁ ଶ୍ରୁତି ସାମାନ୍ୟ ମାତ୍ରମ୍ (୧,୧,୩୧) ।' ଅର୍ଥାତ୍ 'ଅନ୍ୟ ସବୁ ଯାହା ଐତିହାସିକ ନାମ ରୂପରେ ଦେଖାଯାନ୍ତି, ସେ ସବୁ ସହ ବେଦଶବ୍ଦମାନଙ୍କ ଶ୍ରବଣ ମାତ୍ର ସାମଞ୍ଜସ୍ୟ ଥାଏ ।' ବେଦର ନିତ୍ୟାର୍ଥବାଚୀ ସନାତନ ଶବ୍ଦ ସହ ଐତିହାସିକ ନାମର କୌଣସି ସମ୍ବନ୍ଧ ନାହିଁ— ସମ୍ବନ୍ଧ କେବଳ ଏତିକି ଯେ ଅନାଦିକାଳ ବେଦର ଶବ୍ଦ ଭଣ୍ଡାରରୁ ସଂସାରର ସମସ୍ତ ଲୌକିକ ନାମ ଗୃହୀତ । ଏହି ବିଷୟରେ ମହର୍ଷି ମନୁଙ୍କ ମନ୍ତବ୍ୟ ଏହି ଅଧ୍ୟାୟରେ ବର୍ଣ୍ଣିତ ହୋଇଛି ।

ବେଦରୁ ଇତିହାସବାଦ ଦୂର ହେବା ପରେ ବେଦର ଅପୌରୁଷେୟତା ସ୍ୱତଃ ପ୍ରମାଣିତ ହୋଇଯାଏ । ସାଂଖ୍ୟ ଦର୍ଶନକର୍ତ୍ତା ମହର୍ଷି କପିଳ ଲେଖିଛନ୍ତି— 'ନ ପୌରୁଷେୟତ୍ୱଂ ତତ୍କର୍ତ୍ତୁଃ ପୁରୁଷସ୍ୟାଭାବାତ୍ (୫,୪୬) ।'— ଅର୍ଥାତ୍ 'ବେଦ ପୌରୁଷେୟ ନୁହେ ଯେହେତୁ ବେଦର କର୍ତ୍ତା କୌଣସି ପୁରୁଷ ବା ମନୁଷ୍ୟ ହେବା ସମ୍ଭବ ନୁହେ ।' ସାଂଖ୍ୟଶାସ୍ତ୍ର ପରମାତ୍ମାଙ୍କ ସତ୍ତାକୁ ସ୍ୱୀକାର କରେ ନାହିଁ ବୋଲି କେତେକ ବିଚାରକ ମନେ କରନ୍ତି । ଏହା ସତ୍ତ୍ୱେ ଏହି ଶାସ୍ତ୍ରର ଅନ୍ୟ ଏକ ସ୍ଥଳରେ ଲେଖାଅଛି— 'ନିଜ ଶକ୍ତିରୁ ପ୍ରକାଶିତ ହେବାରୁ ବେଦ ସ୍ୱତଃପ୍ରମାଣ ଅଟେ † ।' ବେଦର ନିତ୍ୟତା, ଅପୌରୁଷେୟତା ଓ ସ୍ୱତଃ ପ୍ରାମାଣିକତା ସମ୍ବନ୍ଧେ ସାଂଖ୍ୟଶାସ୍ତ୍ରଠାରୁ ଏହି ସବୁ ପ୍ରମାଣ ପାଇବା ପରେ ସକଳ ସନ୍ଦେହ ଦୂର ହୋଇଯାଏ ।

---

† ନିଜଶକ୍ତ୍ୟଭିବ୍ୟକ୍ତେଃ ସ୍ୱତଃ ପ୍ରାମାଣ୍ୟମ୍ । ( ସାଂ ୫,୫୧)

—ଦଶମ ଅଧ୍ୟାୟ—

# ବେଦମନ୍ତ୍ରର ଉପଦେଶ

ସୃଷ୍ଟି ଆରମ୍ଭରେ ମନୁଷ୍ୟଠାରେ ବେଦବାଣୀ ପ୍ରକାଶ କରିବାରେ ପରମାତ୍ମାଙ୍କ କି ପ୍ରୟୋଜନ — ଏହି ପ୍ରଶ୍ନ ମନକୁ ଆସିପାରେ । ଏହାର ଉତ୍ତର ଏହି ଗ୍ରନ୍ଥର ବିଭିନ୍ନ ସ୍ଥଳରେ ପରୋକ୍ଷ ଭାବରେ ଦିଆଯାଇଛି । ଯୋଗ ଦର୍ଶନର ଭାଷ୍ୟକାର ମହର୍ଷି ବ୍ୟାସ ଏ ସମ୍ବନ୍ଧରେ ପରିଷ୍କାର ରୂପରେ କହୁଛନ୍ତି— 'ବେଦବାଣୀର ଉପଦେଶ ଦ୍ୱାରା ପରମାତ୍ମାଙ୍କ ନିଜର କୌଣସି ଲାଭ ନହେଲେ ବି ଏଥିରେ ଜୀବଙ୍କଠାରେ କୃପା ରଖିବା ପ୍ରୟୋଜନ ଥାଏ । 'ଜ୍ଞାନ ଓ ଧର୍ମୋପଦେଶ ଦ୍ୱାରା କଳ୍ପ, ପ୍ରଳୟ ଓ ମହାପ୍ରଳୟରେ ସଂସାରୀ ପୁରୁଷଙ୍କୁ ଉଦ୍ଧାର କରିବ'— ଏହି ପ୍ରୟୋଜନରେ ପରମାତ୍ମା ଆଦିସୃଷ୍ଟିରେ ବେଦବାଣୀର ପ୍ରକାଶ

କରନ୍ତି †' । ପଞ୍ଚମ ଅଧ୍ୟାୟରେ ଭାଷା ଓ ବାଣୀ ସମ୍ବନ୍ଧରେ ଆଲୋଚନା କରିବାବେଳେ ଆମ୍ଭେମାନେ ଦେଖିଅଛୁ ଯେ କୌଣସି ନିମିତ୍ତ ବା କର୍ତ୍ତାଙ୍କ ଅଭାବରେ ମନୁଷ୍ୟଠାରେ ବୁଦ୍ଧିଯୁକ୍ତ ଭାଷା ଓ ବାଣୀର ପ୍ରଥମ ପ୍ରକାଶ ହୋଇ ନପାରେ । ଆଦିସୃଷ୍ଟି ବେଳେ ପରମାତ୍ମା ବେଦ ଜ୍ଞାନର ଆଦି ଓ ସନାତନ ବାଣୀକୁ ପ୍ରଥମ ମନୁଷ୍ୟଙ୍କ ମଧ୍ୟରେ ପ୍ରକାଶ କରି ନଥିଲେ ମୁକ୍ତିପାଇଁ ମନୁଷ୍ୟର ପ୍ରଯତ୍ନ ସମ୍ଭବ ହୋଇନଥାନ୍ତା । ସେତେବେଳେ ସୃଷ୍ଟିର ପ୍ରୟୋଜନ ଅସମ୍ପୂର୍ଣ୍ଣ ହୋଇଥାନ୍ତା ।

ମନୁ ମହାରାଜ କହିଛନ୍ତି— 'ସୃଷ୍ଟି ଆରମ୍ଭରେ ପରମାତ୍ମା ବେଦ-ଶବ୍ଦରୁ ସମସ୍ତ ବସ୍ତୁ ଓ ପ୍ରାଣୀଙ୍କ ନାମ, କର୍ମ ତଥା ଲୌକିକ ବ୍ୟବସ୍ଥାମାନ ରଚନା କଲେ ⁕ ।' ମହାଭାରତର ଶାନ୍ତି ପର୍ବରେ ଏହି କଥାକୁ ଅଧିକ ପରିଷ୍କାର କରି ଦିଆଯାଇଛି— 'ଋଷିମାନେ ଦୀର୍ଘକାଳ ତପ କରି ବେଦଜ୍ଞାନ ପ୍ରାପ୍ତ ହେଲେ । ବେଦବାଣୀ ସ୍ୱୟମ୍ଭୂ ପରମାତ୍ମାଙ୍କ ପ୍ରଦତ୍ତ ଏହି ରୂପ ବିଦ୍ୟା ଯାହାର ଆଦି-ଅନ୍ତ ନାହିଁ; ଅର୍ଥାତ୍ ତାହା ନିତ୍ୟ ଅଟେ । ଋଷିମାନଙ୍କ ନାମ, ବେଦବର୍ଣ୍ଣିତ ସୃଷ୍ଟି, ସକଳ ଜୀବଙ୍କ ନାମ,

---

† ତସ୍ୟାତ୍ମାନୁଗ୍ରହାଭାବେଽପି ଭୂତାନୁଗ୍ରହଃ ପ୍ରୟୋଜନମ୍ । ଜ୍ଞାନ ଧର୍ମୋପଦେଶେନ କଳ୍ପ ପ୍ରଳୟମହାପ୍ରଳୟେଷୁ ସଂସାରିଣଃ ପୁରୁଷାନୁଦ୍ଧରିଷ୍ୟାମୀତି । (ଯୋଗଦର୍ଶନ ଭାଷ୍ୟ ୧, ୨୫)

⁕ ଦେଖ ଟିପ୍ପଣୀ ୪୩ ।

ରୂପ ଓ କର୍ମ— ଏ ସକଳକୁ ପରମାତ୍ମା ସୃଷ୍ଟି ଆରମ୍ଭରେ ବେଦଶବ୍ଦ ଦ୍ୱାରା ପ୍ରକାଶ କରନ୍ତି × ।'

କଳ୍ପାରମ୍ଭରେ ସାକ୍ଷାତ୍କୃତଧର୍ମା ଋଷିଙ୍କଠାରେ ଯେଉଁ ବେଦବାଣୀ ପ୍ରକାଶିତ ହୁଏ, ଯେଉଁଥିରେ ମନୁଷ୍ୟର ଅଭ୍ୟୁଦୟ ଓ ନିଃଶ୍ରେୟସର ସକଳ ଜ୍ଞାନ ବୀଜବତ୍ ବା ସାଙ୍କେତିକ ରୂପରେ ଥାଏ । ଗୁରୁପରମ୍ପରାରେ ଏହି ଜ୍ଞାନ ଅନ୍ୟ ମନୁଷ୍ୟ ମଧ୍ୟରେ ପ୍ରଚାରିତ ହୁଏ ।

କେତେକେ ପ୍ରଶ୍ନ କରନ୍ତି—ବେଦ ଯଦି ସକଳ ଜ୍ଞାନର ଭଣ୍ଡାର, ତାହାହେଲେ ସେଥିରେ ଆମେ ଚିହ୍ନୁଥିବା ଟେଣ୍ଟ୍, କୋର୍ଟ୍, ଲୁଙ୍ଗି ଆଦିର ନାମୋଲ୍ଲେଖ କାହିଁକି ନାହିଁ ? ସେଥିରେ ସାଇକେଲ୍, ମଟର୍ ଆଦିର ନାମ କାହିଁକି ନାହିଁ ବା ରକେଟ୍, ଟେଲିଭିଜନ୍ ଆଦି ଯନ୍ତ୍ର ବିଷୟ କାହିଁକି ବର୍ଣ୍ଣିତ ହୋଇ ନାହିଁ ? ଏ ଧରଣର ପ୍ରଶ୍ନ ଅନେକେ ପଚାରିଥାନ୍ତି । ଏହି ସବୁର ଉତ୍ତର ଏହି ଗ୍ରନ୍ଥର ସ୍ଥଳେ ସ୍ଥଳେ ସୂଚନା ସ୍ୱରୂପ ଦିଆଯାଇଅଛି । ପ୍ରଥମତଃ ବେଦ ନିତ୍ୟ ଓ ସନାତନ ଜ୍ଞାନ

---

× ଋଷୟସ୍ତପସା ବେଦାନଧ୍ୟୈଷନ୍ତ ଦିବାନିଶମ୍ ।
ଅନାଦିନିଧନା ବିଦ୍ୟା ବାଗୁତ୍ସୃଷ୍ଟା ସ୍ୱୟମ୍ଭୁବା ॥
ଋଷୀଣାଂ ନାମଧେୟାନି ଯାଶ୍ଚ ବେଦେଷୁ ସୃଷ୍ଟୟଃ
ନାନାରୂପଂ ଚ ଭୂତାନାଂ କର୍ମଣାଂ ଚ ପ୍ରବର୍ତ୍ତନମ୍ ॥
ବେଦଶବ୍ଦେଭ୍ୟ ଏବାଦୌ ନିର୍ମିମୀତେ ସ ଈଶ୍ୱରଃ । (ମହାଭାରତ ଶାନ୍ତିପର୍ବ ୨୩୨,୨୪-୨୬)

ହେବାହେତୁ ଏଥିରେ ଦେଶ-କାଳ-ପାତ୍ର ଅନୁସାରେ କୌଣସି ଦେଶୀୟ, ସାମୟିକ ବା ବୈୟକ୍ତିକ ବସ୍ତୁର ବର୍ଣ୍ଣନା ନାହିଁ । ଶୀତ-ପ୍ରଧାନ ଅଞ୍ଚଳର ମନୁଷ୍ୟ ରେଶମ ଓ ଗ୍ରୀଷ୍ମପ୍ରଧାନ ଅଞ୍ଚଳର ଲୋକ କାର୍ପାସର ପୋଷାକ ପରିଧାନ କରନ୍ତି । ସେହିପରି ଭିନ୍ନ ଯୁଗରେ ଭିନ୍ନ ରୁଚି ଓ ଉପଯୋଗିତା ଅନୁଯାୟୀ ଲୋକେ ଢ଼ାକୁଛି, ପେଣ୍ଟ୍ ବା ଲୁଙ୍ଗି ପରିଧାନ କରନ୍ତି । ବେଦରେ ଏହି ସବୁର ବର୍ଣ୍ଣନା ନାହିଁ, ରହିବା ଉଚିତ ନୁହେଁ । ସାଙ୍କେତିକ ରୂପରେ ଅବଶ୍ୟ ଶରୀରର ଆଚ୍ଛାଦନ ପାଇଁ ବେଦରେ ସୂଚନା ରହିଛି । ସେହିପରି ବେଗଯାନ ପାଇଁ ଆହ୍ୱାନ ରହିଛି ଓ ସେ ସବୁର ପ୍ରାବେଗିକ ଜ୍ଞାନର ସୂଚନା ମଧ୍ୟ ରହିଛି ।

ଦ୍ୱିତୀୟତଃ ବୈଦିକ ଶବ୍ଦମାନଙ୍କର ଅର୍ଥ ଯୌଗିକ ରୀତିରେ ହେଉଥିବାରୁ ଓ ଶବ୍ଦମାନଙ୍କର ଯୌଗିକାର୍ଥ ପାଇଁ ସମସ୍ତ ବିଦ୍ୟାରେ ପ୍ରଗାଢ଼ ଜ୍ଞାନର ଆବଶ୍ୟକତା ହେଉଥିବାରୁ † ମନ୍ତ୍ରଦ୍ରଷ୍ଟା ଋଷିଙ୍କ ଛଡ଼ା ସାଧାରଣ ମନୁଷ୍ୟ ଶବ୍ଦମାନଙ୍କ ଗମ୍ଭୀର ଓ ଦୁର୍ଜ୍ଞେୟ ଅର୍ଥ ବୁଝିବା ସହଜ-ସାଧ୍ୟ ନୁହେଁ । ଏହି ଅମ୍ବିକ ଶକ୍ତି ଥିଲେ ରକେଟ୍, ଟେଲିଭିଜନ୍ ଆଦିର ମୌଳିକ ତତ୍ତ୍ୱ ବେଦମନ୍ତ୍ରର ଆଧିଭୌତିକ ଅର୍ଥରୁ ଗ୍ରହଣ କରାଯାଇ ପାରେ ବା ଆଧ୍ୟାତ୍ମିକ ଅର୍ଥ ନେଇ ଏହି ସବୁ ଯନ୍ତ୍ରର ବିନା ସହାୟତାରେ ଯୋଗାସନରେ ବସି ସାଧକ ମହାଶୂନ୍ୟର ସକଳ ବୃତ୍ତାନ୍ତ ବା ଦୂରାନ୍ତର ସକଳ ଛବି ଦେଖିପାରେ ।

---

† ଭୂୟୋବିଦ୍ୟଃ ପ୍ରଶସ୍ୟୋ ଭବତି (ନିରୁକ୍ତ ୧, ୧୪)

ଶିକ୍ଷକ ଗୋଟିଏ ଅଧ୍ୟାୟରୁ ଗୋଟିଏ ଦୁଇଟି ଅଙ୍କ ସାଧି ଦେଇଦେଲା ପରେ ବିଦ୍ୟାର୍ଥୀମାନଙ୍କର ଲାଗି ଛାଡ଼ିଦିଅନ୍ତି । ପ୍ରତ୍ୟେକ ଅଙ୍କକୁ ଶିକ୍ଷକ ନିଜେ କରିଦେଲେ ଛାତ୍ରଙ୍କ ବୁଦ୍ଧି ବ୍ୟୟ ହୁଏ ନାହିଁ କି ଜ୍ଞାନ ଅର୍ଜନ ହୁଏ ନାହିଁ । ଏହା ଦ୍ୱାରା ଏମାନଙ୍କ କଲ୍ୟାଣ ସାଧିତ ହୁଏ ନାହିଁ । ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପାଇଁ ଏମାନଙ୍କଠାରେ ଆବଶ୍ୟକୀୟ ସାହସ ଜନ୍ମେ ନାହିଁ । ସୁତରାଂ କଲ୍ୟାଣ ସାଧନ ପାଇଁ ସ୍ୱତନ୍ତ୍ରତା ଆବଶ୍ୟକ । କଲ୍ୟାଣମୟ ଭଗବାନ ଏଥିହେତୁ 'ମୁକ୍ତି'କୁ ଜୀବର ଅନ୍ତିମଧ୍ୟେୟ ବା ପରୀକ୍ଷା ସ୍ଥଳ ବୋଲି ନିର୍ଦ୍ଦିଷ୍ଟ କରିବାରେଲେ ଜୀବଙ୍କୁ ସ୍ୱାଧୀନ ଚିନ୍ତା ଓ କର୍ମ କରିବା ପାଇଁ ସୁଯୋଗ ଦେଇଛନ୍ତି । ସୁତରାଂ ପ୍ରଭୁଦତ୍ତ ବେଦ-ଜ୍ଞାନରେ କାଳ ଓ ଦେଶୋପଯୋଗୀ, ପରିବର୍ତ୍ତନଶୀଳ, କ୍ଷୁଦ୍ର କ୍ଷୁଦ୍ର କ୍ରିୟାକଳାପର ଉଲ୍ଲେଖ ରହିଲେ ମନୁଷ୍ୟର ସ୍ୱାଧୀନ ଚିନ୍ତାରେ ପ୍ରତିବନ୍ଧକ ହେବ । ଅବଶ୍ୟ ବେଦରେ ବୀଜରୂପ ସକଳ ଲୌକିକ ଓ ପାରଲୌକିକ ତତ୍ତ୍ୱର ସଙ୍କେତ ରହିଛି । ଏ ସବୁରୁ ସୂଚନା ପାଇ ଧର୍ମରୁ ଅଧର୍ମ, ପ୍ରକୃତିରୁ ବିକୃତି, ନୈସର୍ଗିକତାରୁ କୃତ୍ରିମତା, ଆହରଣ କରିବା ତେଣିକି ମନୁଷ୍ୟଙ୍କ କର୍ମ ।

ନାସ୍ତିକ କହନ୍ତି ଜଗତରେ ସହସ୍ର ସହସ୍ର ଗ୍ରହନକ୍ଷତ୍ରମାନଙ୍କ ନିୟମିତ ଓ ବୈଚିତ୍ର୍ୟଯୁକ୍ତ ଗତିକୁ ନିୟନ୍ତ୍ରିତ କରିବା ପରେ ମନୁଷ୍ୟକୁ ସାଇକେଲ, ମଟର, ରେଲଗାଡ଼ି ଆଦି ସାମୟିକ ଓ ଅନିତ୍ୟ ଯନ୍ତ୍ରମାନଙ୍କ ରଚନା କୌଶଳ ବତାଇବା ପରମାତ୍ମାଙ୍କ କି ପ୍ରୟୋଜନ ? ପକ୍ଷୀକୁ ସୃଷ୍ଟି କରିବା ପରେ ବ୍ୟୋମଯାନ ଓ ରକେଟ୍ ଆଦି କୃତ୍ରିମ ଓ ଅପରିପୂର୍ଣ୍ଣ ଯନ୍ତ୍ରମାନଙ୍କୁ ନିର୍ମାଣ କରିବା କି ଆବଶ୍ୟକ ? ଆଦିତ୍ୟକୁ ପ୍ରକାଶ କରିବା ପରେ ସହସ୍ର

ଅନୁକରଣକୁ ମଧ୍ୟ ପ୍ରକାଶ କରିବା ମନୁଷ୍ୟର ସ୍ୱାଧୀନ ଚିନ୍ତାଧାରାରେ ପ୍ରତିବନ୍ଧକ ହେବ ।

ଉଦାହରଣ ସ୍ୱରୂପ, ବେଦର ନିର୍ଦ୍ଦେଶ ହେଉଛି ଯେ ମନୁଷ୍ୟର ବିଭିନ୍ନ ଋଣ ପରିଶୋଧ ପାଇଁ ତା'ଠାରେ କର୍ତ୍ତବ୍ୟାଚରଣର ସ୍ମରଣ ଆଣିଦେବା ସକାଶେ ଏକ ଚିହ୍ନର ଆବଶ୍ୟକ । ଏହାକୁ ଦେଖିଲା ବା ଅବୃତ୍ତର ଆଖ୍ୟା ଦିଆଯାଇଛି । ଯଜ୍ଞକାରୀ ଶୁଭାନୁଷ୍ଠାନରେ ଏହାର ଗ୍ରହଣ କରାଯାଇଥିବାରୁ ଏହାର ନାମ ଯଜ୍ଞୋପବୀତ । ପରନ୍ତୁ ଏହି ଯଜ୍ଞୋପବୀତ କେଉଁ ବସ୍ତୁରେ ନିର୍ମିତ ହେବ, କିପରି ପରିଧାନ କରାଯିବ ବା ତାହାର ପରିମାଣ କ'ଣ – ଏହି ସବୁ ସ୍ଥୂଳ ବିଷୟ ବେଦରେ ବର୍ଣ୍ଣିତ ହୋଇ ନାହିଁ । ବେଦରେ ସକଳ ଲୌକିକ ଓ ପାରଲୌକିକ ତତ୍ତ୍ୱମାନଙ୍କ ସଙ୍କେତ ବା ପ୍ରାତିବେଶିକ ଜ୍ଞାନହିଁ ରହିଛି । ମନୁଷ୍ୟ ଆଦି-ସୃଷ୍ଟିରୁ ଏହି ଜ୍ଞାନକୁ ନେଇ ଦେଶ, କାଳ, ପାତ୍ର ଅନୁଯାୟୀ ଏହାର ପରିବର୍ତ୍ତନ କରିଥାନ୍ତି । ଏହିରୂପେ ମନୁଷ୍ୟକୃତ ବ୍ରାହ୍ମଣ ଓ ସୂତ୍ରଶାସ୍ତ୍ର-ମାନଙ୍କରେ ଯଜ୍ଞୋପବୀତର ପରିଧାନ ଓ ଗଠନ ପ୍ରଣାଳୀ, କେଉଁ ଋତୁ ଓ ବସ୍ତୁରେ ଏହା ନିର୍ମିତ ହେବ ଆଦି ସ୍ଥୂଳ ବିଷୟମାନଙ୍କର ଆଲୋଚନା କରାଯାଇଛି । ଏହି ସବୁ ବିଷୟ ପରିବର୍ତ୍ତନଶୀଳ – ଦେଶ ଓ କାଳ ଅନୁସାରେ ଏ ସବୁ ପରିବର୍ତ୍ତିତ ହୋଇଥାନ୍ତି । ପରନ୍ତୁ ବେଦରେ ଥିବା ସୂକ୍ଷ୍ମଜ୍ଞାନର ବୀଜରୂପ ସୂଚନା ଅପରିବର୍ତ୍ତନଶୀଳ ଓ ମନୁଷ୍ୟର ନିତ୍ୟ କଲ୍ୟାଣକାରୀ ।

ମଧ୍ୟକାଳୀନ ଭାଷ୍ୟକାରମାନେ ବେଦମନ୍ତ୍ରମାନଙ୍କୁ ବହୁ ଲୌକିକ କ୍ରିୟା କଳାପରେ ବିନିଯୋଗ ଆରମ୍ଭ କଲେ । ଯଜ୍ଞର କର୍ମକାଣ୍ଡରେ

ସୁବିଧା ପାଇଁ ବେଦମନ୍ତ୍ରମାନଙ୍କ ସହ ବହୁ କର୍ମକାଣ୍ଡୀ କ୍ରିୟାମାନଙ୍କୁ ସଂଯୋଗ କଲେ । ଅମୁକ ମନ୍ତ୍ରରେ ଆଚମନ, ଅମୁକ ମନ୍ତ୍ରରେ ସ୍ନାନ, ଅମୁକ ମନ୍ତ୍ରରେ ଅଗ୍ନ୍ୟାଧାନ ଆଦି ବିନିଯୋଗ ସଂସ୍ଥାପନ କଲେ । ଏପରିକି ରାଜା ରାଜ୍ୟ ଜୟ କରିବାକୁ ହେଲେ ଅମୁକ ମନ୍ତ୍ରରେ ଯଜ୍ଞ କରିବେ, ବ୍ୟବସାୟରେ ଲାଭବାନ୍ ହେବା ପାଇଁ ବା ସନ୍ତାନ ଲାଭ ପାଇଁ ଅମୁକ ମନ୍ତ୍ରରେ ଯଜ୍ଞ କରିବେ ଆଦି ବିନିଯୋଗମାନ ବିଧାନ କରାଗଲା । ଅଭୀଷ୍ଟ ସିଦ୍ଧି ପାଇଁ ବିଭିନ୍ନ ମଣି, କବଚ ଆଦିର ବ୍ୟବହାର ସହ ବିଭିନ୍ନ ମନ୍ତ୍ରମାନଙ୍କୁ ଯୋଡ ଦିଆଗଲା । ଅବଶ୍ୟ ପୁରାତନ ଋଷିମାନେ ବି ଦୈନିକ ପଞ୍ଚମହାଯଜ୍ଞ ତଥା ପୌର୍ଣ୍ଣମାସ, ସୋମଯୋଗ, ରାଜସୂୟ, ବାଜପେୟ ଆଦି ଯଜ୍ଞମାନଙ୍କରେ ବିଭିନ୍ନ ବେଦମନ୍ତ୍ରର ବିନିଯୋଗ କରୁଥିଲେ । ପରନ୍ତୁ ମଧ୍ୟକାଳରେ ଏହି ବିନିଯୋଗ-ବିଧି ନିକୃଷ୍ଟ ଆକାର ଗ୍ରହଣ କଲା ।

ସତ୍ତ୍ୱିକାଳେ ପବିତ୍ରାତ୍ମା ମନୁଷ୍ୟଙ୍କଠାରେ ମନ୍ତ୍ରଶକ୍ତି ଅଦ୍ଭୁତ କର୍ମ କରିଥାଏ । ଯୋଗୀ ଓ ସାଧକ ମନ୍ତ୍ରକୁ ହୃଦୟଙ୍ଗମ କରି ପାରିଲେ ବହୁ କଲ୍ୟାଣ ସାଧିତ ହୋଇପାରେ । ପରନ୍ତୁ ବିଭିନ୍ନ କ୍ରିୟାକାଣ୍ଡ ସହ ବିଭିନ୍ନ ମନ୍ତ୍ରକୁ ଭ୍ରମଭାବରେ ବିନିଯୋଗ କରିବା ଦ୍ୱାରା ପ୍ରଥମତଃ ବହୁମୁଖୀ ମନ୍ତ୍ରର ଅର୍ଥ ଓ କାର୍ଯ୍ୟ ସୀମିତ ହୋଇ ପଡେ ଓ ଦ୍ୱିତୀୟରେ ବହୁ ଅନ୍ଧ-ବିଶ୍ୱାସ ଜାତ ହୁଏ । ପାରମ୍ପରିକ ଭାବରେ ନିର୍ଦ୍ଦିଷ୍ଟ ମନ୍ତ୍ରମାନଙ୍କୁ ନିର୍ଦ୍ଦିଷ୍ଟ କାର୍ଯ୍ୟରେ ବିନିଯୋଗ କରିବା ଦ୍ୱାରା ତାହା ବାହ୍ୟ ସଂସ୍କାରରେ ସହାୟ ହେଲେ ବି ଏଥିରେ ସେହି ସେହି କର୍ମମାନଙ୍କରେ ସଫଳତା ମିଳେ ନାହିଁ । 'ଶନ୍ନୋଦେବୀ' + + ' ମନ୍ତ୍ରରେ ଆଚମନ

ନକରି ସ୍ନାନ କଲେ ସେ ସ୍ନାନରେ ବ୍ୟାଘାତ ହେବ ସେପରି କରୁ ନାହିଁ । କୌଣସି ନିର୍ଦ୍ଦିଷ୍ଟ ବିପତ୍ତିବେଳେ ନିର୍ଦ୍ଦିଷ୍ଟ ମନ୍ତ୍ରୋଚ୍ଚାରଣ ନକରି ସମସ୍ତ ଆଧିଭୌତିକ ଓ ଆଧିଦୈବିକ ବିପତ୍ତି ସମୟରେ ମୋର ପିତୃଦେବ ଅଥର୍ବ ବେଦର 'ମନସା ପରିକମା' ଛଅଟି ମନ୍ତ୍ର ଉଚ୍ଚାରଣ କରୁଥିବା ମୁଁ ଜାଣେ । ଏ ସବୁ ଲେଖିବାର ଉଦ୍ଦେଶ୍ୟ ଏହି ଯେ ବିଭିନ୍ନ କାର୍ଯ୍ୟରେ ମନ୍ତ୍ରମାନଙ୍କ ବିନିଯୋଗ ବିଧି କୃତ୍ରିମ ଅଟେ । ଯେଉଁ ରୂପେ ବେଦକୁ ଅଧ୍ୟାୟ, ମଣ୍ଡଳାଦିରେ ବିଭକ୍ତ କରାଯିବା ପୌରୁଷେୟ ସେହିରୂପେ ଏହି ବିନିଯୋଗ ବିଧି ବି ମନୁଷ୍ୟକୃତ । ଅବଶ୍ୟ ସଂହିତା ବା ମନ୍ତ୍ରଭାଗ ଅପୌରୁଷେୟ ।

ଏହି ଅଧ୍ୟାୟର ଶେଷ ଭାଗରେ ଅଥର୍ବ ବେଦରୁ କେତେକ ଆକର୍ଷଣୀୟ ମନ୍ତ୍ରମାନଙ୍କ ବ୍ୟାଖ୍ୟା କରାଯିବ । ଏ ସବୁରେ ସଂକଳ୍ପ ବା ଆବେଶ *(Self hypnotism or Magnetism)*, ଅଭିମର୍ଷ ଓ ମାର୍ଜନ *(Mesmerism)*, ଆଦେଶ *(Hypnotic Suggestion)*, ମଣିବନ୍ଧନ ଓ ଅଭିଗ୍ରହ ଆଦି ପ୍ରକ୍ରିୟାକୁ କେତେକ ପଣ୍ଡିତ ବିନିଯୁକ୍ତ କରିଥାନ୍ତି । ଗୁପ୍ତଭାଷଣ ଓ ମନନଯୋଗ୍ୟ ସିଦ୍ଧାନ୍ତକୁ 'ମନ୍ତ୍ର' କହନ୍ତି । ମନ୍ତ୍ର ଶବ୍ଦ 'ମନ୍ତ୍ର ଗୁପ୍ତ ଭାଷଣେ'ରୁ ଗଠିତ । ନିରୁକ୍ତକାର କହିଛନ୍ତି – 'ମନ୍ତ୍ରା ମନନାତ୍' (ନିରୁକ୍ତ ୭,୧୨) । ଅର୍ଥାତ୍ ଗୁପ୍ତଭାଷଣ ଓ ରହସ୍ୟର ନାମ ମନ୍ତ୍ର । ମନ୍ତ୍ର ସହ ମନୋବିଜ୍ଞାନର ଗଭୀର ସମ୍ପର୍କ ରହିଛି । ଅର୍ଥବନ୍ତ ବର୍ଣ୍ଣମାନଙ୍କ ଗଠିତ ମନ୍ତ୍ରର ଉଚ୍ଚାରଣମାନେ ଯେଉଁ ଉଚ୍ଚାଙ୍ଗ ଭାବନା ଶରୀରରେ ପ୍ରଚ୍ଛନ୍ନ ଭାବରେ ଓତପ୍ରୋତ ହୁଏ, ତାହା ଯୋଗୀ ଓ ସାଧକଠାରେ ଅତ୍ୟନ୍ତ ପ୍ରଭାବଶାଳୀ ହୋଇ ଉଠେ । ଏହାର ଶକ୍ତି

ଏତେ ଦୂର ଥାଇ ହୁଏ ଯେ ସାଧକର ଆଦେଶ (*Suggestion*) ସାହେବି ଛାଡ଼ା ଅପର ବ୍ୟକ୍ତି ଉପରେ ଗଭୀର ଆକର୍ଷଣ ଓ ପ୍ରଭାବ ପକାଏ । ବାଣୀର ଅନ୍ୟ ନାମ ମନ୍ତ୍ର † । ଏଣୁ ବାକ୍‌ବିଦ୍ୟା ଓ ବସ୍ତୁର ବିଦ୍ୟାର ନାମ ମନ୍ତ୍ର ।

ଏହି ଅର୍ଥ ଓ କଲ୍ୟାଣକାରୀ ମନଃଶକ୍ତିର ନିକୃଷ୍ଟ ପ୍ରୟୋଗମାନ ମଧ୍ୟକାଳରେ ପ୍ରଚଳିତ ହେଲା । ଅର୍ଥାତ୍ ବିନିଯୁକ୍ତ ମନ୍ତ୍ରମାନଙ୍କୁ ଅପଠିତ ଓ ଅପାତ୍ର ଲୋକେ ବି ବ୍ୟବହାର କଲେ । ଫଳରେ ଉଚିତ ଉଦ୍ଦେଶ୍ୟ ସାଧିତ ହେଲା ନାହିଁ । ପରବର୍ତ୍ତୀ କାଳରେ ଏହି ମନ୍ତ୍ରବିଦ୍ୟା 'ଯାଦୁ' ବା 'ଇନ୍ଦ୍ରଜାଲ' ନାମରେ କଥିତ ହେଲା । ମନ୍ତ୍ରମାନଙ୍କ ସହ ବହୁ କୃତ୍ରିମ ଶ୍ଲୋକର ମିଶ୍ରଣ ଆରମ୍ଭ ହୋଇ ବିନିଯୋଗ ପଦ୍ଧତି ଅତି ନିକୃଷ୍ଟ ଆକାର ଧାରଣ କଲା । ମନ୍ତ୍ର, ତନ୍ତ୍ର ଓ ଯନ୍ତ୍ର ଅବାରିତ ଭାବରେ ମିଶ୍ରିତ ହୋଇଗଲା । ପ୍ରକୃତରେ ମନ୍ତ୍ର, ତନ୍ତ୍ର ଓ ଯନ୍ତ୍ର ଯଥାକ୍ରମେ ମନୋବିଜ୍ଞାନ, ସୂକ୍ଷ୍ମ ଭୌତିକ ବିଜ୍ଞାନ ଓ ସ୍ଥୂଳ ବିଜ୍ଞାନ ସହ ସମ୍ପୃକ୍ତ । ଏହି ତିନି ପୃଥକ୍ । ଏ ସମସ୍ତଙ୍କୁ ମିଶାଇ 'ଯାଦୁ' କୁହାଗଲା । 'ଯାଦୁ' ଏକ ଫାରସୀ ଶବ୍ଦ । ଏହା ବେଦର 'ଯାତୁ'–ହିଂସାର୍ଥକ ଶବ୍ଦରୁ ଗୃହୀତ ବୋଲି ପଣ୍ଡିତମାନେ କହନ୍ତି । ତନ୍ତ୍ର ଓ ଯନ୍ତ୍ର ଭୌତିକ ବିଜ୍ଞାନର ସୂକ୍ଷ୍ମ ଓ ସ୍ଥୂଳ ଉପଯୋଗ ହେବାବେଳେ ମନ୍ତ୍ର ପୂର୍ଣ୍ଣରୂପେ ମନୋବୈଜ୍ଞାନିକ ପ୍ରଭାବ ପକାଏ । ଏହା ଦ୍ୱାରା ବହୁ ବିଷମ ମାନସିକ ଓ ଶାରୀରିକ ରୋଗ ଦୂର ହୋଇ ପାରେ ।

---

† ବାଗ୍‌ବୈ ମନ୍ତ୍ରଃ । ( ଶତପଥ ୬,୪,୧,୭ )

ଋକ୍, ଯଜୁ, ସାମ ଓ ଅଥର୍ବ ବେଦର ମଂତ୍ରୋପଦେଶ ଯଥାକ୍ରମେ ବିଜ୍ଞାନ, କର୍ମ, ଉପାସନା ଓ ଜ୍ଞାନ ସହ ସମ୍ପର୍କ ରଖନ୍ତି । ବ୍ରହ୍ମଠାରୁ ତୃଣ ପର୍ଯ୍ୟନ୍ତ ପଦାର୍ଥମାନଙ୍କ ନିରୂପଣ ଋକ୍‌ବେଦରେ ହୋଇଛି । ପ୍ରତ୍ୟକ୍ଷ ଜ୍ଞାନର ଅଭାବରେ ସଂସ୍କାର ଓ ପ୍ରବୃତ୍ତି ଆରମ୍ଭ ହୋଇ ନପାରେ । ଏ ସବୁର ଆରମ୍ଭ ନହେଲେ ମନୁଷ୍ୟ ଜୀବନ ବ୍ୟର୍ଥ । ଏଣୁ ଋକ୍‌ବେଦର ସ୍ଥାନ ପ୍ରଥମ । ବୈଦିକ ପରମ୍ପରା ଅନୁସାରେ ଜ୍ଞାନ କେବଳ ଜ୍ଞାନ ମଧ୍ୟରେ ସୀମିତ ନୁହେ— ଜ୍ଞାନର ପ୍ରୟୋଜନ ଅନୁଷ୍ଠାନରେ । ଏଣୁ ଋକ୍‌ବେଦ ପରେ କର୍ମବେଦ ରୂପେ ଯଜୁର୍ବେଦ ଆସେ । ଯେପରି ଋକ୍‌ବେଦରେ ବିଭିନ୍ନ ଜ୍ଞାନ ଓ ଗୁଣର ଉପଦେଶ ମିଳେ ସେହିପରି ଯଜୁର୍ବେଦରେ ବିବିଧ ଶୁଭ କର୍ମ ପାଇଁ ପ୍ରେରଣା ମିଳେ । ଯଜୁର୍ବେଦ କର୍ମ ବିଧାନରେ ଓତପ୍ରୋତ । ଏହି ବେଦର ପ୍ରଥମ ଅଧ୍ୟାୟରେ ସର୍ବଦା ଶ୍ରେଷ୍ଠତମ କର୍ମରେ ନିୟୋଜିତ ରହିବା ପାଇଁ ପ୍ରେରଣା ମିଳିବାବେଳେ ଶେଷ ଅଧ୍ୟାୟରେ ଏହି ଶ୍ରେଷ୍ଠତମ କର୍ମ କରି ଜୀବନ ଅତିବାହିତ କରିବା ପାଇଁ ଓ ସର୍ବ ଶେଷରେ ମୃତ୍ୟୁ ପୂର୍ବରୁ ଏହି କର୍ମର ସ୍ମରଣ କରିବା ପାଇଁ ଉଦ୍‌ବୋଧନ ରହିଛି । କର୍ମ ପରେ ଶ୍ରାନ୍ତ ମନୁଷ୍ୟକୁ ଶାନ୍ତି ଦେବା ଆବଶ୍ୟକ । ଉପାସନାର ସୋପାନରେ ଏହି ଶାନ୍ତିଦାନ ପ୍ରଣାଳୀ ଅତି ଚମତ୍କାର ରୂପେ ସାମବେଦରେ ବର୍ଣ୍ଣିତ ହୋଇଛି । ଜ୍ଞାନ, କର୍ମ ଓ ଉପାସନାର ପୂର୍ଣ୍ଣତା ପାଇଁ, ସେ ସବୁର ସଂଶୟନିବୃତ୍ତି ଓ ରକ୍ଷା ଲାଗି ଅଥର୍ବବେଦ ଉଦ୍ଦିଷ୍ଟ । ଏହି ବେଦର ପ୍ରଥମ ବର୍ଗରେ ଭଗବାନଙ୍କଠାରେ ପ୍ରାର୍ଥନା ହୋଇଛି— 'ହେ ଭଗବାନ, ମୋର ସକଳ ଶ୍ରୁତି, ପଢ଼ାଶୁଣା

ମୋଟାତର ରହୁ † ।' ବାୟୁରଣ, ଅପାୟୁରଣ କାରଣରୁ ମନୁଷ୍ୟ ନଷ୍ଟ ନହେବା ପାଇଁ ଓ ଋକ୍, ଯଜୁ, ସାମର ସାତ୍ତ୍ୱିକ ଉପଦେଶକୁ ପରିପୂର୍ତ୍ତି କରିବା ପାଇଁ ଅଥର୍ବର ଉପଦେଶ ।

ବେଦମନ୍ତ୍ରମାନଙ୍କ ସର୍ବତୋମୁଖୀ ଉପଦେଶକୁ ତୈତ୍ତିରୀୟ ଉପନିଷଦ୍ ପାଞ୍ଚଟି ଦୃଷ୍ଟିକୋଣରୁ ଆଲୋଚନା କରିବା ପାଇଁ କହୁଛନ୍ତି— (୧) ଅଧିଲୋକମ୍—ଲୌକିକ ଦୃଷ୍ଟିରୁ (୨) ଅଧିଜ୍ୟୋତିଷମ୍— ସୂର୍ଯ୍ୟ ଚନ୍ଦ୍ରାଦି ସ୍ୱତଃ ଓ ପରତଃ ପ୍ରକାଶ ପିଣ୍ଡମାନଙ୍କ ସମ୍ବନ୍ଧରୁ ବା ଆକାଶୀୟ ସଂସାର ସମ୍ବନ୍ଧରୁ (୩) ଅଧିବିଦ୍ୟମ୍— ବୁଦ୍ଧି ଓ ଯୁକ୍ତି ଦୃଷ୍ଟିରୁ (୪) ଅଧିପ୍ରଜମ୍— ପ୍ରଜନନ ଶାସ୍ତ୍ର ଓ ସୃଷ୍ଟିପ୍ରକ୍ରିୟାର ବିଚାରରୁ ଓ (୫) ଆଧ୍ୟାତ୍ମିକମ୍— ଆତ୍ମା-ପରମାତ୍ମା ଦୃଷ୍ଟିକୋଣରୁ । ଏହି ସବୁ ଦୃଷ୍ଟିରୁ ପ୍ରତ୍ୟେକ ମନ୍ତ୍ରର ଅର୍ଥ କରିବା ପାଇଁ ପ୍ରଗଳ୍ଭ ଆତ୍ମଶକ୍ତି ଆବଶ୍ୟକ । ନିମ୍ନରେ କେତେକ ବେଦମନ୍ତ୍ର ଓ ସେ ସବୁର ସାଧାରଣ ସଂକ୍ଷିପ୍ତ ଅର୍ଥ ଦିଆଗଲା—

## ସାମାଜିକ ବ୍ୟବହାର

ଦୃତେ ଦୃଂହ ମା ମିତ୍ରସ୍ୟ ମା ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷନ୍ତାମ୍ ।
ମିତ୍ରସ୍ୟାହଂ ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷେ ।
ମିତ୍ରସ୍ୟ ଚକ୍ଷୁଷା ସମୀକ୍ଷାମହେ ॥ ( ଯଜୁ ୩୬,୧୮ )

---

† ମଯ୍ୟେବାସ୍ତୁ ମୟି ଶ୍ରୁତମ୍ । ( ଅଥର୍ବ ୧,୧,୩ )

ଅର୍ଥ—ହେ ଦୃଷ୍ଟି ପ୍ରଦାୟ ପରମାତ୍ମନ୍, ମୋର ଦୃଷ୍ଟିଶକ୍ତି ଦୃଢ ଓ ବିସ୍ତୀର୍ଣ୍ଣ ହେଉ । ସଂସାରର ସମସ୍ତ ପ୍ରାଣୀ ମୋତେ ମିତ୍ରଚକ୍ଷୁରେ ଦେଖନ୍ତୁ ଓ ମୁଁ ସମସ୍ତଙ୍କୁ ମିତ୍ରଚକ୍ଷୁରେ ଦେଖିବ ।

ପ୍ରିୟଂ ମା କୃଣୁ ଦେବେଷୁ ପ୍ରିୟଂ ରାଜସୁ ମା କୃଣୁ ।
ପ୍ରିୟଂ ସର୍ବସ୍ୟ ପଶ୍ୟତ ଉତ ଶୂଦ୍ର ଉତାର୍ଯେ ॥ ( ଅଥର୍ବ ୧୯,୬୨,୧ )

ଅର୍ଥ—ହେ ପରମାତ୍ମନ୍, ମନୁଷ୍ୟ-ସମାଜର ସୁପରିଚାଳନ ଲାଗି ଗୁଣ କର୍ମ ସ୍ୱଭାବ ଅନୁସାରେ ବିଭକ୍ତ ହୋଇଥିବା ଚାରିବର୍ଣ୍ଣ ଯଥା ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରଙ୍କ ମଧ୍ୟରେ ମୋତେ ପ୍ରିୟ କର ।

ରୁଚଂ ନୋ ଧେହି ବ୍ରାହ୍ମଣେଷୁ ରୁଚଂ ରାଜସୁ ନସ୍କୃଧି ।
ରୁଚଂ ବିଶ୍ୟେଷୁ ଶୂଦ୍ରେଷୁ ମୟି ଧେହି ରୁଚା ରୁଚମ୍ ॥ ( ଯଜୁ ୧୮,୪୮ )

ଅର୍ଥ—ହେ ପରମବ୍ରହ୍ମନ୍, ବିଭିନ୍ନ କର୍ମ ମଧ୍ୟରେ ନିୟୋଜିତ ହୋଇ ରହିଥିବା ସକଳ ମନୁଷ୍ୟ—ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରଙ୍କଠାରେ ମୋର ରୁଚି ରହୁ ।

ସମାନୀ ପ୍ରପା ସହ ବୋଽନ୍ନଭାଗଃ ସମାନେ ଯୋକ୍ତ୍ରେ ସହ ବୋ ଯୁନଜ୍ମି ।
ସମ୍ୟଞ୍ଚୋଽଗ୍ନିଂ ସପର୍ଯତାରା ନାଭିମିବାଭିତଃ ॥ ( ଅଥର୍ବ ୩,୩୦,୬ )

ଅର୍ଥ—ହେ ମନୁଷ୍ୟ, ତୁମ ସମସ୍ତଙ୍କ ଭୋଜନର ସ୍ଥଳ ଏକ ହେଉ । ତୁମ
ସମସ୍ତଙ୍କୁ ଗୋଟିଏ କୁଟୁମ୍ବ ଭାବରେ ମୁଁ ବାନ୍ଧଦେଉଛି । ଚକ୍ରର
ସମସ୍ତ ଅର ଗୋଟିଏ ନାଭିରେ ଯୁକ୍ତ ଥିବାପରି ତୁମେ ସମସ୍ତେ
ଗୋଟିଏ ଅଗ୍ରିମ ଉଦ୍ଦେଶ୍ୟରେ ମିଳାମିଶି କର୍ମ କର ।

ସହୃଦୟଂ ସାଂମନସ୍ୟମବିଦ୍ୱେଷଂ କୃଣୋମି ବଃ ।
ଅନ୍ୟୋ ଅନ୍ୟମଭି ହର୍ଯ୍ୟତ ବତ୍ସଂ ଜାତମିବାଘ୍ନ୍ୟା ॥ ( ଅଥର୍ବ ୩,୩୦,୧ )

ଅର୍ଥ—ହେ ମନୁଷ୍ୟ, ତୁମ ସମସ୍ତଙ୍କ ହୃଦୟକୁ ସମାନ ଭାବରେ ଗଠନ
କରୁଛି, ସମସ୍ତଙ୍କ ମନକୁ ବିଦ୍ୱେଷରହିତ କରୁଛି । ପରସ୍ପର ପ୍ରତି
ଏହିପରି ପ୍ରୀତିପୂର୍ବକ ବ୍ୟବହାର କର ଯେଉଁପରି ଗାଈ ତା'ର
ନବଜାତ ବତ୍ସ ସହ ବ୍ୟବହାର କରେ ।

ଅନୁବ୍ରତଃ ପିତୁଃ ପୁତ୍ରୋ ମାତ୍ରା ଭବତୁ ସମନାଃ ।
ଜାୟା ପତ୍ୟେ ମଧୁମତୀଂ ବାଚଂ ବଦତୁ ଶନ୍ତିବାମ୍ ॥ (ଅଥର୍ବ ୩,୩୦,୨)

ଅର୍ଥ—ପୁତ୍ର ପିତାର ଆଜ୍ଞାକାରୀ ଓ ମାତାର ଇଚ୍ଛାକାରୀ ହେଉ । ସ୍ତ୍ରୀ
ପତିସହ ମଧୁର ଓ ଶାନ୍ତବାଣୀ ବ୍ୟବହାର କରୁ ।

ମା ଭ୍ରାତା ଭ୍ରାତରଂ ଦ୍ୱିକ୍ଷନ୍ମା ସ୍ୱସାରମୁତ ସ୍ୱସା ।
ସମ୍ୟଞ୍ଚଃ ସବ୍ରତା ଭୂତ୍ୱା ବାଚଂ ବଦତ ଭଦ୍ରୟା ॥

ଅର୍ଥ— ଭାଇ ଭାଇ ସହ ଓ ଭଉଣୀ ଭଉଣୀ ସହ ଦ୍ୱେଷ ନକରୁ । ଏକ ମତ ଓ ଏକ ବ୍ରତରେ ସମସ୍ତେ ଶୁଭବାଣୀର ଉଚ୍ଚାରଣ କରନ୍ତୁ ।

କୁମାରଂ ମାତା ଯୁବତିଃ ସମୁବ୍ଧଂ ଗୁହା ବିଭର୍ତ୍ତି ନ ଦଦାତି ପିତ୍ରେ ।
ଅନୀକମସ୍ୟ ନ ମିନଜ୍ଜନାସଃ ପୁରଃ ପଶ୍ୟନ୍ତି ନିହିତମରତୌ ॥
( ଋକ୍ ୫,୨,୧ )

ଅର୍ଥ—ଯୁବତୀ-ମାତା ପୁତ୍ରକୁ ନିଜ ଗର୍ଭରେ ଧାରଣ କରେ । ନିଜ ସଦୃଶ୍ୟ ଯୁବକ ପିତାକୁ ଏହି ଭାର ଅର୍ପଣ କରେ ନାହିଁ ଯେହେତୁ ତଦ୍ୱାରା ପତିର ବଳ କ୍ଷୀଣ ହୋଇଯିବ । ଏଥିହେତୁ ମାତା ପ୍ରଥମ ସ୍ଥାନୀୟ ।

ତଂ ତ୍ୱା ଶୋଚିଷ୍ଠ ଦୀଦିବଃ ସୁମ୍ନାୟ ନୂନମୀମହେ ସଖିଭ୍ୟଃ ॥
( ଋକ୍ ୫,୨୪,୪ )

ଅର୍ଥ—ହେ ଜ୍ୟୋତି ସ୍ୱରୂପ ପରମାତ୍ମନ୍, ଆମ୍ଭର ଓ ଆମ୍ଭମାନଙ୍କ ମିତ୍ରମାନଙ୍କ ସୁଖ ଲଗି ପ୍ରାର୍ଥନା କରୁଛୁ ।

ଭଦ୍ରଂ କର୍ଣ୍ଣେଭିଃ ଶୃଣୁୟାମ ଦେବା ଭଦ୍ରଂ ପଶ୍ୟେମାକ୍ଷଭିର୍ଯଜତ୍ରାଃ ।
ସ୍ଥିରୈରଙ୍ଗୈସ୍ତୁଷ୍ଟୁବାଂ ସସ୍ତନୂଭିର୍ବ୍ୟଶେମହି ଦେବହିତଂ ଯଦାୟୁଃ ॥
( ସାମ ୯,୩,୯ )

ଅର୍ଥ—ହେ ଯଜନୀୟ ପରମାତ୍ମନ୍, ଆମ୍ଭେମାନେ କର୍ଣ୍ଣରେ କଲ୍ୟାଣ ଶୁଣିବୁ, ଚକ୍ଷୁରେ କଲ୍ୟାଣ ଦେଖିବୁ । ହସ୍ତ, ପଦ, ବାଣୀ ଆଦିକୁ

ସ୍ଥିର ରଖି ଆପଣଙ୍କ ସ୍ୱତ୍ୱ କରି କରି ଯେତେ କାଳ ବଞ୍ଚି ରହିବୁ ସେତେକାଳ ନିଜର ଓ ସକଳର ହିତକାରକ ହୋଇ ରହିବୁ ।

ସଂଗଚ୍ଛଧ୍ୱଂ ସଂ ବଦଧ୍ୱଂ ସଂ ବୋ ମନାଂସି ଜାନତାମ୍ ।
ଦେବା ଭାଗଂ ଯଥା ପୂର୍ବେ ସଂଜାନାନା ଉପାସତେ ॥ (ଋକ୍ ୧୦,୧୯୧,୨)

ଅର୍ଥ—ହେ ମନୁଷ୍ୟ, ତୁମେ ସମସ୍ତେ ମିଳିକରି ଚାଲ, ମିଳିକରି ବାର୍ତ୍ତାଳାପ କର । ପରସ୍ପର ସହଯୋଗରେ ଜ୍ଞାନ ପ୍ରାପ୍ତ କର । ପୂର୍ବ କଳ୍ପର ମନୁଷ୍ୟ ଏହିରୂପେ ଜ୍ଞାନ ପ୍ରାପ୍ତ କରିଥିଲେ ।

ସମାନୋ ମନ୍ତ୍ରଃ ସମିତିଃ ସମାନୀ ସମାନଂ ମନଃ ସହ ଚିତ୍ତମେଷାମ୍ ।
ସମାନଂ ମନ୍ତ୍ରମଭି ମନ୍ତ୍ରୟେ ବଃ ସମାନେନ ବୋ ହବିଷା ଜୁହୋମି ॥
( ଋକ୍ ୧୦,୧୯୧,୩ )

ଅର୍ଥ—ହେ ମନୁଷ୍ୟ, ତୁମ୍ଭମାନଙ୍କ ମନ୍ତ୍ରଣା ଓ ସଭାର ସ୍ଥଳ ଏକ ହେଉ, ମନ ଓ ଚିତ୍ତ ଏକ ହେଉ । ମୁଁ ତୁମ୍ଭମାନଙ୍କୁ ମନ୍ତ୍ରଣା ଦେଉଛି । ଐଶ୍ୱର୍ଯ୍ୟ ଓ ଅଭ୍ୟୁଦୟ ପ୍ରାପ୍ତି ଲାଗି ଯଜ୍ଞରେ ( ଶ୍ରେଷ୍ଠକର୍ମ ) ନିୟୋଜିତ ରହିବା ଲାଗି ତୁମ ସମସ୍ତଙ୍କୁ ଆହ୍ୱାନ କରୁଛି ।

ସମାନୀ ବ ଆକୂତିଃ ସମାନା ହୃଦୟାନି ବଃ ।
ସମାନମସ୍ତୁ ବୋ ମନୋ ଯଥା ବଃ ସୁସହାସତି ॥ ( ଋକ୍ ୧୦,୧୯୧,୪ )

ଅର୍ଥ—ହେ ମନୁଷ୍ୟ, ତୁମ ସମସ୍ତଙ୍କ ସଂକଳ୍ପ ଓ ହୃଦୟ ସମାନ ହେଉ । ମିଳିମିଶି ଏକ ମନରେ ଉଦ୍ଦେଶ୍ୟ ସାଧନ କର ।

## ରାଷ୍ଟ୍ରଧର୍ମ

ଯାମନ୍ୱୈଚ୍ଛଦ୍ଧବିଷା ବିଶ୍ୱକର୍ମାନ୍ତରର୍ଣ୍ଣବେ ରଜସି ପ୍ରବିଷ୍ଟାମ୍ ।
ଭୁଜିଷ୍ୟଂ ପାତ୍ରଂ ନିହିତଂ ଗୁହା ଯଦାବିର୍ଭୋଗେ ଅଭବନ୍ମାତୃମଦ୍ଭ୍ୟଃ ॥
( ଅଥର୍ବ ୧୨,୧,୬୦ )

ଅର୍ଥ—ସ୍ଥୂଳ ଦୃଷ୍ଟିରେ ଦେଖିଲେ ପୃଥିବୀର ଜଳ ଓ ଧୂଳିର ଭୌତିକ ରୂପ ଦେଖୁ । ପରନ୍ତୁ ପୃଥିବୀ ଉପରେ ବାସ କରୁଥିବା ପ୍ରଜାଜନଙ୍କ ସହ ନିଜର ମାନସିକ ଭାବନା ଯୋଗ କଲେ ପୃଥିବୀ ମାତୃବତ ଦୃଷ୍ଟିଗୋଚର ହୁଏ । ସାମୂହିକ କଲ୍ୟାଣ ଲାଗି ବୈୟକ୍ତିକ ସ୍ୱାର୍ଥକୁ ତ୍ୟାଗ କଲେ ପୃଥିବୀର ସମସ୍ତ ଭୋଜ୍ୟ ଓ ପେୟ ପଦାର୍ଥ ଉପଲବ୍ଧ ହୁଏ ।

ଯତ୍ତେ ଭୂମେ ବିଖନାମି କ୍ଷିପ୍ରଂ ତଦପି ରୋହତୁ ।
ମା ତେ ମର୍ମ ବିମୃଗ୍ୱରି ମା ତେ ହୃଦୟମର୍ପିପମ୍ ॥ ( ଅଥର୍ବ ୧୨,୧,୩୫ )

ଅର୍ଥ—ହେ ମାତୃଭୂମି, କୃଷି ଓ ଦୂରର୍ଭ ବିଦ୍ୟାରେ ପ୍ରବେଶ କରିବା ପରେ ମୁଁ କର୍ଷଣ ବା ଖୋଦନ କରିବି । ଏହିରୂପେ କଦାପି ଖନନ କରିବି ନାହିଁ ଯଦ୍ୱାରା ତୁମର ମର୍ମସ୍ଥଳ—ହୃଦୟସ୍ଥଳର ବୈଦ୍ୟୁଣ ବା ଉର୍ବରାଶକ୍ତି ନଷ୍ଟ ହୋଇଯିବ । କୃଷି କର୍ମ ବେଳେ, ତୁମକୁ କର୍ଷଣ କଲାବେଳେ ବା ବିଭିନ୍ନ ଖନିଜ ପଦାର୍ଥର ଅନ୍ୱେଷଣ ବେଳେ ମୁଁ ଏହି ସବୁ ବିଦ୍ୟାରେ ପ୍ରବୀଣ ହେବି ଓ ସତତ ଜାଗ୍ରତ ରହିବି ।

ସତ୍ୟଂ ବୃହଦୃତମୁଗ୍ରଂ ଦୀକ୍ଷା ତପୋ ବ୍ରହ୍ମ ଯଜ୍ଞଃ ପୃଥିବୀଂ ଧାରୟନ୍ତି ।
ସା ନୋ ଭୂତସ୍ୟ ଭବ୍ୟସ୍ୟ ପତ୍ନ୍ୟୁରୁଂ ଲୋକଂ ପୃଥିବୀ ନଃ କୃଣୋତୁ ॥
( ଅଥର୍ବ ୧୨,୧,୧ )

ଅର୍ଥ—ବୃହତ୍ ସତ୍ୟ, ବୃହତ୍ ଋତ, ଝସଶକ୍ତି, ଦୀକ୍ଷା, ତପ, ବ୍ରହ୍ମଶକ୍ତି ଓ ଯଜ୍ଞ—ଏହି ସାତମହାଶକ୍ତିର ଆଧାର ଉପରେ ସୃଷ୍ଟି ଦଣ୍ଡାୟମାନ । ଏହି ସପ୍ତ ଶକ୍ତିର ପାଳନ ଦ୍ୱାରା ସୃଷ୍ଟିର ସର୍ବବିଧ କର୍ମରେ ସାରସାମ୍ୟ ରକ୍ଷା ଯାଇ ପାରେ । ଏହି ସପ୍ତ ତତ୍ତ୍ୱର ଅଣ୍ରପୂରେ ଭୂତକାଳରୂପୀ ଭୂମିକା ଉପରେ ଭବିଷ୍ୟତ ସୃଷ୍ଟି ନିର୍ମାଣର ପନ୍ଥା ଅଲୋକିତ ହେଉ ।

ଯେ ଗ୍ରାମା ଯଦରଣ୍ୟଂ ଯାଃ ସଭା ଅଧି ଭୂମ୍ୟାମ୍ ।
ଯେ ସଂଗ୍ରାମାଃ ସମିତୟସ୍ତେଷୁ ଚାରୁ ବଦେମ ତେ ॥ (ଅଥର୍ବ ୧୨,୨,୫୬)

ଅର୍ଥ—ହେ ମାତୃଭୂମି, ଗ୍ରାମ ବା ନଗରର ପଞ୍ଚାୟତ ସ୍ଥଳରେ, ରାଜ୍ୟ-ପ୍ରବନ୍ଧକ ସଭା ଓ ସମିତିରେ, ଅରଣ୍ୟରେ, ଯୁଦ୍ଧ ଭୂମିରେ ତୁମର ହିତକଥା ଚିନ୍ତା କରିବ ।

ଅଶ୍ୱ ଇବ ରଜୋ ଦୁଧୁବେ ବି ତାନ୍ ଜନାନ୍ୟ ଅକ୍ଷିୟନ୍ ପୃଥିବୀଂ ଯାଦ ଜାୟତ
ମନ୍ଦ୍ରାଗ୍ରେତ୍ୱରୀ ଭୁବନସ୍ୟ ଗୋପା ବନସ୍ପତୀନାଂ ଗୃଭିରୋଷଧୀନାମ୍ ।
( ଅଥର୍ବ ୧୨,୧,୫୭ )

ଅର୍ଥ—ନିଜ ଉପରେ ପଡ଼ିଥିବା ଧୂଳିକୁ ଘୋଡ଼ା ଯେଉଁରୂପେ ଝାଡ଼ି ଫୋପାଡ଼ିଦିଏ, ସେହିରୂପେ ଦେଶଦ୍ରୋହୀମାନଙ୍କୁ ରାଷ୍ଟ୍ର ନିର୍ବାସନ କରୁ । ଦୁଷ୍ଟ୍ୟ କୃତ ଲୋକଙ୍କୁ ଉଚିତ ଦଣ୍ଡ ଦିଆଯାଉ । ରାଷ୍ଟ୍ରର ହିତପାଇଁ ଯେଉଁମାନେ କାର୍ଯ୍ୟ କରନ୍ତି, ରାଷ୍ଟ୍ର ସେମାନଙ୍କ ପୃଷ୍ଠପୋଷକ ହେଉ । କଲ୍ୟାଣକାରୀ ବନସ୍ପତି ଓ ଔଷଧିମାନଙ୍କୁ ଧାରଣ କରି ରାଷ୍ଟ୍ର 'ଅଚିଗ୍ରଭୂମି'— ଆଗୁଆ ହୋଇ ବଢ଼ୁ ।

ଯଦ୍ୱଦାମି ମଧୁମତ୍ତଦ୍ୱଦାମି ଯଦୀକ୍ଷେ ତଦ୍ୱନନ୍ତି ମା ।
ତ୍ୱିଷୀମାନସ୍ମି ଜୂତିମାନବାନ୍ୟାନ୍ହନ୍ମି ଦୋଧତଃ ॥ (ଅଥର୍ବ ୧୨,୧,୫୮)

ଅର୍ଥ – ହେ ମାତୃଭୂମି, ମୋ ବାଣୀ ମଧୁରତମ ହେଉ । ମୋ ପର୍ଯ୍ୟବେକ୍ଷଣ ଶକ୍ତି ସତର୍କ ଓ ଜାଗ୍ରତ କରୁ । ମୁଁ ତେଜସ୍ୱୀ ଓ ପ୍ରତାପୀ ହେବି । ବେଗବାନ୍ ଓ ଗତିଶୀଳ ହେବି । ଶତ୍ରୁମାନଙ୍କୁ ପରାଜୟ କରିବି । ଏହି ପଞ୍ଚମହାଗୁଣ ମୋ ଉପରେ ସନ୍ନିବିଷ୍ଟ ହେଉ । ପ୍ରତ୍ୟେକ ପ୍ରଜା ଏ ସବୁର ପାଳନ କରନ୍ତୁ ।

ତ୍ୱମସ୍ୟାବପନୀ ଜନାନାମଦିତିଃ କାମଦୁଘା ପପ୍ରଥାନା ।
ଯତ୍ତ ଊନଂ ତତ୍ତ ଆ ପୂରୟାତି ପ୍ରଜାପତିଃ ପ୍ରଥମଜା ଋତସ୍ୟ ॥
(ଅଥର୍ବ ୧୨,୧,୬୧)

ଅର୍ଥ—ହେ ମାତୃଭୂମି, ତୁମେ ବିଭିନ୍ନ ପ୍ରକାର ଶସ୍ୟ ଉତ୍ପନ୍ନର ସ୍ଥଳ । ତୁମେ ଅଦିତି, ଅଖଣ୍ଡନୀୟ । ତୁମେ କାମଦୁଘା— ଆମ୍ଭମାନଙ୍କ

କାମନା ପୂରଣ କର । ତୁମେ ପଦ୍ମଥାନା, ବର୍ଣ୍ଣ ରୂପା । ସୃଷ୍ଟିକର୍ତ୍ତା ପ୍ରଜାପାଳକ ରାଜା ସତ୍ୟନିଷ୍ଠ ହୁଅନ୍ତୁ । ପ୍ରଜାପତି ପରମାତ୍ମାଙ୍କ କୃପାରୁ ଅସତ୍ୟ ବିରୁଦ୍ଧରେ ଲଢିବାକୁ ଆମ୍ଭମାନଙ୍କୁ ଶକ୍ତି ମିଳୁ ।

ଉପସ୍ଥାସ୍ତେ ଅନମୀବା ଅଯକ୍ଷ୍ମା ଅସ୍ମଭ୍ୟଂ ସନ୍ତୁ ପୃଥିବୀ ପ୍ରସୂତାଃ ।
ଦୀର୍ଘଂ ନ ଆୟୁ ପ୍ରତିବୁଧ୍ୟମାନା ବୟଂ ତୁଭ୍ୟଂ ବଳିହୃତଃ ସ୍ୟାମ ॥
( ଅଥର୍ବ ୧୨,୧,୬୨ )

ଅର୍ଥ---ହେ ମାତୃଭୂମି, ଆମ୍ଭ ରାଜ୍ୟ ବ୍ୟବସ୍ଥା ଏହିରୂପ ହେଉ ଯଦ୍ୱାରା ରାଜ୍ୟରୁ ସକଳ ରୋଗ ଦୂର ହେବ । ଆମ୍ଭେମାନେ ସୁସ୍ଥ ଓ ଆୟୁଷ୍ମାନ୍ ହେବୁ । ଏହି ଦୀର୍ଘ ଆୟୁର ପ୍ରତ୍ୟେକ ମୁହୂର୍ତ୍ତରେ ଆମ୍ଭେ ନୂତନ ନୂତନ ଜ୍ଞାନ ଆହରଣ କରିବୁ । ହେ ମାତୃଭୂମି, ରାଜ୍ୟର ପ୍ରାପ୍ୟ ଅଂଶ - ବଳି - କର ନିୟମିତରୂପେ ଦାନ କରିବୁ ।

ଜନଂ ବିଭ୍ରତୀ ବହୁଧା ବିବାଚସଂ ନାନାଧର୍ମାଣଂ ପୃଥିବୀ ଯଥୌକସମ୍ ।
ସହସ୍ରଂ ଧାରା ଦ୍ରବିଣସ୍ୟ ମେ ଦୁହାଂ ଧ୍ରୁବେବ ଧେନୁରନପସ୍ଫୁରନ୍ତୀ ॥
( ଅଥର୍ବ ୧୨,୧,୪୫ )

ଅର୍ଥ---ଦେଶରେ ଭିନ୍ନ ଭିନ୍ନ ଭାଷାଭାଷୀ ଲୋକ ଥାଆନ୍ତି । ଭିନ୍ନ ଭିନ୍ନ ଧର୍ମାବଲମ୍ବୀ – କର୍ତ୍ତବ୍ୟାନୁସାରୀ – ବ୍ରାହ୍ମଣାଦି ବର୍ଣ୍ଣ ଥାଆନ୍ତି । ଭାଷା ଓ କର୍ମରେ ଭିନ୍ନତା ଥିଲେ ବି ଏ ସମସ୍ତେ ମିଳାମିଶି ପ୍ରେମପୂର୍ବକ ବାସ କରିବା ଉଚିତ । ଯେପରି ଗୋଟିଏ ପରିବାରର ଲୋକେ ବିଭିନ୍ନ କାର୍ଯ୍ୟରେ ନିୟୋଜିତ ରହି ଓ ବିଭିନ୍ନ ସ୍ୱରର

ବାଣୀ ବ୍ୟବହାର କରି ମୃଢ଼ା ପରସ୍ପର ସ୍ନେହପୂର୍ବକ ବାସ କରନ୍ତୁ, ଯେହ୍ନରୂପେ ରାଷ୍ଟ୍ରର ବହୁଭାଷୀ ଓ ବହୁଧର୍ମୀ ଜନ ପ୍ରୀତିପୂର୍ବକ ବାସ କରନ୍ତୁ । ଏହାହେଲେ ରାଷ୍ଟ୍ରର ସର୍ବବିଧ ଉନ୍ନତି ସାଧିତ ହେବ । ଯେଉଁରୂପେ ଦୁଧିଆଳୀ ଗାଈ ଅମୃତରୂପୀ ଦୁଗ୍ଧର ଧାର ଦୁହାଁଇବା ବେଳେ ନିଶ୍ଚଳ ନୀରବ ରହିଥାଏ, ସେହ୍ନରୂପେ ଶାନ୍ତ ରାଷ୍ଟ୍ରରେ ସୁଖସମୃଦ୍ଧିର ସହସ୍ର ଧାର ପ୍ରବାହିତ ହେବ ।

ବ୍ରହ୍ମଚର୍ଯ୍ୟେଣ ତପସା ରାଜା ରାଷ୍ଟ୍ରଂ ବି ରକ୍ଷତି ।
ଆଚାର୍ଯ୍ୟୋ ବ୍ରହ୍ମଚର୍ଯ୍ୟେଣ ବ୍ରହ୍ମଚାରିଣମିଚ୍ଛତେ ॥ (ଅଥର୍ବ ୧୧,୫,୧୭)

ଅର୍ଥ – ବେଦ ବିଚାର ଓ ଜିତେନ୍ଦ୍ରିୟତା ରୂପୀ ତପ ଦ୍ୱାରା ରାଜା ରାଷ୍ଟ୍ରର ରକ୍ଷା କରେ । ବ୍ରହ୍ମଚର୍ଯ୍ୟର କାରଣରୁ ଆଚାର୍ଯ୍ୟ ବ୍ରହ୍ମଚାରୀ-ବିଦ୍ୟାର୍ଥୀକୁ ସ୍ନେହ କରେ ।

ଯତ୍ର ବ୍ରହ୍ମ ଚ କ୍ଷତ୍ରଂ ଚ ସମ୍ୟଞ୍ଚୌ ଚରତଃ ସହ ।
ତଂ ଲୋକଂ ପୁଣ୍ୟଂ ପ୍ରଜ୍ଞେଷଂ ଯତ୍ର ଦେବାଃ ସହାଗ୍ନିନା ॥ (ଯଜୁ ୨୦,୨୫)

ଅର୍ଥ – ଯେଉଁଠାରେ ବ୍ରହ୍ମଶକ୍ତି ସହ କ୍ଷତ୍ରଶକ୍ତି ଏକତ୍ରିତ ହୁଏ ତା ଯେଉଁଠାରେ ଶାସକ ଓ ପଣ୍ଡିତଙ୍କ ମଧ୍ୟରେ ପ୍ରୀତିଯୁକ୍ତ ବ୍ୟବହାର ଥାଏ, ସେହି ରାଷ୍ଟ୍ର ପୁଣ୍ୟଲୋକ ଅଟେ ।

ନାସ୍ୟ ଜାୟା ଶତବାହୀ କଲ୍ୟାଣୀ ତଲ୍ପମା ଶୟେ ।
ଯସ୍ମିନ୍ ରାଷ୍ଟ୍ରେ ନିରୁଧ୍ୟତେ ବ୍ରହ୍ମଜାୟାଚିତ୍ୟା ॥ ( ଅଥର୍ବ ୫,୧୭,୧୨ )

ଅର୍ଥ – ଯେଉଁ ରାଷ୍ଟ୍ରରେ ଶିକ୍ଷାର ପ୍ରଚାର ସଙ୍କୁଚିତ, ସେଠାରେ କଲ୍ୟାଣ ବହୁମୁଖୀ ହୋଇ ପାରେ ନାହିଁ ।

ନାସ୍ୟ ଧେନୁଃ କଲ୍ୟାଣୀ ନାନଡ୍‌ବାନ୍ ସହତେ ଧୁରମ୍ ।
ବିଜାନିର୍ଯତ୍ର ବ୍ରାହ୍ମଣୋ ରାତ୍ରିଂ ବସତି ପାପୟା ॥ ( ଅଥର୍ବ ୫,୧୭,୧୮ )

ଅର୍ଥ—ଯେଉଁଠାରେ ବ୍ରାହ୍ମଣ ରାତିସାରା କ୍ଷୁଧାରେ କାଳାତିପାତ କରେ ଅର୍ଥାତ୍ ଯେଉଁଠାରେ ବିଦ୍ୟାର ନିରାଦର ଥାଏ, ସେଠାରେ ଗାଈ ଦୁଗ୍ଧ ଦିଏ ନାହିଁ କି ବଳଦ ଗାଡ଼ି ଟାଣେ ନାହିଁ ଅର୍ଥାତ୍ ସେ ଦେଶର ସର୍ବନାଶ ଘଟେ ।

ଆ ବ୍ରହ୍ମନ୍ ବ୍ରାହ୍ମଣୋ ବ୍ରହ୍ମବର୍ଚସୀ ଜାୟତାମାରାଷ୍ଟ୍ରେ ରାଜନ୍ୟଃ ଶୂର ଇଷବ୍ୟୋଽତି ବ୍ୟାଧୀ ମହାରଥୋ ଜାୟତାମ୍ । ଦୋଗ୍‌ଧ୍ରୀ ଧେନୁର୍ବୋଢ଼ାଽନଡ୍‌ବାନାଶୁଃ ସପ୍ତିଃ ପୁରନ୍ଧିର୍ଯୋଷା ଜିଷ୍ଣୂ ରଥେଷ୍ଠା ସଭେୟୋ ଯୁବାଽସ୍ୟ ଯଜମାନସ୍ୟ ବୀରୋ ଜାୟତାମ୍ । ନିକାମେ ନିକାମେ ନଃ ପର୍ଜନ୍ୟୋ ବର୍ଷତୁ । ଫଳବତ୍ୟୋ ନ ଓଷଧୟଃ ପଚ୍ୟନ୍ତାମ୍ । ଯୋଗକ୍ଷେମୋ ନଃ କଳ୍ପତାମ୍ ॥ ( ଯଜୁ ୨୨,୨୨ )

ଅର୍ଥ—ହେ ପ୍ରଭୁ, ଏକ ଆଦର୍ଶ ରାଷ୍ଟ୍ରର ଯୋଜନା କରୁଛୁ । ଏହି ରାଷ୍ଟ୍ରରେ ଉଚ୍ଚକୋଟିର ବ୍ରାହ୍ମଣ ଜନ୍ମ ହୁଅନ୍ତୁ । ଉଚ୍ଚକୋଟିର କ୍ଷତ୍ରିୟ ବୀର ଉତ୍ପନ୍ନ ହୁଅନ୍ତୁ । ଗାଈ, ଘୋଡ଼ା ଆଦି ଉପକାରୀ ପ୍ରାଣୀ ପୁଷ୍ଟ ସବଳ ରହନ୍ତୁ । ଉଚିତ ସମୟରେ ବୃଷ୍ଟି ହେଉ ।

ଅପ୍ରାପ୍ତ ଧନ ପ୍ରାପ୍ତ ହେଉ ଓ ପ୍ରାପ୍ତି ପରେ ସଂରକ୍ଷଣ ଶକ୍ତି ବୃଦ୍ଧି ହେଉ ।

## ବର୍ଣ୍ଣାଶ୍ରମ ଓ ସଂସ୍କାର ବଧି

ବ୍ରାହ୍ମଣୋଽସ୍ୟ ମୁଖମାସୀଦ୍ବାହୂ ରାଜନ୍ୟଃ କୃତଃ ।
ଊରୂ ତଦସ୍ୟ ଯଦ୍ବୈଶ୍ୟଃ ପଦ୍‌ଭ୍ୟାଂ ଶୂଦ୍ରୋ ଅଜାୟତ ॥ (ଯଜୁ ୩୧,୧୧)

ଅର୍ଥ — ବେଦବିଦ୍ୟା ଓ ଶମ-ଦମାଦି ଉତ୍ତମ ଗୁଣଯୁକ୍ତ ମନୁଷ୍ୟ ବ୍ରାହ୍ମଣ ଅଟନ୍ତି । ସେ ମୁଖ ସଦୃଶ୍ୟ । ପରାକ୍ରମଶାଳୀ ମନୁଷ୍ୟ କ୍ଷତ୍ରିୟ ଓ ଭୁଜା ସଦୃଶ୍ୟ । ବ୍ୟବହାର-ବିଦ୍ୟା-ପ୍ରବୀଣ ମନୁଷ୍ୟ ବୈଶ୍ୟ ଅଟନ୍ତି । ସେ ଊରୁ ସଦୃଶ୍ୟ । ଅଭିମାନରହିତ ଅଥଚ ସେବାବ୍ରତୀ, ବିଦ୍ୟାହୀନ ମନୁଷ୍ୟ ପାଦ ସଦୃଶ୍ୟ । ସେ ଶୂଦ୍ର । ଚତୁର୍ବର୍ଣ୍ଣର ଏହି ବ୍ୟବସ୍ଥା ମନୁଷ୍ୟର ଗୁଣ କର୍ମ ଓ ସ୍ୱଭାବ ଦୃଷ୍ଟିରୁ ହୋଇଥାଏ । ଜନ୍ମରୁ କେହି ବ୍ରାହ୍ମଣାଦି ବର୍ଣ୍ଣ ହୁଅନ୍ତି ନାହିଁ । କର୍ମରୁ ବର୍ଣ୍ଣ ବିଭାଗ ହୁଏ । ମୁଖାଦି ଉପର୍ଯ୍ୟୁକ୍ତ ଚାରି ଅଂଶ ଶରୀରରେ ସମାନ ଭାବେ ଉପଯୋଗୀ ହେବାପରି ସମାଜର ଶ୍ରମ ବଣ୍ଟନ *(Division of Labour)* କାର୍ଯ୍ୟ ବ୍ରାହ୍ମଣାଦି ବର୍ଣ୍ଣଚତୁଷ୍ଟୟ ସମାନ ଭାବରେ କରନ୍ତି ।

ଉତସ୍ତୁ ବ୍ରହ୍ମଣ୍ୟନ୍ତେ ଦେବାନ୍ ଯଜ୍ଞେନ ବୋଧୟ ।
ଆୟୁଃ ପ୍ରାଣଂ ପ୍ରଜାଂ ପଶୂନ୍ କୀର୍ତ୍ତିଂ ଯଜମାନଂ ଚ ବର୍ଦ୍ଧୟ ॥
(ଅଥର୍ବ ୧୯,୬୩,୧)

ଅର୍ଥ—ହେ ବେଦପାଳକ ବ୍ରାହ୍ମଣ ଦେବ ! ଉଠ, ସ୍ୱୟଂ ସାବଧାନ ହୁଅ । ପୁଣି ବିଦ୍ୟାଭିଳାଷୀମାନଙ୍କୁ ଯଜ୍ଞ ଓ ଅଧ୍ୟାପନ ଦ୍ୱାରା ସାବଧାନ କରାଅ । ଆୟୁ, ପ୍ରାଣଶକ୍ତି, ସନ୍ତାନ, ପଶୁ, କୀର୍ତ୍ତି ଓ ଯଜମାନଙ୍କୁ ବଢ଼ାଅ ।

ଉତ୍ତିଷ୍ଠତାନା ନଦ୍ଧେଦଞ୍ଚ ସାମ୍ରାଜ୍ୟାୟ ସୁକ୍ରତୁ ।
ପ୍ରୁତର୍ତ୍ତା କ୍ଷତ୍ରିୟା କ୍ଷତମାଣତଞ୍ଚ ॥ ( ଋକ୍ ୮,୨୫,୮ )

ଅର୍ଥ—ସତ୍ୟାନୁସାରୀ, ଉତ୍ସାହୀ କ୍ଷତ୍ରିୟ (କ୍ଷତ + ତ୍ର = କ୍ଷତରୁ ତ୍ରାଣ କରିବା ଲୋକ) କ୍ଷତ୍ରତେଜ— ଦୁଃଖନିବାରଣ ଶକ୍ତି ପ୍ରାପ୍ତ ହେଉ । ସୁକର୍ମ କରି ସାମ୍ରାଜ୍ୟର ରକ୍ଷା କରୁ । କ୍ଷତ୍ରିୟର ମୁଖ୍ୟ ଧର୍ମ ଦୁଃଖାପହରଣ । ସତ୍ୟାଚରଣ ଓ ନିୟମ ପାଳନ ଦ୍ୱାରା ଏହି ଧର୍ମ ସୁଗଅଗାମୀ ହୁଏ ।

ଇନ୍ଦ୍ରମହଂ ବଣିଜଂ ଚୋଦୟାମି ସ ନ ଏତୁ ପୁର ଏତା ନୋ ଅସ୍ତୁ ।
ନୁଦନ୍ନରାତିଂ ପରିପନ୍ଥିନଂ ମୃଗଂ ସ ଈଶାନୋ ଧନଦା ଅସ୍ତୁ ମହ୍ୟମ୍ ॥
( ଅଥର୍ବ ୩,୧୫,୧ )

ଅର୍ଥ---ଐଶ୍ୱର୍ଯ୍ୟଶାଳୀ ବଣିକ ବା ବୈଶ୍ୟକୁ ପ୍ରେରଣା କରୁଛି । ସେ ମନୁଷ୍ୟଙ୍କ ମଧ୍ୟକୁ ଆସୁ--- ଧନ ସମ୍ବନ୍ଧରେ ସେମାନଙ୍କ ନେତା ହେଉ । ସେ ସମର୍ଥ ହେଉ । ସମାଜର ଶତ୍ରୁ, ଧନଲୋଲୁପୀ, ଠକ, ଡ଼ାକୁ ଓ ପଶୁ ସ୍ୱଭାବ ମନୁଷ୍ୟଙ୍କୁ ପରାଭବ କରୁ । ଧନର ବର୍ଦ୍ଧନ କରୁ ।

ବ୍ରହ୍ମଚର୍ଯ୍ୟେଣ ତପସା ଦେବା ମୃତ୍ୟୁମୁପାଘ୍ନତ ।
ଇନ୍ଦ୍ରୋ ହ ବ୍ରହ୍ମଚର୍ଯ୍ୟେଣ ଦେବେଭ୍ୟଃ ସ୍ୱର୍ ଭରତ ॥
( ଅଥର୍ବ ୧୧,୫,୧୯ )

ଅର୍ଥ—ବ୍ରହ୍ମଚର୍ଯ୍ୟ † ଦ୍ୱାରା ମୃତ୍ୟୁର ରହସ୍ୟ ଜାଣିନେବାରୁ ବ୍ରହ୍ମଚାରୀଙ୍କୁ ମୃତ୍ୟୁର ଭୟ ରହେ ନାହିଁ । ବ୍ରହ୍ମଚାରୀ ଇନ୍ଦ୍ରିୟମାନଙ୍କୁ ସଂଯମରେ ରଖେ । ଇନ୍ଦ୍ରିୟଙ୍କ ସଂଯମ ଯୋଗୁଁ ଆତ୍ମାକୁ ପ୍ରକୃତ ସୁଖ ମିଳେ । ଏଣୁ ମନୁଷ୍ୟର ପ୍ରଥମ ଆଶ୍ରମ ବ୍ରହ୍ମଚର୍ଯ୍ୟାଶ୍ରମ ଅତି ମହତ୍ତ୍ୱପୂର୍ଣ୍ଣ ।

ଗୁରୁକୁଳରୁ ସମାବର୍ତ୍ତନ—

ତାନି କଳ୍ପଦ୍ ବ୍ରହ୍ମଚାରୀ ସଲିଲସ୍ୟ ପୃଷ୍ଠେ ତପୋଽତିଷ୍ଠତ୍ତପ୍ୟମାନଃ ସମୁଦ୍ରେ ।
ସ ସ୍ନାତୋ ବଭ୍ରୁଃ ପିଙ୍ଗଳଃ ପୃଥିବ୍ୟାଂ ବହୁ ରୋଚତେ ॥
( ଅଥର୍ବ ୧୧,୫,୨୬ )

ଅର୍ଥ—ବ୍ରହ୍ମଚାରୀ ବ୍ରହ୍ମଚର୍ଯ୍ୟାଶ୍ରମ ପୂରଣ କରି ଏବଂ ବେଦପଠନ, ପ୍ରିୟାଚରଣ ତଥା ସଂଯମାନୁଷ୍ଠାନ ଶିକ୍ଷା କରି ସମୁଦ୍ର ସମାନ ଗମ୍ଭୀର ହୋଇ ଗୁରୁକୁଳରୁ ସମାବର୍ତ୍ତନ କରେ । ଏହି ବ୍ରହ୍ମଚାରୀ ଧନ୍ୟବାଦର ଯୋଗ୍ୟ ।

---

† ଗୁରୁକୁଳବାସ ଲକ୍ଷଣମ୍ ଅନ୍ୟତ୍ ବା ବ୍ରହ୍ମପ୍ରାପ୍ତ୍ୟର୍ଥମ୍
( କଠୋପନିଷଦ୍ ବ୍ୟାଖ୍ୟା— ଶଙ୍କରାଚାର୍ଯ୍ୟ )

ଗୃହସ୍ଥାଶ୍ରମ—

କନ୍ୟୃଣା ଯୋଷା ମର୍ଯତୋ ବଧୂୟୋଃ ପରିପ୍ରୀତା ପନ୍ୟସା ବାର୍ଯେଣ ।
ଭଦ୍ରା ବଧୂର୍ଭବତି ଯତ୍ସୁପେଶାଃ ସ୍ୱୟଂ ସା ମିତ୍ରଂ ବନୁତେ ଜନେଚିତ୍ ॥
( ଋକ୍ ୧୦,୨୭,୨ )

ଅର୍ଥ—ବଧୂଯୋଗ୍ୟା, ଭଦ୍ରା ଓ ସୁରୂପା ସ୍ତ୍ରୀଗଣ ନିଜ ନିଜ ରୁଚି ଅନୁଯାୟୀ ମିତ୍ର ବା ପତିଙ୍କୁ ଜନସମୂହ ମଧ୍ୟରୁ ବରଣ କରିନିଅନ୍ତି । ବ୍ରହ୍ମଚର୍ଯ୍ୟାଶ୍ରମ ପରେ ଏଠାରେ ଗୃହସ୍ଥାଶ୍ରମ ଆରମ୍ଭ ହୁଏ ।

ବିବାହ ସଂସ୍କାର ବେଳେ ପ୍ରତିଜ୍ଞା—

ଗୃହ୍ଣାମି ତେ ସୌଭଗତ୍ୱାୟ ହସ୍ତଂ ମୟା ପତ୍ୟା ଜରଦଷ୍ଟିର୍ଯଥାସଃ ।
ଭଗୋ ଅର୍ଯମା ସବିତା ପୁରଂଧିର୍ମହ୍ୟଂ ତ୍ୱାଦୁର୍ଗାର୍ହପତ୍ୟାୟ ଦେବାଃ ॥
( ଅଥର୍ବ ୧୪,୧,୫୦ )

ଭଗସ୍ତେ ହସ୍ତମଗ୍ରହୀତ୍ ସବିତା ହସ୍ତମଗ୍ରହୀତ୍ ।
ପତ୍ନୀ ତ୍ୱମସି ଧର୍ମଣାହଂ ଗୃହପତିସ୍ତବ ॥ ( ଅଥର୍ବ ୧୪,୧,୫୧ )

ଅର୍ଥ—ହେ ବଧୂ ! ଭଗ, ଅର୍ଯମା, ସବିତା, ପୁରନ୍ଧି ଆଦି ଦେବତାଗଣ ଗୃହସ୍ଥାଶ୍ରମ ପାଇଁ ତୁମକୁ ମୋତେ ଅର୍ପଣ କରିଛନ୍ତି । ଏଣୁ ସୌଭାଗ୍ୟ ପାଇଁ ତୁମ ପାଣିଗ୍ରହଣ କରୁଛି । ତୁମେ ବୃଦ୍ଧାବସ୍ଥା

ପର୍ଯ୍ୟନ୍ତ ମୋ ସହ ରହ । ଭଗ, ସବିତାଦି ଦେବତାଗଣ ତୁମକୁ ମୋ ହସ୍ତରେ ଅର୍ପଣ କରନ୍ତି । ଏଣୁ ତୁମେ ମୋର ଧର୍ମର ପତ୍ନୀ ଓ ମୁଁ ତୁମର ଧର୍ମର ପତି ।

ଅଭି ତ୍ୱା ମନୁ ଜାତେନ ଦଧାମି ମମ ବାସସା ।
ଯଥା ସୋ ମମ କେବଲୋ ନାନ୍ୟାସାଂ କୀର୍ତ୍ତୟାଶ୍ଚନ ॥ (ଅଥର୍ବ ୭,୩୭,୧)

ଅହଂ ବଦାମି ନେତ୍ ତ୍ୱଂ ସଭାୟାମହଂ ତ୍ୱଂ ବଦ ।
ମମେଦସସ୍ତ୍ୱଂ କେବଲୋ ନାନ୍ୟାସାଂ କୀର୍ତ୍ତୟାଶ୍ଚନ ॥ (ଅଥର୍ବ ୭,୩୮,୪)

ଅର୍ଥ—ହେ ମନନଶୀଳ ପୁରୁଷ ! ମୁଁ ତୁମକୁ ନିଜ ବସ୍ତ୍ର ଦ୍ୱାରା ବାନ୍ଧିଦେଉଛି ଯଦ୍ୱାରା ତୁମେ ମୋର ହୋଇ ରହିବ । ଅନ୍ୟ ସ୍ତ୍ରୀ ସହ ବାର୍ତ୍ତାଳାପ କରିବ ନାହିଁ । ମୁଁ ପ୍ରତିଜ୍ଞା କରୁଛି ଓ ତୁମେ ବି ଏହି ସଭାରେ ପ୍ରତିଜ୍ଞା କର ଯେ ଅନ୍ୟ ସ୍ତ୍ରୀ ସହ ବାର୍ତ୍ତାଳାପ କରିବ ନାହିଁ ।

ମମେୟମସ୍ତୁ ପୋଷ୍ୟା ମହ୍ୟଂ ତ୍ୱାଦାତ୍ ବୃହସ୍ପତିଃ ।
ମୟା ପତ୍ୟା ପ୍ରଜାବତି ସଞ୍ଜୀବ ଶରଦଃ ଶତମ୍ ॥ (ଅଥର୍ବ ୧୪,୧,୫୩)

ଅର୍ଥ—ହେ ବଧୂ, ମହାନ୍ ପରମାତ୍ମା ତୁମକୁ ମୋଠାରେ ଅର୍ପଣ କରିଛନ୍ତି । ତୁମକୁ ପୋଷଣ କରିବା ମୋର କର୍ତ୍ତବ୍ୟ । ମୋ ସହ ଶହେ ବର୍ଷ ପର୍ଯ୍ୟନ୍ତ ସୁଖରେ କାଳାତିପାତ କର ।

ସମଂଜନ୍ତୁ ବିଶ୍ୱେଦେବାଃ ସମାପୋ ହୃଦୟାନି ନୌ ।
ସଂ ମାତରିଶ୍ୱା ସଂଧାତା ସମୁଦ୍ରେଷ୍ଟ୍ରୀ ଦଧାତୁ ନୌ ॥ (ଋକ୍ ୧୦,୮୫,୪୭)

ଅର୍ଥ---ହେ ସଭାସଦ୍‌ଗଣ, ଆପଣ ନିଶ୍ଚୟରେ ଜାଣିରଖନ୍ତୁ ଯେ ଆମ ଦୁହିଙ୍କ ହୃଦୟ ଜଳ ସମାନ ମିଶି ଯାଉଛି । ଅତେବ ଦୁହେଁ ପ୍ରାଣବାୟୁ ପରି ସମତା ରକ୍ଷା କରିବୁ । ଜଗତର ଧାରଣକର୍ତ୍ତା ପରମାତ୍ମାଙ୍କ ପରି ଜଣେ ଅପରକୁ ଦୃଢ଼ ଭାବରେ ଧାରଣ କରିବୁ । ଉପଦେଶକ ଶ୍ରୋତାମାନଙ୍କ ପ୍ରତି ଶ୍ରଦ୍ଧା ଓ ପ୍ରେମ ରଖିବା ପରି ଆମେ ଦୁହେଁ ପରସ୍ପର ପ୍ରେମପୂର୍ବକ ରହିବୁ ।

ଗର୍ଭାଧାନ---

ଅଶ୍ୱତ୍ଥଶ୍ଚର୍ଷ ନାରୀସ୍ୱମାଗନ୍ ତସ୍ୟାଂ ନରେ ବପତ ବୀଜମସ୍ୟାମ୍ ।
ସା ବଃ ପ୍ରଜାଂ ଜନୟଦ୍ଭ ବକ୍ଷଣାଭ୍ୟୋ ବିଭ୍ରତୀ ଦୁଗ୍ଧମୃଷଭସ୍ୟ ରେତଃ ॥
( ଅଥର୍ବ ୧୪,୨,୧୪ )

ଅର୍ଥ---ହେ ନର, ଅଶ୍ୱବତୀ ଓ ଉର୍ବଶ୍ୱ ନାରୀ ଆସିଛି । ତା'ଠାରେ ବୀଜ ବପନ କର ଓ ସେ ଶୁଦ୍ଧ ବୀର୍ଯ୍ୟକୁ ଧାରଣ କରି ପୁତ୍ର ଉତ୍ପନ୍ନ କରୁ ।

ବିଷ୍ଣୁର୍ଯୋନିଂ କଳ୍ପୟତୁ ତ୍ୱଷ୍ଟା ରୂପାଣି ପିଂଶତୁ ।
ଆ ସିଂଚତୁ ପ୍ରଜାପତିର୍ଧାତା ଗର୍ଭଂ ଦଧାତୁ ତେ ॥ (୧)

ଗର୍ଭଂ ଧେହି ସେନୀବାଲି ଗର୍ଭଂ ଧେହି ସରସ୍ୱତୀ ।
ଗର୍ଭଂ ତେ ଅଶ୍ୱିନୌ ଦେବାଵାଧତ୍ତାଂ ପୁଷ୍କରସ୍ରଜା ॥ (୨)

ହିରଣ୍ୟୟୀ ଅରଣୀ ଯଂ ନିର୍ମନ୍ଥତୋ ଅଶ୍ୱିନା ।
ତଂ ତେ ଗର୍ଭଂ ହବାମହେ ଦଶମେ ମାସି ସୂତବେ ॥ (୩)
( ୧୦,୧୮୪ )

ଅର୍ଥ—ହେ ବଧୂ, ବିଷ୍ଣୁ ତୁମ ଗର୍ଭସ୍ଥାନକୁ ଗର୍ଭଧାରଣ ପାଇଁ ଯୋଗ୍ୟ କରୁ, ତ୍ୱଷ୍ଟା ତୋର ଗର୍ଭର ଆକାରକୁ ସୃଷ୍ଟି କରୁ, ପ୍ରଜାପତି ଜୀବନଶକ୍ତି ସଞ୍ଚାର କରୁ ଓ ଧାତା ଗର୍ଭର ପୁଷ୍ଟି କରୁ । ଚନ୍ଦ୍ରଶକ୍ତି ଗର୍ଭଧାରଣ କରୁ, ସରସ୍ୱତୀ ଗର୍ଭଧାରଣ କରୁ ଓ ଆକାଶସ୍ଥିତ ଅଶ୍ୱିନୀ ଗର୍ଭ ପୋଷଣ କରୁ । ଦଶ ମାସ ପରେ ଗର୍ଭକୁ ବହିର୍ଗତ କରିବା ପାଇଁ ଅଶ୍ୱିନୀ ଦେବତାଙ୍କୁ ଆବାହନ କରୁଛୁ ।

ଏଠାରେ ବିଷ୍ଣୁ, ତ୍ୱଷ୍ଟା, ପ୍ରଜାପତି, ସରସ୍ୱତୀ, ଅଶ୍ୱିନୀ ଆଦି ସୂକ୍ଷ୍ମଶକ୍ତି ଗର୍ଭର ଧାରଣ, ପୋଷଣ, ଜନନାଦି କ୍ରିୟାରେ ସହାୟତା କରନ୍ତି । ଆୟୁର୍ବେଦ ଶାସ୍ତ୍ରର ଚର୍ଚ୍ଚାରେ ଏ ସବୁର ଗୂଢ଼ ରହସ୍ୟ ପ୍ରତିପାଦିତ ହେବ ।

ପୁଂସବନ ସୀମନ୍ତୋନ୍ନୟନ ସଂସ୍କାରଦ୍ୱୟ—

ଗର୍ଭ ସ୍ଥିର ହେବା ଜଣାଯିବା ପରେ ଦ୍ୱିତୀୟ ବା ତୃତୀୟ ମାସରେ ଗର୍ଭରେ ପୁରୁଷତ୍ୱ ଲାଭ ପାଇଁ ପୁଂସବନ ସଂସ୍କାର କରାଯାଏ । ଗର୍ଭବତୀ

ସ୍ତ୍ରୀର ମନ ସନ୍ତୁଷ୍ଟ ଓ ନିର୍ବେଗ କରିବା ପାଇଁ ଗର୍ଭର ଚତୁର୍ଥ ବା ଅଷ୍ଟମ ମାସରେ ସୀମନ୍ତୋନ୍ନୟନ ସଂସ୍କାର ଅନୁଷ୍ଠିତ ହୁଏ । ବେଦରେ ଅଛି—

ଶମୀମଶ୍ୱତ୍ଥଃ ଆରୂଢସ୍ତତ୍ର ପୁଂସବନଂ କୃତମ୍ ।
ତଦ୍ୱୈ ପୁତ୍ରସ୍ୟ ବେଦନଂ ତତ୍ର ସ୍ତ୍ରୀଷ୍ୱା ଭରାମସି ॥

ପୁଂସି ବୈ ରେତୋ ଭବତି ତତ୍ ସ୍ତ୍ରିୟାମନୁ ଷିଚ୍ୟତେ ।
ତଦ୍ୱୈ ପୁତ୍ରସ୍ୟ ବେଦନଂ ତତ୍ ପ୍ରଜାପତିରବ୍ରବୀତ୍ ॥
( ଅଥର୍ବ ୬,୧୧,୧-୨ )

ତଦ୍ୱା ଅଥର୍ବଣଃ ଶିରୋ ଦେବକୋଶଃ ସମୁବ୍‌ଜିତଃ ।
ତତ୍ ପ୍ରାଣୋ ଅଭି ରକ୍ଷତି ଶିରୋ ଅନ୍ନମଥୋ ମନଃ ॥
( ଅଥର୍ବ ୧୦,୨,୨୭)

ଅର୍ଥ—ଯେଉଁ ଶମୀ ଗଛ ଉପରେ ଅଶ୍ୱତ୍ଥ ଗଛ ଉଠିଥିବ, ତାହାର ଚେରକୁ ଗର୍ଭାଧାନ ଦିନଠାରୁ ଦୁଇ ତିନି ମାସ ପର୍ଯ୍ୟନ୍ତ ସ୍ତ୍ରୀ ଧାରଣ କଲେ ପୁତ୍ର ପ୍ରାପ୍ତି ହୁଏ । ସ୍ତ୍ରୀଠାରେ ଯେଉଁ ବୀର୍ଯ୍ୟ ନିକ୍ଷେପ କରାଯାଏ, ସେଥିରୁ ପୁଂସତ୍ୱ ପ୍ରାପ୍ତ ହୁଏ, ଏହି କଥା ପ୍ରଜାପତି ପରମାତ୍ମା ଉପଦେଶ ଦେଇଛନ୍ତି ।

ଜ୍ଞାନର କେନ୍ଦ୍ର ଅଟେ ଶିର । ଏହି ସୁରକ୍ଷିତ କୋଷକୁ ପ୍ରାଣ, ମନ ଓ ଅନ୍ନ ରକ୍ଷା କରନ୍ତି । ସନ୍ତାନର ଶିରରୂପୀ ଜ୍ଞାନକୋଷର ବୃଦ୍ଧି

ସମୟରେ ଗର୍ଭିଣୀ ସ୍ତ୍ରୀ ଉତ୍ତମ ଚିନ୍ତା ଓ କର୍ମରେ ନିଯୋଜିତ ରହିବା ଆବଶ୍ୟକ ।

ଜାତକର୍ମ ସଂସ୍କାର—

ଗର୍ଭସ୍ଥିତିର ଦଶ ମାସ ପରେ ଗର୍ଭସ୍ଥ ସନ୍ତାନ ଭୂମିଷ୍ଠ ହୁଏ । ବେଦରେ ଅଛି –

ଯଥା ବାତଃ ପୁଷ୍କରିଣୀଂ ସମିଂଗୟତି ସର୍ବତଃ ।
ଏବା ତେ ଗର୍ଭ ଏଜତୁ ନିରୈତୁ ଦଶମାସ୍ୟଃ ॥

ଯଥା ବାତୋ ଯଥା ବନଂ ଯଥା ସମୁଦ୍ର ଏଜତି ।
ଏବା ତ୍ୱଂ ଦଶମାସ୍ୟ ସହାବେହି ଜରାୟୁଣା ॥

ଦଶଂ ମାସାଞ୍ଛଶୟାନଃ କୁମାରୋ ଅଧି ମାତରି ।
ନିରୈତୁ ଜୀବୋ ଅକ୍ଷତୋ ଜୀବୋ ଜୀବନ୍ତ୍ୟା ଅଧି ॥ (ଋକ୍ ୫,୭,୭-୯)
ଇମଂ ସ୍ତନମୂର୍ଜସ୍ୱନ୍ତଂ ଧୟାପାଂ ପ୍ରପୀନମଗ୍ନେ ଶରିରସ୍ୟ ମଧ୍ୟେ ।
ଉତ୍ସଂ ଜୁଷସ୍ୱ ମଧୁମନ୍ତମର୍ବନ୍ତ୍ସମୁଦ୍ରିୟଂ ସଦନମାବିଶସ୍ୱ ॥ (ଯଜୁ ୧୭,୮୭)

ଯସ୍ତେ ସ୍ତନଃ ଶଶୟୋ ଯୋ ମୟୋଭୂର୍ୟେନ ବିଶ୍ୱା ପୁଷ୍ୟସି ବାର୍ଯାଣି ।
ଯୋ ରତ୍ନଧା ବସୁବିଦ୍ୟଃ ସୁଦତ୍ରଃ ସରସ୍ୱତି ତମିହ ଧାତବେ କଃ ॥
( ଋକ୍ ୧,୧୬୪,୪୯ )

ଅର୍ଥ — ଯେଉଁପରି ପବନ ଦ୍ୱାରା ପୁଷ୍କରିଣୀର ଜଳରେ ମୃଦୁ ତରଙ୍ଗ ସୃଷ୍ଟି ହୁଏ, ସେହିପରି ଦଶ ମାସ ପରେ, ହେ ନାରୀ, ତୋର ଗର୍ଭ କମ୍ପନ ହେଉ ଓ ସେଥିରୁ ସନ୍ତାନ ଜନ୍ମଲାଭ କରୁ । ହେ ବାଳକ, ତୁ ଜରାୟୁ ସହ ଆସ । ଜୀବିତ ମାତାର ଗର୍ଭରୁ, ହେ ଜୀବିତ ବାଳକ, ଦଶ ମାସ ପରେ ତୁ ଅକ୍ଷତ ଭାବରେ ବହିର୍ଗତ ହୁଅ । ହେ ଅଗ୍ନି ତୁଲ୍ୟ ବାଳକ, ଭୂମିଷ୍ଠ ହୋଇ ତୁ ସମ୍ବନ୍ଧୀମାନଙ୍କ ମଧ୍ୟକୁ ଆସ । ସ୍ୱାଦିଷ୍ଟ, ଗତିଶୀଳ ତଥା ସମୁଦ୍ର ସମାନ ସ୍ତନକୁ ସେବନ କର । ହେ ଜ୍ଞାନବତୀ ପ୍ରସୂତା ! ଦୁଗ୍ଧରୂପ ନୀରର ଧାରଣସ୍ଥଳ, ସୁଖ ଓ ଶୋଭାର ସ୍ଥଳ ଓ ବାଳକର ଶରୀର ପୋଷକ ସେହି ସ୍ତନକୁ ବାଳକର ମୁହଁରେ ଦିଅ ।

ସୃଷ୍ଟିର ଆଦିଜ୍ଞାନରେ ସମସ୍ତ ପ୍ରାୟୋଗିକ ଜ୍ଞାନର ସୂଚନା ରହିଛି । ପ୍ରଥମ ଅମୈଥୁନୀ ସୃଷ୍ଟିର ମନୁଷ୍ୟ ଏଥିରୁ ଜ୍ଞାନାହରଣ କରି କର୍ତ୍ତବ୍ୟ କର୍ମରେ ନିୟୋଜିତ ହୁଅନ୍ତି ।

ନାମକରଣ ସଂସ୍କାର—

ଜନ୍ମର ଏଗାର ବା ଶହେ ଏକୋଇଶ ଦିନ ଅଥବା ଦ୍ୱିତୀୟ ବର୍ଷାରମ୍ଭର ପ୍ରଥମ ଦିବସରେ ବାଳକର ନାମକରଣ ସଂସ୍କାର ହୁଏ । ଉତ୍ତମ ଓ ଶୁଦ୍ଧ ନାମ ଶରୀର ମନସ୍ତାତ୍ତ୍ୱିକ ପ୍ରଭାବ ପକାଏ । ବେଦରେ ଅଛି —

କୋଽସି କତମୋଽସି କସ୍ୟାସି କୋ ନାମାସି ।
ଯସ୍ୟ ତେ ନାମାମନ୍ମହି ଯଂ ତ୍ୱା ସୋମେନାତୀତୃପାମ ।
ଭୂର୍ଭୁବଃ ସ୍ୱଃ ସୁପ୍ରଜାଃ ପ୍ରଜାଭିଃ ସ୍ୟା ସୁବୀରୋ ବୀରୈଃ ସୁପୋଷଃ ପୋଷୈଃ ।
( ଯଜୁ ୭,୨୯ )

ଅର୍ଥ — ହେ ବାଳକ, ତୁ କିଏ, ତୋର ନାମ କ'ଣ ? ତୁ ଉତ୍ତମନାମଯୁକ୍ତ ହୁଅ । ପୃଥିବୀଠାରୁ ଅନ୍ତରୀକ୍ଷ ଓ ଦ୍ୟୌ ପର୍ଯ୍ୟନ୍ତ ପ୍ରଜା ଓ ପୋଷଣ କରି ବଢ଼ ।

ନିଷ୍କ୍ରମଣ ସଂସ୍କାର—

ସୁସ୍ଥ ବାଳକକୁ ଏଣିକି ଶୁଦ୍ଧ ବାୟୁ ସ୍ଥଳରେ ଭ୍ରମଣ କରାଇବାକୁ ହେବ । ଏହା ନିଷ୍କ୍ରମଣ ସଂସ୍କାର । ଜନ୍ମ ପରେ ତୃତୀୟ ଶୁକ୍ଳପକ୍ଷର ତୃତୀୟା, କୌଣସି ଆନନ୍ଦ ଦିବସ ବା ଅତ୍ୟଧିକରେ ଚତୁର୍ଥମାସ ବେଳକୁ ଏହି ସଂସ୍କାର କରାଯାଏ । ବେଦରେ ଅଛି—

ଶିବେ ତେ ସ୍ତାଂ ଦ୍ୟାବାପୃଥିବୀ ଅସନ୍ତାପେ ଅଭିଶ୍ରିୟୌ ।
ଶଂ ତେ ସୂର୍ଯ୍ୟ ଆ ତପତୁ ଶଂ ବାତୋ ବାତୁ ତେ ହୃଦେ ।
ଶିବା ଅଭି କ୍ଷରନ୍ତୁ ତ୍ୱାପୋ ଦିବ୍ୟାଃ ପୟସ୍ୱତୀଃ ॥
ଶିବାସ୍ତେ ସନ୍ତ୍ୱୋଷଧୟ ଉତତ୍ୱାହାର୍ଷମଧରସ୍ୟା ଉତ୍ତରାଂ ପୃଥିବୀମଭି ।
ତତ୍ର ତ୍ୱାଦିତ୍ୟୌ ରକ୍ଷତାଂ ସୂର୍ଯ୍ୟାଚନ୍ଦ୍ରମସାବୁଭା ॥
( ଅଥର୍ବ ୮,୨,୧୪ ଓ ୧୫ )

**ଅର୍ଥ**—ହେ ବାଳକ, ତୋ ଲାଗି ଦେବୀ ଓ ପୃଥିବୀଲୋକ ସୁଖଦା, କଲ୍ୟାଣକାରୀ ହୁଅନ୍ତୁ । ସୂର୍ଯ୍ୟ ତୋଠାରେ ପ୍ରକାଶ ଦାନ କରନ୍ତୁ, ବାୟୁ ତୋ ହୃଦୟରେ ଶାନ୍ତି ପ୍ରଦାନ କରନ୍ତୁ, ଜଳ ତୋ ଲାଗି ସ୍ୱାଦୁଯୁକ୍ତ ହେଉ । ଗୃହ ମଧ୍ୟରୁ ଜୀବନରେ ପ୍ରଥମ ଥର ପାଇଁ ତୋତେ ବାହାରକୁ ଆଣିଛୁ । ଏଣୁ ଔଷଧି ତୋ ଲାଗି କଲ୍ୟାଣକାରୀ ହୁଅନ୍ତୁ ଓ ସୂର୍ଯ୍ୟ ଚନ୍ଦ୍ର ତୋହର ରକ୍ଷା କରନ୍ତୁ ।

**ଅନ୍ନପ୍ରାଶନ ସଂସ୍କାର—**

ଶିଶୁକୁ ଛଅ ମାସ ହେବା ପରେ ଅନ୍ନପ୍ରାଶନ ସଂସ୍କାର ହୁଏ । ଏହି ସମୟଠାରୁ ସ୍ୱାସ୍ଥ୍ୟପ୍ରଦ ଭୋଜନ ପାଇଁ ଶିଶୁଠାରେ ଅଭ୍ୟାସ ଶିକ୍ଷା ଦିଆଯାଏ, ଅଖାଦ୍ୟକୁ ପରିହାର କରିବା ପାଇଁ ସଂସ୍କାର ଦିଆଯାଏ—

**ଅନ୍ନପତେଽନ୍ନସ୍ୟ** ନୋ ଦେହ୍ୟନମୀବସ୍ୟ ଶୁଷ୍ମିଣଃ ।
**ପ୍ର** ପ୍ର ଦାତାରଂ ତାରିଷ ଊର୍ଜଂ ନୋ ଧେହି ଦ୍ୱିପଦେ ଚତୁଷ୍ପଦେ ॥
( ଯଜୁ ୧୧,୮୩ )

**ଅର୍ଥ**—ହେ ଅନ୍ନପତି ସ୍ୱାମୀନ୍ ! ଅସ୍ମମାନଙ୍କ ପାଇଁ ଓ ଅସ୍ମମାନଙ୍କ ପାଳିତ ପଶୁମାନଙ୍କ ପାଇଁ ରୋଗରହିତ ଓ ବଳକାରକ ଅନ୍ନକୁ ପ୍ରଦାନ କରନ୍ତୁ ଓ ତାହାର ବର୍ଦ୍ଧନ କରନ୍ତୁ ।

ଚୂଡ଼ାକର୍ମ ଓ କର୍ଣ୍ଣବେଧ ସଂସ୍କାର—

ତିନି ବର୍ଷ ପରେ ଉତ୍ତରାୟଣ ଶୁକ୍ଲପକ୍ଷ ବେଳେ ଶିଶୁର ଅସଂସ୍କୃତ କେଶକୁ ବାହାର କରି ଦିଆଯାଏ । ତିନି ବର୍ଷ ପୂର୍ବରୁ ଅସ୍ଥି ସନ୍ଧି ଦୃଢ଼ ହୋଇ ନଥାଏ । ଏହା ପରେ କର୍ଣ୍ଣବେଧ ସଂସ୍କାର । କର୍ଣ୍ଣବେଧ ଯୋଗୁଁ ଅନ୍ତ୍ରବୃଦ୍ଧି ଆଦି ରୋଗ ପ୍ରବେଶ କରେ ନାହିଁ । ଚୂଡ଼ାକର୍ମ ଓ କର୍ଣ୍ଣବେଧ ସଂସ୍କାର ଶିଶୁ ଉପରେ ସ୍ୱାସ୍ଥ୍ୟରକ୍ଷାର ପ୍ରଭାବ ବିସ୍ତାର କରିଏ ।

ଉପନୟନ ସଂସ୍କାର—

ଏହା ପରେ ଆଠ, ଏଗାର ଓ ବାର ବର୍ଷ ବୟସରେ ଯଥାକ୍ରମେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟର ବାଳକଙ୍କୁ ଉପନୟନ ସଂସ୍କାର କରାଯାଏ । ଜୀବନର ବିଭିନ୍ନ କ୍ଷେତ୍ରରେ ସଦାଚରଣ ପାଇଁ ବାଳକ ଏଠାରେ 'ବ୍ରତ' ନିଏ । ଏତେବେଳେ ଆଚାର୍ଯ୍ୟଙ୍କ ପାଖକୁ (ଉପ) ବାଳକକୁ ନିଆଯାଏ (ନୟନ)—

ଆଚାର୍ଯ୍ୟ ଉପନୟମାନୋ ବ୍ରହ୍ମଚାରିଣଂ କୃଣୁତେ ଗର୍ଭମନ୍ତଃ ।
ତଂ ରାତ୍ରୀସ୍ତିସ୍ର ଉଦରେ ବିଭର୍ତ୍ତି ତଂ ଜାତଂ ଦ୍ରଷ୍ଟୁମଭି ସଂ ଯନ୍ତି ଦେବାଃ ॥
( ଅଥର୍ବ ୧୧,୫,୩ )

ଅର୍ଥ— ଆଚାର୍ଯ୍ୟ ଆସିଥିବା ବ୍ରହ୍ମଚାରୀଙ୍କୁ ତିନି ଦିନ ପର୍ଯ୍ୟନ୍ତ ଗର୍ଭଧାରଣ ପରି ରଖିବେ । ଲୋକେ ଏହି ନବୀନ ବ୍ରହ୍ମଚାରୀଙ୍କୁ ଦେଖିବା ପାଇଁ ଆସିବେ ।

ବେଦାରମ୍ଭ ସଂସ୍କାର—

ଉପନୟନ ସଂସ୍କାର ଦବସଠାରୁ ବା ଅସୁବିଧା ହେଲେ ଏହି ସଂସ୍କାରର ଏକ ବର୍ଷ ମଧ୍ୟରେ ଗୁରୁକୁଳରେ ଶିକ୍ଷାରମ୍ଭ ହୁଏ । ଏହା ବେଦାରମ୍ଭ ସଂସ୍କାର । ଉପନୟନ ସଂସ୍କାର ବେଳେ ଗୁରୁକୁଳକୁ ଯାଇଥିବା ବାଳକ ଏଣିକି ଉଚିତ ରୀତରେ ପାଠପଢା ଆରମ୍ଭ କରେ ।

ଇମାଂ ଭୂମିଂ ପୃଥିବୀଂ ବ୍ରହ୍ମଚାରୀ ଭିକ୍ଷାମା ଜଭାର ପ୍ରଥମୋ ଦବଂ ଚ ।
ତେ କୃତ୍ୱା ସମିଧାବୁପାସ୍ତେ ତଯୋରାର୍ପିତା ଭୁବନାନି ସର୍ବା ॥
( ଅଥର୍ବ ୧୧,୫,୯ )

ଅର୍ଥ— ବ୍ରହ୍ମଚାରୀ ଭୂଲୋକ ଓ ଦ୍ୟୁଲୋକର ଭିକ୍ଷା ପ୍ରାପ୍ତ କରନ୍ତି । ଏହି ଦୁଇ ଲୋକକୁ ଦୁଇ ସମିଧା ରୂପେ ନେଇ ଉପାସନା କରନ୍ତି ଯେହେତୁ ଏହି ଦୁଇ ଲୋକ ମଧ୍ୟରେ ସମସ୍ତ ଭୁବନ ଅବସ୍ଥିତ † । ପୃଥିବୀଠାରୁ ଦେବୀ ପର୍ଯ୍ୟନ୍ତ ସକଳ ବସ୍ତୁ ଓ ଶକ୍ତିର ଅଧ୍ୟୟନ ପାଇଁ ବ୍ରହ୍ମଚାରୀଙ୍କୁ ଉପଦେଶ ଦିଆ ଯାଇଛି ।

ବ୍ରହ୍ମଚର୍ଯ୍ୟବ୍ରତ, ସାଙ୍ଗୋପାଙ୍ଗ ବେଦବିଦ୍ୟା ବା ସକଳ ଜ୍ଞାନବିଜ୍ଞାନକୁ ପ୍ରାପ୍ତ କରି ନିୟମିତ କାଳ ପରେ ବ୍ରହ୍ମଚାରୀ ଗୁରୁକୁଳାଶ୍ରମ ତ୍ୟାଗ କରନ୍ତି । ଏହା ସମାବର୍ତ୍ତନ ସଂସ୍କାର । ପୂର୍ବବର୍ତ୍ତୀ ସମସ୍ତ ସଂସ୍କାରକୁ

† ପ୍ରାର୍ଥନା ଛଳରେ ଶିକ୍ଷା ଦାନ କରିବା ବେଦର ଶୈଳୀ ଅଟେ ।

ଭଳି ଆଜିକାଲି ବ୍ରାହ୍ମଣମାନେ ଉପନୟନ ସଂସ୍କାରକୁ 'ବ୍ରତୋତ୍ସବ' ନାମରେ ଯେପରି ଏକଲାଗେ ଘଡ଼ିରେ ପାଳନ କରନ୍ତି, ସେହିପରି ଆଜିକାଲି ବିଶ୍ୱବିଦ୍ୟାଳୟମାନଙ୍କରେ ଛାତ୍ରାଛାତ୍ରୀଙ୍କୁ 'ସ୍ନାତକ' ଓ ଉପାଧିଦାନୋତ୍ସବକୁ 'ସମାବର୍ତ୍ତନ ଉତ୍ସବ' ନାମରେ ଉତ୍ସବ ମାତ୍ର କରାଯାଉଛି । ବୈଦିକ ସଂସ୍କାର ଜୀବନର ପ୍ରତ୍ୟେକ ଅବସ୍ଥାରେ ମନୁଷ୍ୟର ଶରୀର, ମନ ଓ ଆତ୍ମା ଉପରେ ଗଭୀର ପ୍ରଭାବ ପକାଇଥାଏ । ଏହା ବାହ୍ୟାଡ଼ମ୍ବର ନୁହେଁ ।

ସମାବର୍ତ୍ତନ ସଂସ୍କାର ପରେ ବିବାହ ଓ ଗୃହସ୍ଥାଶ୍ରମ ସଂସ୍କାର । ଏ ସବୁର କିଞ୍ଚିତ୍ ଆଲୋଚନା ହୋଇ ସାରିଛି । ଗୃହସ୍ଥାଶ୍ରମ ସଂସ୍କାର ପରେ ପରଲୋକ ସହ ସଂଶ୍ଳିଷ୍ଟ ତିନୋଟି ସଂସ୍କାର—ବାନପ୍ରସ୍ଥ, ସନ୍ନ୍ୟାସ ଓ ଅନ୍ତ୍ୟେଷ୍ଟି । ବେଦର ଉପଦେଶ ହେଉଛି—

ଯେନା ସହସ୍ରଂ ବହସି ଯେନାଗ୍ନେ ସର୍ବବେଦସମ୍ ।
ତେନେମଂ ଯଜ୍ଞଂ ନୋ ବହ ସ୍ୱର୍ଦ୍ଦେବେଷୁ ଗନ୍ତବେ ॥ (ଅଥର୍ବ ୯,୫,୧୭)

ଅର୍ଥ—ହେ ଅଗ୍ନିରୂପୀ ପରମେଶ୍ୱର, ସହସ୍ର ସହସ୍ର ମନୁଷ୍ୟ ଯେଉଁ ଗୃହସ୍ଥାଶ୍ରମକୁ ଧାରଣ କରିଛନ୍ତି, ତାହାକୁ ତ୍ୟାଗକରି ଆମ୍ଭେମାନେ ବେଦରେ ପ୍ରବେଶ କରିବା ପାଇଁ ପ୍ରସ୍ତୁତ ହେଉଛୁ । ଏହାହିଁ ବାନପ୍ରସ୍ଥ ଓ ସନ୍ନ୍ୟାସ ସଂସ୍କାର । ଗୃହସ୍ଥାଶ୍ରମର ଲୌକିକ ସଂସ୍କାରମାନଙ୍କଠାରୁ ଅଗକୁ ଯାଇ, ଏତେବେଳେ ପରମାତ୍ମାଙ୍କ ସାନ୍ନିଧ୍ୟରେ ଆସିବା ପାଇଁ ଉତ୍କଟ ଅଭିଳାଷା ଓ ତଦନୁରୂପ ସଂସ୍କାରମାନ ଅଭ୍ୟାସ କରାଯାଏ । ଏହା ପରେ ଅନ୍ତ୍ୟେଷ୍ଟି ସଂସ୍କାର—

ସୂର୍ଯ୍ୟଂ ଚକ୍ଷୁର୍ଗଚ୍ଛତୁ ବାତମାତ୍ମା ଦ୍ୟାଂ ଚ ଗଚ୍ଛ ପୃଥିବୀଂ ଚ ଧର୍ମଣା ।
ଅପୋ ବା ଗଚ୍ଛ ଯଦି ତତ୍ର ତେ ହିତମୋଷଧୀଷୁ ପ୍ରତି ତିଷ୍ଠା ଶରୀରୈଃ ॥
( ଋକ୍ ୧୦,୧୬,୩ )

ଅର୍ଥ—ଚକ୍ଷୁଶକ୍ତି ସୂର୍ଯ୍ୟଙ୍କୁ ଯାଉ, ପ୍ରାଣଶକ୍ତି ବାୟୁରେ ମିଶୁ, ପୃଥିବୀର ଅଂଶ ପୃଥିବୀରେ—ଜଳର ଅଂଶ ଜଳରେ ଓ ଔଷଧିର ଅଂଶ ଔଷଧିରେ ମିଶୁ ।

ଉପରୋକ୍ତ ଗର୍ଭାଧାନ ସଂସ୍କାରଠାରୁ ସନ୍ନ୍ୟାସ ସଂସ୍କାରଯାଏ ପନ୍ଦର ସଂସ୍କାରରେ ସୁସଂସ୍କୃତ ମନୁଷ୍ୟ, ଜୀବନର ଶେଷମୁହୂର୍ତ୍ତକୁ ଜାଣି ପାରେ । ଏତେବେଳେ ସେ ମନ୍ତ୍ରୋଚ୍ଚାରଣପୂର୍ବକ ଭଗବତ୍ ଚିନ୍ତା କଲାବେଳେ ଶରୀରର ସମସ୍ତ ଶକ୍ତି ସୃଷ୍ଟିର ତଦନୁରୂପ ଶକ୍ତିମାନଙ୍କ ସହ ମିଶିଯିବା ପାଇଁ ପ୍ରାର୍ଥନା କରେ । କି ଉତ୍କଟ ନିଃସ୍ୱାର୍ଥ ଭାବନା ! ଏଠାରେ ଜୀବନର ଶେଷ ସଂସ୍କାର 'ଅନ୍ତ୍ୟେଷ୍ଟି ସଂସ୍କାର' ସମାପ୍ତ ହୁଏ ।

## ବିଜ୍ଞାନ, ମନୋବିଜ୍ଞାନ

ଯନ୍ମନ୍ୟୁର୍ଜାୟାମାବହତ୍ ସଂକଲ୍ପସ୍ୟ ଗୃହାଦଧି ।
କ ଆସଂ ଜନ୍ୟାଃ କେ ବରାଃ କ ଉ ଜ୍ୟେଷ୍ଠବରୋଽଭବତ୍ ॥
( ଅଥର୍ବ ୧୧,୮,୧ )

ତପଶ୍ଚୈବାସ୍ତାଂ କର୍ମ ଚାନ୍ତର୍ମହତ୍ୟର୍ଣ୍ଣବେ ।
ତ ଆସଂ ଜନ୍ୟାସ୍ତେ ବରା ବ୍ରହ୍ମ ଜ୍ୟେଷ୍ଠବରୋଽଭବତ୍ ॥
( ଅଥର୍ବ ୧୧,୮,୨ )

ଅର୍ଥ — ଯେତେବେଳେ ସର୍ବଜ୍ଞ ପରମାତ୍ମା ସଙ୍କଳ୍ପର ଗୃହରୁ ଜାୟା ବା ପତ୍ନୀଙ୍କୁ ଆବାହନ କଲେ, ସେତେବେଳେ କେଉଁମାନେ କନ୍ୟା ଓ ବରପକ୍ଷୀୟ ବନ୍ଧୁଜନ ହେଲେ ? କିଏ କେୟ୍ୟୁବର ବା ଦୁଲ୍‌ହା ହେଲେ ?

ପ୍ରଳୟ-କାଳୀନ କାରଣମୟ ଜଗତରୂପୀ ସମୁଦ୍ର ମଧ୍ୟରେ ତପ ଓ କର୍ମ ଏହି ଦୁଇ ଥିଲେ । ଅର୍ଥାତ୍ ତପ ବା ଜଗତ ନିର୍ମାଣ ପାଇଁ ପରମାତ୍ମାଙ୍କ ପର୍ଯ୍ୟାଲୋଚନ – ବଚ୍ଚୁର ଓ ଈକ୍ଷଣଶକ୍ତି ଥିଲା । ପୁନଶ୍ଚ କର୍ମ ବା ପୂର୍ବକଳ୍ପର ପ୍ରାଣୀମାନଙ୍କ ପୁଣ୍ୟାପୁଣ୍ୟାତ୍ମକ ସୁଖଦୁଃଖ ଫଳୋନ୍ମୁଖ କର୍ମ ମଧ୍ୟ ଥିଲା । ଏହି ଦୁହେଁ ତପ-କର୍ମ କନ୍ୟା ଓ ବରପକ୍ଷୀୟ ବନ୍ଧୁଜନ ହେଲେ । ପରମାତ୍ମା କେୟ୍ୟୁବର ବା ଦୁଲ୍‌ହା ହେଲେ ।

ଉଦ୍ଧୃତ ବାକ୍ୟରେ ଦ୍ୱାରା ଏଠାରେ ସୃଷ୍ଟିବିଜ୍ଞାନ ଆଲୋଚିତ ହୋଇଛି । ପ୍ରଳୟ ପରେ ସୃଷ୍ଟିର ଉତ୍ପତ୍ତି ପାଇଁ ପରମାତ୍ମାଙ୍କ ସହ ପ୍ରକୃତିର ବିବାହ ହୁଏ । ଉତ୍ପତ୍ତି ପାଇଁ ବିବାହ ଆବଶ୍ୟକ । ଉତ୍ପନ୍ନ ଯାହାଠାରୁ ହୁଏ ସେ 'ଜାୟା'— ଜାୟତେ ଅସ୍ୟାମ୍ । ପତ୍ନୀ ସନ୍ତାନୋତ୍ପନ୍ନ କରୁଥିବା ହେତୁ ସେ ଜାୟା । ସୃଷ୍ଟିର ଉପାଦାନ-କାରଣ ପ୍ରକୃତି ନିମିତ୍ତ-କାରଣ ପରମାତ୍ମାଙ୍କ ଜାୟା । ପ୍ରଳୟାନନ୍ତର ସର୍ବବ୍ୟାପକ ପରମାତ୍ମାଙ୍କଠାରେ ସୃଷ୍ଟି ରଚନା ପାଇଁ ସଂକଳ୍ପ ଜାତ ହୁଏ । ଏହି ସଂକଳ୍ପହିଁ ପ୍ରକୃତି-ଜାୟାର ଗୃହ । ଏହି ଜାୟାକୁ ସଂକଳ୍ପ-ଗୃହରୁ ପରମାତ୍ମା ସୃଷ୍ଟ୍ୟାରମ୍ଭରେ ଆବାହନ କରନ୍ତି । ପ୍ରଳୟାବସ୍ଥାରେ ପ୍ରକୃତି 'କାରଣାବସ୍ଥା'ରେ ଥାଏ, ଶାନ୍ତ ଥାଏ । ପରମ ଦେବଙ୍କ ସଂକଳ୍ପ ମାତ୍ରେ,

ମୃଦୁ ମୂର୍ଣ୍ଣ ମାନେ ପ୍ରକୃତ ଦେବତାରେ କମ୍ପନ ସୃଷ୍ଟି ହୁଏ—ଆନ୍ଦୋଳନ ଜାତ ହୁଏ । କାରଣାବସ୍ଥାରୁ କାର୍ଯ୍ୟାବସ୍ଥାର ଆରମ୍ଭ ହୁଏ । ପ୍ରଳୀନ ପ୍ରକୃତରେ ଜାଗୃତ୍ତି ଅଙ୍କୁର ଉଠେ— ସୃଷ୍ଟ୍ୟୁପ୍ରୃତ୍ତି ଆରମ୍ଭ ହୁଏ ।

ସୃଷ୍ଟ୍ୟୁପୃତ୍ତି ପୂର୍ବରୁ ପରମାତ୍ମା ଓ ପ୍ରକୃତିଙ୍କ ବିବାହ ବେଳେ କନ୍ୟା ଓ ବରପକ୍ଷୀୟ ଯେଉଁ ବନ୍ଧୁଜନ ଉପସ୍ଥିତ ଥାଆନ୍ତି, ସେମାନେ ହେଉଛନ୍ତି 'ତପ' ଓ 'କର୍ମ' । ସୃଷ୍ଟି ରଚନାର ପ୍ରତ୍ୟେକ କାର୍ଯ୍ୟରେ ଯେଉଁ ଅଭ୍ରାନ୍ତ ବୈଜ୍ଞାନିକତା ବିଦ୍ୟମାନ ତାହା ପରମାତ୍ମାଙ୍କ ଈଶ୍ୱରଶକ୍ତି-ଈକ୍ଷଣଶକ୍ତି ବା ତପଶକ୍ତି † ରୁ ସମ୍ଭବ । ଏହି ତପ ଉପର୍ଯ୍ୟୁକ୍ତ ବିବାହ ବେଳେ ଉପସ୍ଥିତ ଥାଏ । ପୁନଶ୍ଚ ପୂର୍ବ କଳ୍ପରେ ଜୀବମାନେ କରିଥିବା 'କର୍ମ'ର ପ୍ରଯୁକ୍ତ ରୂପ ମଧ୍ୟ ଉପସ୍ଥିତ ଥାଏ । ଏହି କର୍ମମାନଙ୍କ ଉପରେ ଆଧାର କରି ଜୀବଙ୍କୁ ଆଗାମୀ ସୃଷ୍ଟିରେ ଉଚିତ ଉଚିତ ଯୋନି ମିଳେ । ବିବାହ ସମୟରେ କନ୍ୟା ଓ ବରପକ୍ଷୀୟ ବନ୍ଧୁଜନଙ୍କ ଉପସ୍ଥିତ ଆବଶ୍ୟକୀୟ । ପରମାତ୍ମାଙ୍କ 'ତପ' ଓ ପୂର୍ବ କଳ୍ପରେ ଜୀବଙ୍କ 'କର୍ମ' ଏହି ଆବଶ୍ୟକତା ପୂରଣ କରନ୍ତି ।

ତିରଶ୍ଚୀନୋ ବିତତୋ ରଶ୍ମିରେଷାମଧଃ ସ୍ୱିଦାସୀଦୁପରି ସ୍ୱିଦାସୀତ୍ ।
ରେତୋଧା ଆସନ୍ମହିମାନ ଆସନ୍ତ୍ ସ୍ୱଧା ଅବସ୍ତାତ୍ ପ୍ରଯୃତିଃ ପରସ୍ତାତ୍ ॥
( ଋକ୍ ୧୦,୧୨୯,୫ )

---

† ଯଃ ସର୍ବଜ୍ଞଃ ସର୍ବବିତ୍ ଯସ୍ୟ ଜ୍ଞାନମୟଂ ତପଃ ।
( ମୁଣ୍ଡକୋପନିଷଦ୍ ୧,୧,୯ )

ଅର୍ଥ – ସୃଷ୍ଟି ରଚନା ପାଇଁ ପରମାତ୍ମାଙ୍କ ତପ ବା ସଂକଳ୍ପ ପରେ ପରେ ସୃଷ୍ଟି ପ୍ରକାଶର କିରଣମାଳା ଉଦ୍ଭାସିତ ହେଲା । ସୂର୍ଯ୍ୟାଦି 'ମହିମାନ' ବା ମହିମାଶାଳୀ ବସ୍ତୁ ଓ 'ରେତ' ଅର୍ଥାତ୍ କର୍ମଫଳ-ଭୋକ୍ତା ମନୁଷ୍ୟାଦି ଜୀବଗଣ ଉତ୍ପନ୍ନ ହେଲେ । ସୃଷ୍ଟ୍ୟୁତ୍ପତ୍ତି ବେଳେ କାରଣରୂପ ପ୍ରକୃତି ଓ କର୍ତ୍ତାରୂପ ପରମାତ୍ମା ଉଭୟଙ୍କ ଅସ୍ତିତ୍ୱ ଥିଲା ।

ରଶ୍ମିଭିର୍ନଭ ଅଭୃତଂ ମହେନ୍ଦ୍ର ଏତ୍ୟାବୃତଃ
ତସ୍ମିନ୍ନସ୍ୟମେ ନବ କୋଶା ବିଷ୍ଟମ୍ଭା ନବଧା ହିତାଃ ।
ଏତେ ଅସ୍ମିନ୍ ଦେବୋ ଏକବୃତୋ ଭବନ୍ତି । (ଅଥର୍ବ ୧୩,୪,୯-୧୩)

ଅର୍ଥ—ସୂର୍ଯ୍ୟ ପ୍ରକାଶମାନ ହୋଇ ଉଠିଲେ ନଭୋମଣ୍ଡଳ, ଆକାଶମଣ୍ଡଳ ଓ ନକ୍ଷତ୍ରମଣ୍ଡଳ କିରଣ ଦ୍ୱାରା ପୂର୍ଣ୍ଣ ହୋଇଯାଏ । ନଅଟି ଗ୍ରହ ସେମାନଙ୍କ କକ୍ଷାବୃତ୍ତରେ ଧାବିତ ହୋଇ ରହନ୍ତି । ସକଳ ଗ୍ରହ ସୂର୍ଯ୍ୟର ଆଶ୍ରୟ ନଅନ୍ତି † ।

ଏତା ଉ ତ୍ୟା ଉଷସଃ କେତୁମକ୍ରତ ପୂର୍ବେ ଅର୍ଦ୍ଧେ ଭାନୁମଂଜତେ ।
( ଋକ୍ ୧,୯୨,୧ )

---

† ଏହି ନଅଟି ଗ୍ରହ ମଧ୍ୟରୁ ଶେଷ ତିନୋଟି ୟୁରେନ୍ସ, ନେପ୍‌ଚ୍ୟୁନ୍ ଓ ଗୋଟିଏ ଅଜ୍ଞାତ ଗ୍ରହ ବୋଲି ଆଧୁନିକ ଜ୍ୟୋତିଷୀମାନେ ସ୍ଥିର କରିଛନ୍ତି । ଆଦିଜ୍ଞାନ ବେଦରେ ଏହି ତିନୋଟିକୁ ଅର୍ଯ୍ୟମନ୍, ବରୁଣ ଓ ଋତ ନାମରେ କୁହାଯାଇଛି । (ଦେଖ - ଋକ୍ ୧,୧୦୫,୬) ।

ଅର୍ଥ —ଉକ୍ତ କାରଣ ବିକୀର୍ଣ୍ଣ ହେଲେ ପୃଥିବୀ ଅଦ ଗୋଲଭୂର † ପୂର୍ବାର୍ଦ୍ଧ ବା ଦକ୍ଷିଣାର୍ଦ୍ଧରେ ଉଦୟ ହୁଏ ।

ଦ୍ୱାଦଶ ପ୍ରଧୟଶ୍ଚକ୍ରମେକଂ ତ୍ରୀଣି ନଭ୍ୟାନି କ ଉ ତଚ୍ଚିକେତ ।
ତସ୍ମିନ୍ ସାକଂ ତ୍ରିଶତା ନ ଶଙ୍କବୋଽର୍ପିତାଃ ଷଷ୍ଟିର୍ନ ଚଳାଚଳାସଃ ।।
( ଅଥର୍ବ ୧୦,୮,୪ )

ଅର୍ଥ—ଗୋଟିଏ ଚକ୍ର । ସେଥିରେ ତିନି ନାଭି ଅର୍ଥାତ୍ କେନ୍ଦ୍ର । ଏହି ତିନି କେନ୍ଦ୍ରରୁ ଗୋଟିଏ ପୃଥିବୀର ନିଜ କେନ୍ଦ୍ରରେ ଘୂରିବା, ଅନ୍ୟଟି ସୂର୍ଯ୍ୟକୁ କେନ୍ଦ୍ର କରି ଘୂରିବା ଓ ତୃତୀୟଟି ଧ୍ରୁବକୁ କେନ୍ଦ୍ର କରି ଘୂରିବା । ବାରୋଟି ପ୍ରଧି ବା ରାଶି । ନକ୍ଷତ୍ର-ଚକ୍ରର ଏହି ବାର ରାଶି ସତାଇଶ ନକ୍ଷତ୍ରପୁଞ୍ଜ ସହ ସମାନ * । ସମ୍ବତ୍ସରାତ୍ମକ କାଳ-ଚକ୍ରରେ ଏହି ବାର ରାଶି ବାର ମାସ ଅଛନ୍ତି । ପୁଣି ଏହି ଚକ୍ରରେ ତିନିଶହ ଷାଠିଏ ଶଙ୍କୁ (*Degree*) ।

---

† ଇଂରାଜୀ *Globe* ଶବ୍ଦ ଏହି ଗୋଲଭୂ ଶବ୍ଦର ରୂପାନ୍ତର ମାତ୍ର । ପୃଥିବୀ ଗୋଲାକାରର ଅତି ପ୍ରାଚୀନ ବେଦରୁ ଗୃହୀତ ହୋଇ ପରବର୍ତ୍ତୀ ମାନୁଷୀ ଶାସ୍ତ୍ରମାନଙ୍କରେ ଆଲୋଚିତ ହୋଇଛି । ଆର୍ଯ୍ୟଭଟ୍ଟୀୟ ଜ୍ୟୋତିଷ ଗ୍ରନ୍ଥର ( ୪,୫ ) ଶ୍ଳୋକ ଏହି ବେଦମନ୍ତ୍ରର ଅନୁକରଣ ମାତ୍ର ।

* ଦେଖ, ସୂର୍ଯ୍ୟସିଦ୍ଧାନ୍ତ ୧୨,୨୬ ।

ଏମୃସ୍ତଃତ୍ୱଂମି ଯଉଞସ୍ତଶ୍ଵେଯୀନ୍ଦ୍ରାବସ୍ତ୍ରତଵାଂଯୀଦ୍ଵଃସ୍ତଃଶାଂମି ... ।
ଉ...-ଯଚ୍ଚେ କଳ୍ପନ୍ତାମହୋତ୍ସବାସ୍ତେ କଳ୍ପନ୍ତାମର୍ଦ୍ଧମାସା... ।
ମାସସ୍ତେ କଳ୍ପନ୍ତାମୃତବସ୍ତେ କଳ୍ପନ୍ତାଂ ସମ୍ବତ୍ସରସ୍ତେ କ...
ପ୍ରେତ୍ୟା ଏତ୍ୟୈ ସଞ୍ଚାଞ୍ଚ ପ୍ର ଚ ସାରୟ ସୁପର୍ଣ୍ଣଚିଦସି ॥ (ଯଜୁ ... .୪୫)

ଅର୍ଥ— ତୁମେ ସମ୍ବତ୍ସର—ସାୟନବର୍ଷ । ତୁମେ ପରିବତ୍ସର— ସୌର-ବର୍ଷ, ଇଦାବତ୍ସର — ଗୃହବର୍ଷ, ଇଦ୍ୱତ୍ସର — ... ବତ୍ସର--- ନାକ୍ଷତ୍ରବର୍ଷ । ତୁମ ଦ୍ୱାରା 'ଉଷସଃ' ବ ... ଲଘୁ ଅଂଶ ସକଳ ଯଥା କ୍ଷଣ-ପଳାଦି ପୁଷ୍ଟ ହେଉ । ଅହୋରାତ୍ର ପୁଷ୍ଟ ହେଉ, ଅର୍ଦ୍ଧମାସ ପୁଷ୍ଟ ହେଉ, ମାସ ପୁଷ୍ଟ ହେଉ, ଋ... ବର୍ଷ ପୁଷ୍ଟ ହେଉ । ହେ କାଳାଗ୍ନି, ଜଗତ ...ଲୟ ଲାଗି ... ହୁଅ ଓ ଜଗତ ରଚନା ଲାଗି ପ୍ରସାରିତ ହୁଅ । 'ସୁପର୍ଣ୍ଣଚିତ ଅଗ୍ନି' – ତୁମେ ସମ୍ବତ୍ସର ବା ବର୍ଷର ଚୟନସଞ୍ଚୟ କର୍ମାଶୀଳ... । †।

ଦ୍ୱ ସୁପର୍ଣ୍ଣା ପାପତନ୍ତ୍ରଷ୍ଟୁଦ୍‌ଦୁଚ୍ଛୁନୋଭେ ସୃଜନ୍ ବଶ୍ୱେଦମି ।
ପ୍ର ଧନ୍ୱାନୈରତ ଶୁଭ୍ରଖାଦୟୋ ଯ୍ଦବଦଜଥ ସ୍ତ୍ରଭାନାଃ ॥ (ଋକ୍ ୮,୨୦,୪)

---

† ଦେଖ, ଶତପଥ ( ୧୨;୨;୩;୭ )ସମ୍ବତ୍ସର ବର୍ଷ ସୁପର୍ଣ୍ଣ ଅଟେ । ଏହାର ଏକ ପକ୍ଷ ବିଷୁବବୃତ୍ତର ପୂର୍ବ ହୁଅ ମାତ୍ର ଓ ଅପର ପକ୍ଷ ଅଗାମୀ ହୁଅ ମାତ୍ର । ବିଷୁବବୃତ୍ତ ଏହି ସୁପର୍ଣ୍ଣର ଶରୀର ଭାଗ । ମନ୍ତ୍ରରେ ସମ୍ବୋଧନ ରୂପରେ ସମସ୍ତ ତଥ୍ୟ ବର୍ଣ୍ଣିତ ହୋଇଛୁ । ପୂର୍ବରୁ କୁହାଯାଇଛୁ ଯେ ଏହା ବେଦର ମୌଳିକ ଶୈଳୀ ।

ଅର୍ଥ---ଯେତେବେଳେ ପୃଥିବୀ ଓ ଆକାଶ ମଧ୍ୟରେ ଆକର୍ଷଣ ଓ କମ୍ପନ ହୁଏ, ସେତେବେଳେ ଟୁଲେ ଟୁଲେ ନବନ ଦ୍ୱୀପ ଉତ୍ପନ୍ନ ଓ ନଷ୍ଟ ହୁଅନ୍ତି । ସମସ୍ତ ସ୍ଥାବର ନଷ୍ଟ ଯାନ୍ତି ।

ବେଦା ଯୋ ବୀନାଂ ପଦମନ୍ତରିକ୍ଷେଣ ପତତାମ୍ । ବେଦ ନାବଃ ସମୁଦ୍ରିୟଃ ॥ ( ଋକ୍ ୧,୨୫,୭ )

ଅର୍ଥ---ଯେ ପକ୍ଷୀ, ମେଘ ଆଦିଙ୍କ ସ୍ଥାନ ଓ ଗତି ନିର୍ଣ୍ଣୟ କରି ପାରେ, ସେ ଆକାଶର ବିମାନ ଓ ସମୁଦ୍ରର ନାବକୁ ଜାଣି ପାରେ ।

ଯୋ ଅକନ୍ଦୟତ୍ ସଲିଲଂ ମହିତ୍ୱା ଯୋନିଂ କୃତ୍ୱା ତ୍ରିଭୁଜଂ ଶୟାନଃ ।
ବତ୍ସଃ କାମଦୁଘୋ ବିରାଜଃ ସ ଗୁହା ଚକ୍ରେ ତନ୍ୱଃ ପରାଚୈଃ ॥
( ଅଥର୍ବ ୮,୯,୨ )

ଅର୍ଥ---ଜଳର ସମତାକୁ ଭୂମି ରୂପେ ନେଇ ତ୍ରିଭୁଜ ଅଙ୍କନ କର । ତାହାର ମଧ୍ୟରେ ବତ୍ସରୂପ କ୍ଷେତ୍ରଫଳ ଉପଲବ୍ଧ ।

ଇମା ମେ ଅଗ୍ନ ଇଷ୍ଟକା ଧେନବଃ ସନ୍ତ୍ୱେକା ଚ ଦଶ ଚ, ଦଶ ଚ ଶତଂ ଚ, ଶତଂ ଚ ସହସ୍ରଂ ଚ, ସହସ୍ରଂ ଚାୟୁତଂ ଚାୟୁତଂ ଚ ନିୟୁତଂ ଚ, ନିୟୁତଂ ଚ ପ୍ରୟୁତଂ ଚାର୍ବୁଦଂ ଚ ନ୍ୟର୍ବୁଦଂ ଚ ସମୁଦ୍ରଶ୍ଚ ମଧ୍ୟଂ ଚାନ୍ତଶ୍ଚ ପରାର୍ଦ୍ଧଶ୍ଚୈତା ମେ ଅଗ୍ନ ଇଷ୍ଟକା ଧେନବଃ ସନ୍ତ୍ୱମୁତ୍ରାମୁଷ୍ମିଁଲ୍ଲୋକେ ।
( ଯଜୁ ୧୭,୨ )

ଯଜ୍ଞକୁଣ୍ଡର ଇଷ୍ଟକ (ଇଟା) ରୂପରେ ଏଠାରେ ଏକଠାରୁ ପରାର୍ଦ୍ଧ ପର୍ଯ୍ୟନ୍ତ ସଂଖ୍ୟାକୁ ବଖାଇ ଦିଆଯାଇଛି । ଏହିରୂପେ ଅଥର୍ବ (୧୩,୪,୧୬-୧୮), (୫,୧୫,୧-୧୧), ଯଜୁ (୧୮,୨୪ ଓ ୨୫), ଅଥର୍ବ (୧୯,୪୭,୩-୫) ମନ୍ତ୍ରମାନଙ୍କରେ ସଂଖ୍ୟା ବିଜ୍ଞାନର ଅଦ୍ଭୁତ ରହସ୍ୟ ଖୋଲି ଦିଆଯାଇଛି । ଆଧୁନିକ ଗଣିତଜ୍ଞମାନେ ସ୍ଥିର କରିଛନ୍ତି ଯେ ସଂଖ୍ୟାଶାସ୍ତ୍ର ଭାରତବର୍ଷରୁ ଗୃହୀତ । ଭାରତୀୟ ପ୍ରାଚୀନ ପଣ୍ଡିତମାନେ ସର୍ବାଦୌ ଏହାକୁ ଅତ୍ୟାଚୀନ ବେଦରୁ ଆହରଣ କରିଛନ୍ତି ।

ମନୋବିଜ୍ଞାନ—

ପରୋଽପେହି ମନସ୍ପାପ କିମଶସ୍ତାନି ଶଂସସି ।
ପରେହି ନ ତ୍ୱାଂ କାମୟେ ବୃକ୍ଷାଂ ବନାନି ସଞ୍ଚର ଗୃହେଷୁ ଗୋଷୁ ମେ ମନଃ ॥ (ଅଥର୍ବ ୬,୪୫,୧)

ଅର୍ଥ – ରେ ମନର ପାପ ! ତୁ ଦୂର ଚାଲିଯାଅ । ପାପୀ ମନ ! କାହିଁକି ନିନ୍ଦିତ କର୍ମମାନଙ୍କ ବର୍ଣ୍ଣନ କରୁଛୁ । ତୁ ଶୀଘ୍ର ଚାଲିଯାଅ । ମୋ ମନ ନିଜ ଗୃହ ଓ ଗୃହପାଳିତ ପଶୁଙ୍କ ମଧ୍ୟରେ ରହୁ । ତୁ ପାପୀ ମନ, ବୃକ୍ଷାରଣ୍ୟ ନିର୍ଜନ ସ୍ଥଳକୁ ଚାଲିଯାଅ ।

ଅପେହି ମନସସ୍ପତେଽପକ୍ରାମ ପରଶ୍ଚର ।
ପରୋ ନିଋତ୍ୟା ଆଚକ୍ଷ୍ୱ ବହୁଧା ଜୀବତୋ ମନ ॥
(ଅଥର୍ବ ୨୦,୯୬,୨୪)

ଅର୍ଥ — ରେ ମନର ଦୁଃଖଦାତା ବେଗ ! ଦୂର ଚାଲିଯାଅ । ଜୀବନର
ମନକୁ ଦୁଃଖଗ୍ରସ୍ତ କର ନାହିଁ । ଦୂର ହୁଅ, ବିଲୁପ୍ତ ହୁଅ † ।

ଅୟଂ ମେ ହସ୍ତୋ ଭଗବାନୟଂ ମେ ଭଗବତ୍ତରଃ ।
ଅୟଂ ମେ ବିଶ୍ୱଭେଷଜୋଽୟଂ ଶିବାଭିମର୍ଶନଃ ॥
ହସ୍ତାଭ୍ୟାଂ ଦଶଶାଖାଭ୍ୟାଂ ଜିହ୍ୱା ବାଚଃ ପୁରୋଗବୀ ।
ଅନାମୟିତ୍ନୁଭ୍ୟାଂ ହସ୍ତାଭ୍ୟାଂ ତାଭ୍ୟାଂ ତ୍ୱାଭିମୃଶାମସି ॥
( ଅଥର୍ବ ୪,୦୩.୬ ଓ ୭ )

ଅର୍ଥ — ହେ ପ୍ରିୟ ରୋଗି ! ଏହି ମୋର ହସ୍ତ ଭାଗ୍ୟବାନ, ଭଗବାନ । ଏହି ମୋର ଦ୍ୱିତୀୟ ହସ୍ତ ଅତ୍ୟଧିକ ଭାଗ୍ୟବାନ — ଭଗବାନର । ଏହି ହସ୍ତ ଶମନକାରକ, ଔଷଧରୂପ । ଏହାର ସ୍ପର୍ଶ ମାତ୍ରେ ଶାନ୍ତି ମିଳେ । ଦଶଅଙ୍ଗୁଳିବିଶିଷ୍ଟ ଏହି ହସ୍ତମାନଙ୍କ ଦ୍ୱାରା ମୁଁ ତୁମର ଅଭିମର୍ଶ କରୁଛି — ସ୍ପର୍ଶ କରୁଛି । ପୁଣି ବାଣୀର ଆଗର ଏହି ମୋର ଜିହ୍ୱା — ଏଥିରେ ତୁମ ଆରୋଗ୍ୟ ଆଦେଶ ଦେଉଛି * ।

---

† ଦୁର୍ଭାବନା ଓ ରୋଗକୁ ଦୂର କରି ସ୍ୱାସ୍ଥ୍ୟ ଓ ବଳକୁ ଆବାହନ କରିବା ସଙ୍କଳ୍ପ ବା ଆବେଶ *(Self hypnotism or Magnetism)* ଏଠାରେ ସୂଚିତ ହୋଇଛି ।

* ଏଠାରେ ଅଭିମର୍ଶ ତା ମୁକ୍ତ ଅଙ୍ଗୁଳିବିଶିଷ୍ଟ ହସ୍ତ ଦ୍ୱାରା ପ୍ରଭାବଶାଳୀ ସ୍ପର୍ଶର ସଙ୍କେତ ରହିଛି । ଏହିରୂପ ସଂସ୍ପର୍ଶ ଦ୍ୱାରା ରୋଗୀ ଶରୀର ମଧ୍ୟରେ ଏକ ବିଦ୍ୟୁତର ସ୍ଫୁରଣ ଅନୁଭବ କରେ । ଅନ୍ତରର ଗତି-ସକଳ ନିୟମିତ ହୋଇଯାଏ । ଏହି ଅଭିମର୍ଶ-କ୍ରିୟାକୁ ପାଶ୍ଚାତ୍ୟ ପଣ୍ଡିତମାନେ *Posses* କହନ୍ତି ।

ଦଦିର୍ହି ମହ୍ୟଂ ବରୁଣୋ ଦିବଃ କବିର୍ବଚୋଭିରୁଗ୍ରୈର୍ନିଚିଣୋମି ତେ ବିଷମ୍ ।
ଖାତମଖାତମୁତ ସକ୍ତମଗ୍ରଭମିରେବ ଧନ୍ୱନ୍ନିଜଜାସ ତେ ବିଷମ୍ ॥
( ଅଥର୍ବ ୫,୧୩,୧ )

ଅର୍ଥ-ହେ ସର୍ପଦଂଶିତ ରୋଗି ! ବେଦବାଣୀର କବି, ଜଗଦୋଦ୍ଧାରକ ପ୍ରଭୁ, ମୋଠାରେ ତେଜ ଦାନ କରିଛନ୍ତି । ସେହି ତେଜରେ ମୁଁ ତୁମଠାରୁ ବିଷକୁ ଦୂର କରୁଛି --- ଧ୍ୱଂସ କରୁଛି । ତୁମର କ୍ଷତ ଓ ଉତ୍ଥିତ ବିଷକୁ ମୁଁ ସ୍ୱାଧୀନ କରିଦେଲି । ମୋର ପ୍ରଭାବଶାଳୀ ବଚନରେ ତୁମ ବିଷ ଦୁର୍ବଳ ଓ ଶକ୍ତିହୀନ ହେଉ । ତାହା ସର୍ବଥା ଦୂର ହେଲା, ନଷ୍ଟ ହେଲା --- ମରୁଭୂମି ଉପରେ ପଡ଼ିଥିବା ଜଳବିନ୍ଦୁ ଶୀଘ୍ର ଦୂର ହୋଇଯିବା ପରି ତୁମ ବିଷ ଦୂର ହୋଇଗଲା । ହେ ରୋଗି ! ସ୍ଥିର ରହ, ସୁସ୍ଥ ରହ --- ବିଷର ସକଳ ପ୍ରଭାବ ଦୂର ହେଲା † ।

## ସ୍ତୁତି-ପ୍ରାର୍ଥନା-ଉପାସନା

ଗାୟନ୍ତି ତ୍ୱା ଗାୟତ୍ରିଣୋଽର୍ଚନ୍ତ୍ୟର୍କମର୍କିଣଃ ।
ବ୍ରହ୍ମାଣସ୍ତ୍ୱା ଶତକ୍ରତ ଉଦ୍ୱଂଶମିବ ଯେମିରେ ॥ ( ସାମ ୪,୨,୬,୧ )

---

† ବେଦର ଘୋଷା--- ଭୟୁଷା ନେଶତ୍ ( ଅଥର୍ବ ୫,୧୩,୨ ) ଅର୍ଥାତ୍ ସର୍ପ ବା ଅନ୍ୟ ଜନ୍ତୁ ଦ୍ୱାରା ଦଂଶିତ ହେବା ପ୍ରାଣୀ କ୍ଷତ ଦ୍ୱାରା ମରେ ନାହିଁ ପରନ୍ତୁ ଭୟରେ ମରେ । ଏଣୁ ଏହି ଭୟକୁ ଦୂର କରିବା ପାଇଁ ଆଶ୍ୱାସନା ଦେବା ଉଚିତ । ଏହାକୁ ଆଦେଶ ( *Hypnotic Suggestion* ) କହନ୍ତି ।

ଅର୍ଥ---ହେ ଅନନ୍ତ କର୍ମ ଓ ଉତ୍ତମ ଜ୍ଞାନଯୁକ୍ତ ପ୍ରଭୋ ! ଗାୟକମାନେ ଆପଣଙ୍କ ସ୍ତୁତି ଗାନ କରନ୍ତି, ପୂଜାରୀମାନେ ଆପଣଙ୍କ ପୂଜାରେ ବ୍ୟସ୍ତ, ବେଦଜ୍ଞ ପଣ୍ଡିତ ଆପଣଙ୍କ ପ୍ରଶଂସାରେ ରତ ।

ତ୍ୱମସି ପ୍ରଶସ୍ୟୋ ବିଦଥେଷୁ ସହନ୍ତ୍ୟ ।
ଅଗ୍ନେ ରଥୀରଧ୍ୱରାଣାମ୍ ॥ ( ସାମ ୫,୮,୩୫,୨ )

ଅର୍ଥ---ହେ ସର୍ବଜ୍ଞ ପରମାତ୍ମନ୍ ! ଆପଣହିଁ ସ୍ତୁତିଯୋଗ୍ୟ । ଯଜ୍ଞ ଓ ଯୁଦ୍ଧ ବେଳେ ଆପଣହିଁ ସ୍ତୋତବ୍ୟ ଅଟନ୍ତି । ଆପଣ ଶତ୍ରୁଘାତକ ଓ ଯଜ୍ଞପାଳକ । ଏଣୁ ଆପଣଙ୍କ ଛଡ଼ା ଅନ୍ୟ କେହି ସ୍ତୁତିର ଯୋଗ୍ୟ ନୁହନ୍ତି ।

ଯୋ ବିଶ୍ୱସ୍ୟ ଜଗତଃ ପ୍ରାଣତସ୍ପତି ଯୋ ବ୍ରହ୍ମଣେ ପ୍ରଥମୋ ଗା ଅବିନ୍ଦତ୍ ।
ଇନ୍ଦ୍ରୋ ଯୋ ଦସ୍ୟୁଁରଧରାଁ ଅବାତିରନ୍ ମରୁତ୍ୱନ୍ତଂ ସଖ୍ୟାୟ ହବାମହେ ॥
( ସାମ ୧,୭,୧୨,୫ )

ଅର୍ଥ---ହେ ମନୁଷ୍ୟ ! ଯେ ଏହି ସୃଷ୍ଟିର ସକଳ ସ୍ଥାବର-ଜଙ୍ଗମଙ୍କ ଅଧିଷ୍ଠାତା ଓ ପାଳକ, ଯେ ବିଦ୍ୱାନମାନଙ୍କ ଲାଗି ସକଳ ବୈଭବ ରଚନା କରିଛନ୍ତି, ଯେ ଦସ୍ୟୁମାନଙ୍କୁ ପରାଭବ ଦିଅନ୍ତି, ସେହି ମରୁତ୍ୱାନ୍ ଅର୍ଥାତ୍ ଅନନ୍ତ ବଳଯୁକ୍ତ ଇନ୍ଦ୍ର ପରମାତ୍ମାଙ୍କ ସାନ୍ନିଧ୍ୟ ଲାଭ ପାଇଁ ତାହାଙ୍କୁ ପ୍ରାର୍ଥନା କରିବା ।

ବେଦାହମେତଂ ପୁରୁଷଂ ମହାନ୍ତମାଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ।
ତମେବ ବିଦିତ୍ୱାଽତି ମୃତ୍ୟୁମେତି ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ ॥
( ଯଜୁ ୩୧,୧୮ )

ଅର୍ଥ — ମୁମୁକ୍ଷୁ ମନୁଷ୍ୟଙ୍କୁ ପଣ୍ଡିତ ଉପଦେଶ ଦିଅନ୍ତି — ହେ ମୁମୁକ୍ଷୋ ! ମୁଁ ସେହି ପରମାତ୍ମାଙ୍କୁ ଜାଣେ । ସେ ସର୍ବୋକ୍ତାଦି ଗୁଣଯୁକ୍ତ ପ୍ରକାଶ ସ୍ୱରୂପ, ଅଜ୍ଞାନାନ୍ଧକାର ବିମୁକ୍ତ, ସର୍ବଦା ପୂର୍ଣ୍ଣ ଅଟନ୍ତି । ଜନ୍ମ-ମୃତ୍ୟୁ ଚକ୍ରରୁ ଉଦ୍ଧାର ପାଇଁ, ମୋକ୍ଷଧାମ ପ୍ରାପ୍ତ ହେବା ପାଇଁ ତାହାଙ୍କୁ ଜାଣ ଓ ସ୍ମରଣ କର । ମୁକ୍ତି ପାଇଁ ଅନ୍ୟ କୌଣସି ପନ୍ଥା ନାହିଁ ।

ସ ପର୍ଯ୍ୟଗାଚ୍ଛୁକ୍ରମକାୟମବ୍ରଣମସ୍ନାବିରଂ ଶୁଦ୍ଧମପାପବିଦ୍ଧମ୍ ।
କବିର୍ମନୀଷୀ ପରିଭୂଃ ସ୍ୱୟମ୍ଭୂର୍ଯାଥାତଥ୍ୟତୋଽର୍ଥାନ୍ ବ୍ୟଦଧାଚ୍ଛାଶ୍ୱତୀଭ୍ୟଃ ସମାଭ୍ୟଃ ॥ ( ଯଜୁ ୪୦,୮ )

ଅର୍ଥ — ପରମାତ୍ମା ସର୍ବବ୍ୟାପକ, ସର୍ବଶକ୍ତିମାନ, ଶରୀରରହିତ, ଛିଦ୍ର ଓ ନାଡି ଆଦି ବନ୍ଧନରହିତ, ଶୁଦ୍ଧ, ପାପମୁକ୍ତ, କବି, ମନୀଷୀ, ଦୁଷ୍ଟନାଶକ ଓ ସ୍ୱୟମ୍ଭୂ ଅଟନ୍ତି । ଅନାଦି କାଳରୁ ଚଳୁଥିବା ସୃଷ୍ଟିପ୍ରଳୟର ସକଳ କାର୍ଯ୍ୟ ଏହି ଅଜନ୍ମା, ନିରାକାର ଜଗତ୍ପତି ବିଧାନ କରନ୍ତି ।

ସ ଧାତା ସ ବିଧର୍ତ୍ତା ସ ବାୟୁର୍ନଭ ଉଚ୍ଛ୍ରିତମ୍ ।
ସୋଽର୍ଯ୍ୟମା ସ ବରୁଣଃ ସ ରୁଦ୍ରଃ ସ ମହାଦେବଃ ।
ସୋ ଅଗ୍ନିଃ ସ ଉ ସୂର୍ଯ୍ୟଃ ସ ଉ ଏବ ମହାଯମଃ ॥ (ଅଥର୍ବ ୧୩,୪,୩-୫)

ଅର୍ଥ—ସେହି ପରମେଶ୍ୱର ସୃଷ୍ଟିର ପୋଷକ ଅଟନ୍ତି । ସେ ମହାବଳୀ (ବାୟୁ), ସେ ସକଳ ପ୍ରବନ୍ଧକର୍ତ୍ତା (ନଭ), ସର୍ବଶ୍ରେଷ୍ଠ (ଅର୍ଯ୍ୟମା), ବରଣୀୟ (ବରୁଣ), ଦୁଷ୍ଟ ସନ୍ତାଡ଼କ (ରୁଦ୍ର), ମହାଦାନୀ (ମହାଦେବ) ଅଟନ୍ତି । ସେ ବ୍ୟାପକ (ଅଗ୍ନି), ପ୍ରେରକ (ସୂର୍ଯ୍ୟ), ନ୍ୟାୟକାରୀ (ମହାଯମ) ଅଟନ୍ତି ।

ଇନ୍ଦ୍ରଂ ମିତ୍ରଂ ବରୁଣମଗ୍ନିମାହୁରଥୋ ଦିବ୍ୟଃ ସ ସୁପର୍ଣ୍ଣୋ ଗରୁତ୍ମାନ୍ ।
ଏକଂ ସଦ୍ୱିପ୍ରା ବହୁଧା ବଦନ୍ତ୍ୟଗ୍ନିଂ ଯମଂ ମାତରିଶ୍ୱାନମାହୁଃ ॥
( ଋକ୍ ୧,୧୬୪,୪୬ )

ଅର୍ଥ—ବିଦ୍ୱାନ ପଣ୍ଡିତମାନେ ଏକ ଅଦ୍ୱିତୀୟ ପରମାତ୍ମାଙ୍କୁ ବିଭିନ୍ନ ନାମରେ ବର୍ଣ୍ଣନା କରିଥାନ୍ତି । ପରମାତ୍ମାଙ୍କ ବିଭିନ୍ନ ବିଭୂତିଙ୍କୁ ନେଇ ତାହାଙ୍କୁ ଇନ୍ଦ୍ର, ମିତ୍ର, ବରୁଣ, ଅଗ୍ନି, ସୁପର୍ଣ୍ଣ, ଗରୁତ୍ମାନ୍, ଯମ, ମାତରିଶ୍ୱା ଆଦି ନାମରେ ସ୍ତୁତି କରିଥାନ୍ତି ।

ଯସ୍ତିଷ୍ଠତି ଚରତି ଯଶ୍ଚ ବଞ୍ଚତି ଯୋ ନିଲାୟଂ ଚରତି ଯଃ ପ୍ରତଙ୍କମ୍ ।
ଦ୍ୱୌ ସଂନିଷଦ୍ୟ ଯନ୍ମନ୍ତ୍ରୟେତେ ରାଜା ତଦ୍ ବେଦ ବରୁଣସ୍ତୃତୀୟଃ ॥
( ଅଥର୍ବ ୪,୧୬,୨ )

ଅର୍ଥ—ହେ ସର୍ବଜ୍ଞ ପରମାତ୍ମନ୍ ! ଠିଆହେବା ବେଳେ, ଚାଲୁଥିବା ବେଳେ, ଅପରକୁ ଠକୁଥିବା ବେଳେ, ଗୋପନରେ କୌଣସି କାର୍ଯ୍ୟ କରୁଥିବା ବେଳେ ବା ଅସହ୍ୟ ଦୁଃଖ କଷ୍ଟକୁ

ସନ୍ନିବେଶ କରୁଥିବା ବେଳେ—ପ୍ରାଣୀଙ୍କ ସକଳ କାର୍ଯ୍ୟକୁ ଆପଣ ଜାଣନ୍ତି । ଦୁଇ ଜଣ ବସି ଗୁପ୍ତ ମନ୍ତ୍ରଣା କରୁଥିବା ବେଳେ ଆପଣ ତୃତୀୟ ଜଣ ହୋଇ ସର୍ବଜ୍ଞତା ଗୁଣରୁ ସବୁ ଜାଣି ପାରନ୍ତି ।

ଯୋ ଭୂତଂ ଚ ଭବ୍ୟଂ ଚ ସର୍ବଂ ଯଶ୍ଚାଧିତିଷ୍ଠତି ।
ସ୍ୱର୍ଯସ୍ୟ ଚ କେବଲଂ ତସ୍ମୈ ଜ୍ୟେଷ୍ଠାୟ ବ୍ରହ୍ମଣେ ନମଃ ॥
( ଅଥର୍ବ ୧୦,୮,୧ )

ଅର୍ଥ—ଯେଉଁ ପରମାତ୍ମା ଭୂତ, ବର୍ତ୍ତମାନ ଓ ଭବିଷ୍ୟତ ତିନି କାଳର ସର୍ବଦ୍ରଷ୍ଟା, ସକଳ ସୃଷ୍ଟିର ଉତ୍ପାଦନ ଓ ପ୍ରଳୟକର୍ତ୍ତା, ସେହି ସର୍ବଶ୍ରେଷ୍ଠଙ୍କୁ ନମସ୍କାର ।

ଅଭୟଂ ନଃ କରତ୍ୟନ୍ତରିକ୍ଷମଭୟଂ ଦ୍ୟାବାପୃଥିବୀ ଉଭେ ଇମେ ।
ଅଭୟଂ ପଶ୍ଚାଦଭୟଂ ପୁରସ୍ତାଦୁତ୍ତରାଦଧରାଦଭୟଂ ନୋ ଅସ୍ତୁ ॥
( ଅଥର୍ବ ୧୯,୧୫,୫ )

ଅର୍ଥ—ହେ ପ୍ରଭୋ ! ଅମ୍ଭମାନଙ୍କୁ ଅଭୟ ଦାନ କରନ୍ତୁ । ଅନ୍ତରୀକ୍ଷ, ଦ୍ୟୁଲୋକ, ପୃଥିବୀ ଓ ପୂର୍ବାଦି ଚାରିଦିଗ ଆପଣଙ୍କ କୃପାରୁ ଅମ୍ଭମାନଙ୍କ ଲାଗି ଭୟରହିତ ହେଉ ।

ଅଭୟଂ ମିତ୍ରାଦଭୟମମିତ୍ରାଦଭୟଂ ଜ୍ଞାତାଦଭୟଂ ପୁରୋ ଯଃ ।
ଅଭୟଂ ନକ୍ତମଭୟଂ ଦିବା ନଃ ସର୍ବା ଆଶା ମମ ମିତ୍ରଂ ଭବନ୍ତୁ ॥
( ଅଥର୍ବ ୧୯,୧୫,୬ )

ଅର୍ଥ—ହେ ପ୍ରଭୋ ! ମିତ୍ରଠାରେ, ଜ୍ଞାତ ଓ ଅଜ୍ଞାତ ଶତ୍ରୁଠାରେ ଅଭୟ ରହୁ । ଦିବା ଓ ରାତ୍ରିରେ ଅଭୟ ରହୁ । ପୂର୍ବାଦି ଦିଗ ଆମ୍ଭମାନଙ୍କ ହିତକାରୀ ହୁଅନ୍ତୁ । ଆପଣଙ୍କ କୃପା ବିନା ଏ ସବୁ ସମ୍ଭବ ନୁହେଁ ।

ତଚ୍ଚକ୍ଷୁର୍ଦେବହିତଂ ପୁରସ୍ତାଚ୍ଛୁକ୍ରମୁଚ୍ଚରତ୍ ।
ପଶ୍ୟେମ ଶରଦଃ ଶତଂ ଜୀବେମ ଶରଦଃ ଶତଂ-
ଶୃଣୁୟାମ ଶରଦଃ ଶତଂ ପ୍ରବ୍ରବାମ ଶରଦଃ ଶତମଦୀନାଃ
ସ୍ୟାମ ଶରଦଃ ଶତଂ ଭୂୟଶ୍ଚ ଶରଦଃ ଶତାତ୍ ॥ ( ଯଜୁ ୩୬,୨୪ )

ଅର୍ଥ—ପରମାତ୍ମା ଜ୍ଞାନୀମାନଙ୍କ ହିତକାରୀ, ଶୁଦ୍ଧ ଜ୍ଞାନନେତ୍ର ସ୍ୱରୂପ । ତାହାଙ୍କ କୃପାରୁ ଆମ୍ଭେମାନେ ଶହେ ବର୍ଷ ପର୍ଯ୍ୟନ୍ତ ଦେଖିବୁ, ଜୀବିତ ରହିବୁ, ଶୁଣିବୁ, କହିବୁ ଓ ସ୍ୱାଧୀନ ରହିବୁ । ଶରୀର ଓ ମନ ନିରୋଗ ଓ ସୁସ୍ଥ ରହିବ । ଶହେ ବର୍ଷର ଉପରାନ୍ତ ବି ଆମ୍ଭେମାନେ ଆନନ୍ଦରେ ରହିବୁ ।

ତେଜୋଽସି ତେଜୋ ମୟି ଧେହି ବୀର୍ଯ୍ୟମସି ବୀର୍ଯ୍ୟଂ ମୟି ଧେହି
ବଲମସି ବଲଂ ମୟି ଧେହି ଓଜସି ଓଜ ମୟି ଧେହି
ମନ୍ୟୁରସି ମନ୍ୟୁମୟି ଧେହି ସହୋଽସି ସହମୟି ଧେହି ॥ (ଯଜୁ ୧୯,୯)

ଅର୍ଥ—ହେ ତେଜସ୍ୱୀ ପରମାତ୍ମନ୍, ମୋଠାରେ ତେଜ ପ୍ରଦାନ କରନ୍ତୁ । ହେ ଶକ୍ତିମାନ୍, ଶକ୍ତି ପ୍ରଦାନ କରନ୍ତୁ । ହେ ବଳ ଓ ଓଜବାନ୍,

ବଳ ଓ ତେଜ ଦଅନ୍ତୁ ! ହେ ମନନଶୀଳ, ମୋ ମାନସିକ ଶକ୍ତିକୁ ତୀବ୍ର କରନ୍ତୁ । ହେ ସହନଶୀଳ, ମୋଠାରେ ସହନଶୀଳତା ଆଧାନ କରନ୍ତୁ ।

ଯଜ୍ଜାଗ୍ରତୋ ଦୂରମୁଦୈତି ଦୈବଂ ତଦୁ ସୁପ୍ତସ୍ୟ ତଥୈବୈତି ।
ଦୂରଙ୍ଗମଂ ଜ୍ୟୋତିଷାଂ ଜ୍ୟୋତିରେକଂ ତନ୍ମେ ମନଃ ଶିବସଙ୍କଳ୍ପମସ୍ତୁ ॥
( ଯଜୁ ୩୪,୧ )

ଅର୍ଥ—ହେ ସର୍ବବ୍ୟାପକ ଜଗଦୀଶ୍ୱର ! ମୋ ମନ ଶୁଭସଙ୍କଳ୍ପମୟ ହେଉ । ଏହି ମନ ସ୍ୱଭାବତଃ ଅତ୍ୟନ୍ତ ଚଞ୍ଚଳ । ଜାଗ୍ରତାବସ୍ଥାରେ ଦୂର ଦୂରାନ୍ତକୁ ଧାବନ କରେ । ଶୟନାବସ୍ଥାରେ ଉଦ୍ଭ୍ରାନ୍ତ ସୃଷ୍ଟି କରେ । ବେଗବାନ୍‌ଠାରୁ ବେଗତର, ଧାବମାନ ମୋର ମନକୁ ସ୍ଥିର କରନ୍ତୁ, ଶୁଭସଙ୍କଳ୍ପମୟ କରନ୍ତୁ ।

ଭୂର୍ଭୁବଃ ସ୍ୱଃ । ତତ୍ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି । ଧିୟୋ ଯୋ ନଃ ପ୍ରଚୋଦୟାତ୍ ॥ ( ଯଜୁ ୩୬,୩ )

ଅର୍ଥ—ସଚ୍ଚିଦାନନ୍ଦ ସ୍ୱରୂପ, ଜଗଦୁତ୍ପାଦକ, ସର୍ବଶ୍ରେଷ୍ଠ ପରମାତ୍ମାଙ୍କ ତେଜକୁ ଆମ୍ଭେମାନେ ଧାରଣ ଓ ଧ୍ୟାନ କରୁଛୁ ଯେ ସେହି ସବିତା ଦେବ ଆମ୍ଭମାନଙ୍କ ବୁଦ୍ଧିକୁ ଉତ୍ତମ ପ୍ରେରଣା ଦେବେ ।

ସ୍ୱସ୍ତି ପନ୍ଥାମନୁ ଚରେମ ସୂର୍ଯ୍ୟାଚନ୍ଦ୍ର ମସାବିବ ।
ପୁନର୍ଦଦତାଘ୍ନତା ଜାନତା ସଙ୍ଗମେମହି ॥ ( ଋକ୍ ୫,୫୧,୧୫ )

ଅର୍ଥ—ହେ ପଥଦାତା ପ୍ରଭୋ ! ସୂର୍ଯ୍ୟଚନ୍ଦ୍ରଙ୍କ ପରି ଆମ୍ଭମାନଙ୍କ ମାର୍ଗ ସୁଖ ଓ ସଂଯତପୂର୍ବକ ହେଉ । ଆମ ମାର୍ଗ ନିର୍ବିଘ୍ନ ଓ ନିର୍ବାଧ ହେଉ । ମାର୍ଗରେ ଦାନଶୀଳ, ଶାନ୍ତଶୀଳ ଓ ଜ୍ଞାନଶୀଳଙ୍କ ସହ ସାକ୍ଷାତ ହେଉ ।

ଶନ୍ନୋ ଦେବୀରଭିଷ୍ଟୟେ ଶନ୍ନୋ ଭବନ୍ତୁ ପୀତୟେ ।
ଶଂଯୋରଭିସ୍ରବନ୍ତୁ ନଃ ॥  ( ସାମ ୧,୧,୩,୧୩ )

ଅର୍ଥ—ସର୍ବଜ୍ଞ, ସର୍ବଶକ୍ତିମାନ ପରମାତ୍ମାଙ୍କ ଦିବ୍ୟ ଶକ୍ତି ଆମ୍ଭମାନଙ୍କ ମନୋବାଞ୍ଛିତ ସୁଖର ସ୍ରୋତ ହେଉ । ପ୍ରଭୁଙ୍କ ଅଚିନ୍ତ୍ୟ ଦିବ୍ୟ ଶକ୍ତି ଆମ୍ଭମାନଙ୍କ ତୃପ୍ତିଦାୟକ ହେଉ । ଚତୁର୍ଦ୍ଦିଗରୁ ସୁଖ ଓ ଶାନ୍ତିର ବର୍ଷା ହେଉ ।

ଦ୍ୟୌଃ ଶାନ୍ତିରନ୍ତରିକ୍ଷଂ ଶାନ୍ତିଃ ପୃଥିବୀ ଶାନ୍ତିରାପଃ
ଶାନ୍ତିରୋଷଧୟଃ ଶାନ୍ତିଃ ।
ବନସ୍ପତୟଃ ଶାନ୍ତିର୍ବିଶ୍ୱେଦେବାଃ ଶାନ୍ତିର୍ବ୍ରହ୍ମ ଶାନ୍ତିଃ ସର୍ବଂଶାନ୍ତିଃ
ଶାନ୍ତିରେବ ଶାନ୍ତିଃ ସା ମା ଶାନ୍ତିରେଧି ॥
( ଯଜୁ ୩୬,୧୭ )

ଅର୍ଥ—ଦ୍ୟୁଲୋକ ଶାନ୍ତିଦାୟକ ହୁଅନ୍ତୁ । ପୃଥିବୀ ଓ ଦ୍ୟୁଲୋକର ମଧ୍ୟସ୍ଥିତ ବିସ୍ତୃତ ଅବକାଶ ଅନ୍ତରିକ୍ଷ-ଲୋକ ଶାନ୍ତିଦାୟକ ହୁଅନ୍ତୁ । ପୃଥିବୀ ଶାନ୍ତିପ୍ରଦ ହୁଅନ୍ତୁ । ଜଳ, ଔଷଧି, ବନସ୍ପତି ଓ ସକଳ

ଏବଂ ଶକ୍ତ ଶାନ୍ତ ହୁଅନ୍ତୁ, ଶାନ୍ତିକାରକ ହୁଅନ୍ତୁ । ଜ୍ଞାନ ଓ କର୍ମ ଶାନ୍ତ ହୁଅନ୍ତୁ । ଶାନ୍ତି ଶାନ୍ତ ହୁଅନ୍ତୁ । ଏହି ରୂପ ଶାନ୍ତି, ପ୍ରଭୋ, ପ୍ରଦାନ କରନ୍ତୁ ।

ଉପର୍ଯ୍ୟୁକ୍ତ ପ୍ରତ୍ୟେକ ମନ୍ତ୍ରରେ ଯେଉଁ କ୍ରମବଦ୍ଧତା, ସୂକ୍ଷ୍ମଜ୍ଞାନ ଓ ଅଭିକତା ଛପି ଛପି ରହିଛି, ସେ ସବୁର ପର୍ଯ୍ୟାଲୋଚନା କରିବା ଏହି ସ୍ଥଳର ଉଦ୍ଦେଶ୍ୟ ନୁହେ । ତଥାପି ଉଦାହରଣ ରୂପରେ ଶେଷୋକ୍ତ 'ଶାନ୍ତି ପାଠ ମନ୍ତ୍ର'କୁ ଅନୁଶୀଳନ କଲେ ସେଥିରେ ଶାନ୍ତିକାମନାର ଏକ ଅଦ୍ଭୁତ କ୍ରମ ଦୃଷ୍ଟିଗୋଚର ହୁଏ । ପ୍ରଥମେ ଦ୍ୟୁଲୋକର ଶାନ୍ତି ପାଇଁ ପ୍ରାର୍ଥନା କରାଯାଉଛି । ସୃଷ୍ଟିର ଶାନ୍ତି ପାଇଁ ସର୍ବୋପରିସ୍ଥ ନକ୍ଷତ୍ର ଓ ଗ୍ରହ ମଣ୍ଡଳରେ— ଦ୍ୟୁଲୋକରେ ଶାନ୍ତିର କାମନା କରାଯାଉଛି । ତତ୍ପଶ୍ଚାତ୍ ପୃଥିବୀ ଓ ଦ୍ୟୁଲୋକର ମଧ୍ୟସ୍ଥିତ ବିସ୍ତୃତ ଅବକାଶ— ଅନ୍ତରୀକ୍ଷ-ଲୋକରେ ଶାନ୍ତିର କାମନା କରାଯାଉଛି । ଗ୍ରହ-ନକ୍ଷତ୍ରମଣ୍ଡଳ ଓ ବିସ୍ତୃତ ଆକାଶ ମଧ୍ୟରେ ବିସ୍ଫୋରଣ ଘଟିଲେ ପୃଥିବୀ ଗ୍ରହରେ ଶାନ୍ତି କାହିଁ ? ତତ୍ପରେ ପୃଥିବୀ-ଲୋକରେ ଶାନ୍ତି ସ୍ଥାପନା ପାଇଁ ପ୍ରାର୍ଥନା ରହିଛି । ଜଳ-ସଂସାର ଜୀବନର ହେତୁ ଓ ଜଳ ପୃଥିବୀର ବିରାଟ ପ୍ରତିନିଧି । ଏଣୁ ଜଳ ପାଇଁ ଶାନ୍ତି ପ୍ରାର୍ଥନା । ତତ୍ପରେ ଔଷଧି ଓ ବନସ୍ପତିଙ୍କୁ ନିରୁପଦ୍ରବ ହେବା ପାଇଁ କାମନା କରାଯାଉଛି । ଏ ସବୁ ସତ୍ତ୍ୱେ ମନୁଷ୍ୟର ଜ୍ଞାନ ପଥଭ୍ରଷ୍ଟ ହେଲେ ବିପୁଳ ଅଶାନ୍ତିର ଭୟ ରହି ପାରେ, ଏଣୁ ସୁଜ୍ଞାନ-ବ୍ରହ୍ମ ପାଇଁ ଆରାଧନା ରହୁଛି । ଶେଷରେ ଶାନ୍ତି ପ୍ରାପ୍ତିର ପୂର୍ଣ୍ଣାଙ୍ଗ ରୂପ ପାଇଁ 'ଶାନ୍ତି ପାଇଁ ଶାନ୍ତି'ର ପ୍ରାର୍ଥନା ରହିଛି ।

ମାନବ ପ୍ରାଣରେ ସର୍ବମୁଖୀ ଶାନ୍ତିର ସକଳ ପ୍ରାର୍ଥନା ଝଙ୍କାଇବା ବେଳେ ପ୍ରଭୁଙ୍କ ଅମରବାଣୀ କର୍ଣ୍ଣକୁହରରେ ବାଜି ଉଠୁଛି—

ସ୍ତୁତା ମୟା ବରଦା ବେଦମାତା ପ୍ରଚୋଦୟନ୍ତାଂ ପାବମାନୀ ଦ୍ୱିଜାନାମ୍ ।
ଆୟୁଃ ପ୍ରାଣଂ ପ୍ରଜାଂ ପଶୁଂ କୀର୍ତ୍ତିଂ ଦ୍ରବିଣଂ ବ୍ରହ୍ମବର୍ଚ୍ଚସମ୍ । ମହ୍ୟଂ ଦତ୍ତ୍ୱା
ବ୍ରଜତ ବ୍ରହ୍ମଲୋକମ୍ ॥ ( ଅଥର୍ବ ୧୯,୭୧,୧ )

ଅର୍ଥ—ହେ ମନୁଷ୍ୟ ! ତୁମ୍ଭମାନଙ୍କ ପାଇଁ ବରଦା - ବରଦାୟୀ ବେଦ-ମାତାଙ୍କୁ ସ୍ତୁତ କରୁଛି— ତୁମ୍ଭ ଆଗରେ ତାହାଙ୍କୁ ପ୍ରସ୍ତୁତ କରୁଛି । ଯେ ଚେଷ୍ଟାଶୀଳ ତାହାଙ୍କୁ ବେଦମାତା ବର ଦେବେ । ଏ ବର— ଆୟୁ, ପ୍ରାଣ, ପ୍ରଜା, ପଶୁ, କୀର୍ତ୍ତି, ଧନ ଓ ବ୍ରହ୍ମତେଜ † ବେଦବାଣୀର ସ୍ୱାଧ୍ୟାୟ ଓ ତଦନୁକୂଳ ଆଚରଣ ଦ୍ୱାରା ଉପରୋକ୍ତ ବରମାନଙ୍କୁ ପ୍ରାପ୍ତ କରି ପରିଶେଷରେ ସେ ସବୁ ମଦର୍ପଣ କରି ଓ ମୋକ୍ଷପଥର ପଥିକ ହୁଅ ।

**ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।**

---

† ଆଧୁନିକ ମନସ୍ତତ୍ତ୍ୱବିତମାନେ କହନ୍ତି ଯେ ମସ୍ତିଷ୍କରେ ଜ୍ଞାନ, ମାନ, ଅର୍ଥ, କାମ, ଆୟୁ, ବିଜ୍ଞାନ ଓ ନ୍ୟାୟଧର୍ମ— ଏହି ସାତୋଟିର ସ୍ଥାନ ରହିଛି । ମନୁଷ୍ୟର ସକଳ ଇଚ୍ଛା ଓ ମଙ୍ଗଳକୁ ଏହି ସାତୋଟି ବିଭାଗରେ ବର୍ଗୀକରଣ କରାଯାଇ ପାରେ । ବେଦବାଣୀରେ ପରମାତ୍ମା ଏହି ସପ୍ତକାମନାର ଉପଦେଶ ଦେଇଛନ୍ତି, ସେଥିପାଇଁ ବେଦାନୁକୂଳ ଉଦ୍ୟମ କରିବା ପାଇଁ କହିଛନ୍ତି ଓ ପରିଶେଷରେ ଅଷ୍ଟମକାମନା— ମୁକ୍ତି ପ୍ରାପ୍ତି ପାଇଁ ଆହ୍ୱାନ କରିଛନ୍ତି ।

